# ସୂଚୀ



---

# ସେ ଆଉ ଜଣେ

ଖାଲି ଆତ୍ମବିଶ୍ୱାସ ଉପରେ ସେଭଳି ଦାୟିତ୍ୱ କେହି ନିଏନାହିଁ । ନିଜ ଗୋଡ଼ରେ ଏମିତି କେତେ ବଳ ଅଛି ଯେ ଆଉ ଦଶଜଣଙ୍କୁ ଗୋଟେଇ ଆଣି ବୁକୁ ଉପରକୁ ଆଉଜାଇ ନେବ ? ସେ ଏମିତି କିଏ କି ?

ଫାଦର୍ ସାମୁଏଲ୍ ସେଦିନ ସକାଳେ ପୂର୍ବମୁହାଁ ଫେରୁଥିଲବେଳେ, ଆକାଶମଲ୍ଲୀଗଛ ମୂଳରୁ ଶୀତରେ ଥୁକ୍ ଥୁକ୍ ହେଉଥିବା ସଦ୍ୟୋଜାତ ମଣିଷଛୁଆଟିକୁ ବୁକୁ ପାଖରେ ଧରି ଆଗକୁ ଚାହିଁଲାବେଳକୁ ସୂର୍ଯ୍ୟ ଉଇଁ ଆସୁଥିଲା । ସାରା ପୃଥିବୀକୁ ଅଜସ୍ର ଆଲୋକର ପ୍ରତିଶ୍ରୁତି ମିଳୁଥିଲା ସେତେବେଳେ । ଫାଦର୍ ସାମୁଏଲ୍ କଳା ମଣିଷଟିଏ । ବୁଢ଼ା ମଣିଷଟିଏ । ଦୁର୍ବଳ ମଣିଷଟିଏ । ଧପ୍ ଧପ୍ ଧଳା ପୋଷାକରେ ସେ ନିର୍ମଳ ପକ୍ଷୀଟିଏ ପରି ଦେଖାଯାନ୍ତି ।

ସେ ତାଙ୍କ ପାଦ ଯୋଡ଼ିକୁ ଭୂଇଁରେ ଥାପି ଶୂନ୍ୟକୁ ଚାହିଁଲେ । ଆଖିବୁଜି କୁଁ କୁଁ ହେଉଥିବା ପକ୍ଷୀ ଶାବକ ଭଳି ସେ ଶିଶୁଟିକୁ ଚାହିଁଲେ କିଛିକାଳ । ତାଙ୍କ ବୁକୁରେ ଗଛ-ମାନଙ୍କର ଆଶ୍ୱାସ ଭରିଗଲା । ଆଖିରେ ଆକାଶର ଆଲୋକ ଝଟକିଲା । ସେ ସେଇ ରାସ୍ତାଟାରେ ଥମ୍ ହୋଇ ଠିଆହୋଇଥାନ୍ତି । ମନକୁ ମନ ପୁମରୁଥାନ୍ତି—ସେ ସେମିତି କିଏ କି ? ତାଙ୍କ ଗୋଡ଼ରେ ବଳ କାହିଁ ସେ ଭାର ସମ୍ଭାଳିବାକୁ ?

କ'ଣ ହେଲା କେଜାଣି ତାଙ୍କର ପାଦଟିଏ ବଳେ ଘୁଞ୍ଚିଗଲା ଆଗକୁ । କିଛି ନ ବୁଝିଲାପରି ସେ ନିଜେ ଘୁଞ୍ଚିଗଲେ ଆଗକୁ । ଗଛମାନଙ୍କରେ ନାନା ଜାତିର ସକାଳ ଚଢ଼େଇ ରାବି ଉଠିଲେ । ପବନ ବୋହିଲା ଆଗମୁହାଁ, ଫାଦର୍ ସାମୁଏଲ୍ ସେ ମଣିଷଛୁଆଟିକୁ କୋଳକୁ ଟେକି ନନେଇ ଆଉ କ'ଣ କରିପାରିଥାନ୍ତେ ? ତାକୁ କ'ଣ ଦେଖି ନଦେଖିଲା ପରି, ବୁଝି ନବୁଝିଲା ପରି ଆଡ଼ହୋଇ ଚାଲିଯାଇଥାନ୍ତେ ? ତାକୁ ସେ ଗଛମୂଳେ ଛାଡ଼ି ଚାଲି-ଯାଇଥାନ୍ତେ ? ଏତେ ଅବଜ୍ଞା ପାଇଁ ତାଙ୍କର ସେ ଦୁର୍ବଳ ବୁକୁରେ ଦମ୍ଭ କାହିଁ ? ତାକୁ ସମ୍ଭାଳିବାକୁ ସେ ଗୋଡ଼ ଯୋଡ଼ିକରେ ବଳ କାହିଁ ? ତା'ହେଲେ କାହାକୁ ସମର୍ପିବାକୁ ସେ ତାକୁ ଭୂଇଁରୁ ଗୋଟେଇ ସେମିତି ଟେକି ଧରିଥାନ୍ତି—ସୂର୍ଯ୍ୟଙ୍କୁ ନା ଆକାଶକୁ ?

ସେ କିନ୍ତୁ ଖୁବ୍ ସନ୍ତର୍ପଣରେ ତାଙ୍କର ନିଘ୍ରଞ୍ଛିଆ ଏକବଖୁରି ଘରଭିତରେ ପଶିଲେ । ଜାନେଇଲେ । କେହି କୁଆଡ଼େ ନାହାନ୍ତି ତ ! ସେ ବାରମ୍ବାର ତାଙ୍କ ଗ୍ରେଟ ଦଉଡ଼ିଆ ଖଟ ପାଖକୁ ଯାଇ ଫେରିଆସୁଥିଲେ । ବାରମ୍ବାର ଝରକା ପାଖକୁ ଯାଇ ବୁଲି ଆସୁଥିଲେ । ନିଜକୁ ନଦେଇଲା ଭଳି ସେ ତାଙ୍କ ଶାଲ୍‌ଟିକୁ ପିଣ୍ଡୁଳାକରି ବୁକୁ ପାଖରେ ଜାକିଧରିଥାନ୍ତି ।...

ଡିସେମ୍ବର ମାସରେ ବଡ଼ିସକାଳୁ ଖୁବ୍ ଶୀତ ହୁଏତ…ସେ ବେଳେବେଳେ ଶୀତେଇ ଯାଉଥାନ୍ତି; କିନ୍ତୁ ବାଉଳା ହେଲାପରି କ'ଣ କରିବେ ବା ନକରିବେ ଜାଣିପାରୁ ନଥାନ୍ତି । ଶେଷରେ କୌଣସିମତେ ଶାଲ୍ ପିଣ୍ଡୁଳାଟିକୁ ଖଟିଆ ଉପରେ ଶୁଆଇଦେଇ ସେ ହାତ ମଳି ଠିଆହେଲେ । ତାଙ୍କ ବୁକୁ ଭିତରୁ ବହୁକାଳୁ ଗୁମୁରି ହେଉଥିବା ଦୀର୍ଘଶ୍ୱାସଟିଏ ବାହାରିଗଲା ।

ଫାଦର୍ ସାମୁଏଲ୍ କେବେ ବାପ ହୋଇନଥିଲେ—ମା' ହେବାର ଗୁରୁ ଦାୟିତ୍ୱ କ'ଣ ବୁଝିନଥିଲେ; କିନ୍ତୁ କିଛି ଦିନ ପରେ ଦେଖାଗଲା ଯେ ଅଣ୍ଡା ଉପରେ ବସିଥିବା ମାଈ କୁକୁଡ଼ାଟିଏ ପରି ସେ ଘର ଜଗି ବସି ରହୁଥାନ୍ତି । ଉଦ୍‌ବିଗ୍ନ ଆଖିରେ ଗୁହାଁରିହୁଥାନ୍ତି ଭିତରକୁ ଏବଂ ବାହାରକୁ । ପିଲାଟିକୁ ପାଳିବା ନିଶ୍ଚୟ ଭାରି କଷ୍ଟକର ବ୍ୟାପାର; କିନ୍ତୁ ସେ କ'ଣ ସତରେ ତାକୁ ପାଳୁଥାନ୍ତି ? ବରଂ ତା'ର ଦାୟିତ୍ୱ ଆଉ ଜଣେ କେହି ନେଇସାରିଥିବା ଭଳି ସେ ଦିନୁଦିନ ଅନୁଭବ କରୁଥାନ୍ତି ।

"ଫାଦର୍, ମୋ ଘରେ ଛେଳି କ୍ଷୀର ହୁଏ । ମୁଁ ରୋଜ୍ ଦୁଇକପ୍ କ୍ଷୀର ଦେଇ ପାରିବ ।" —କହିଲା ମେରି କପୋ ।

ପ୍ରିସ୍କିଲ ସିଂ ଆସି ପରିଷ୍କାର କନାଗୁଡ଼ିଏ ଥାକ ମାରି ରଖିଗଲା । ପିଲାକୁ ଗେଲ କରି କହିଲା, "ଫାଦର୍, ଏ ତ ମୋ ପୁଅ ପାଉଲ୍ ଭଳି ଦିଶୁଚି । ମୁଁ ଆସି ତାକୁ ସବୁଦିନ ଗାଧୋଇଦେବି ।…ଆ ନାଁ କ'ଣ ଦେଉଚ ଫାଦର୍ ?…ଆକୁ 'ପାଉଲ୍' ଡାକିଲେ କ'ଣ ଅସୁବିଧା ହେବ କି ?"

"ଫାଦର୍, ଏ ଜାମାଟାକୁ ପାଉଲ୍ ଦେହରେ ପିନ୍ଧାଇ ଦେବାକୁ ମୋତେ ଅନୁମତି ଦିଅନ୍ତୁ । ଏଇଟା ପୁରୁଣା ହେଲେ ବି ଭାରି ଭଲ । ଆଗକାଳର ଉଲ୍‌ରେ ତିଆରି । ଖୁବ୍ ଉଷୁମ ଲାଗିବ ।"

ଫାଦର୍ ସାମୁଏଲ୍ କାହାକୁ ମନା କରିନଥିଲେ । ବରଂ ଆଚମ୍ବିତ ହୋଇ ଭାବୁଥିଲେ ଯେ ସେମାନେ କେମିତି କାହାଦ୍ୱାରା ନିଯୁକ୍ତ ହେଲାଭଳି ଚାଲିଆସୁଛନ୍ତି, ଦାୟିତ୍ୱ ବାଣ୍ଟି ନେଉଛନ୍ତି । ସେ ନିଜେ ବି ସେଥିଭିତରୁ ଜଣେ । ପାଉଲ୍‌ର ଆଗପଛ, ଭିତର ବାହାର, ସବୁ କେମିତି ଗୋଟାଏ ମନକୁମନ ସଜାଡ଼ି ହୋଇଗଲା ପରି ତାଙ୍କୁ ଦିଶିଲା । ସେ ଅତି ଆନନ୍ଦରେ ଗୁହାଁରିହୁଥିଲେ ଅନେକ ସମୟ ସେଇ ଝର୍କାବାଟେ ବାହାରକୁ । ଖଟ ଉପରେ ପାଉଲ୍ ହାତଗୋଡ଼ ପିଟି କୁହାଟୁଥିଲା ।

…କଥା ରାଷ୍ଟ୍ର ହୋଇଗଲା । ପାଉଲ୍ ବଞ୍ଚିଯିବା ଉପରେ କେତେଗୁଡ଼ିଏ ମୌଳିକ ଆସ୍ଥା ବଢ଼ିଗଲା । ଅନେକ ଅନୁଭବ କଲେ ଯେ ଫାଦର୍ ସାମୁଏଲ୍ ତାଙ୍କ ଜୀବନସାରା ଯାହା ବିଷୟରେ କହିଆସିଛନ୍ତି, ତା ହୁଏତ ସତ । ଲୋକେ ଆସି ମନକୁମନ ଭଲ ମନ୍ଦ ବୁଝି-ନେଇଗଲେ । ସାହାଯ୍ୟ ଯାଚି ଦେଇଗଲେ । ଗଛରେ ଫୁଲ ଫୁଟିଲାପରି, ଝୋଲା ପବନ ଅନାଚିତ ଆସି ବହିଦେଲାପରି ସେମାନଙ୍କର ଆଚରଣ ଦେଖି ସେ କୃତକୃତ୍ୟ ବୋଧ

କରୁଥାନ୍ତି । ମଣିଷକୁ ଏଭଳି ରୂପରେ ଦେଖିବାକୁ ସେ ଜୀବନରେ ସ୍ୱପ୍ନ ବୋଲି ମଣିଥିଲେ । ସତେ ବା ବହୁଦିନ ଧରି ଗଛଟିକୁ ପାଳିଲା ପରେ ଫୁଲ କଡ଼ କାଖେଇ ସେ ତାଙ୍କୁ ଅଭିନନ୍ଦନ ଜଣାଇଲା ।

ଦିନେ ଗୋଟିଏ ଗାଡ଼ିରୁ ମାନ୍ୟଗଣ୍ୟ ଲୋକ ଗୁଡ଼ିଏ ଓହ୍ଲେଇ ଆସିଲେ । ଦୁଇଶ ମାଇଲ୍ ଦୂରରେ ଥିବା ବଡ଼ ଗିର୍ଜାର ପାଦ୍ରି ମଧ ଥିଲେ ତାଙ୍କ ଭିତରେ । ସେମାନେ ଆସି ପାଉଲ୍‌କୁ ଦେଖିଲେ । ଫାଦର୍ ସାମୁଏଲ୍‌ଙ୍କ ଗୃହଆଡ଼େ କିଛି ସମୟ ଧରି କ'ଣ ଗୁଡ଼ିଏ ମଧୁର ଗୁଞ୍ଜରଣ ଶୁଭିଲା । ତା'ପରେ ଜଣେ କହିଲେ—

"ଫାଦର୍, ଆପଣଙ୍କର ଏ ସାଧୁକାର୍ଯ୍ୟ ପାଇଁ ଆମେ ସମସ୍ତେ ଗର୍ବିତ । ଆପଣଙ୍କୁ ଗୋଟିଏ ଅନୁରୋଧ କରିବାକୁ ଆମେ ଆସିଛୁ···ଏଇଠି ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ ଆମର ଇଚ୍ଛା । ଏ ବଡ଼ ପଡ଼ିଆ ଉପରେ ଗୋଟିଏ ଅନାଥାଶ୍ରମ ହୁଅନ୍ତା । ଘର, ବଗିଚା, ଆସବାବ୍, କର୍ମଚାରୀ ଇତ୍ୟାଦି ପାଇଁ ଗୋଟିଏ ବାଦାନ୍ୟ ସଂସ୍ଥା ସମସ୍ତ ଖର୍ଚ୍ଚ ବହନ କରନ୍ତେ । ଦୈନନ୍ଦିନ ଚଳିବାକୁ ମଧ ବ୍ୟବସ୍ଥା ହୁଅନ୍ତା । କେବଳ ଆପଣ ତା'ର ତତ୍ତ୍ୱାବଧାନରେ ରହିବାକୁ ରାଜି ହୋଇଗଲେ ହେଲା ।

ଫାଦର୍ ସାମୁଏଲ୍ ବହୁତ ହେଲାପରି ଚାହିଁରହିଥାନ୍ତି ।

"ଆମର ସେଇଠି ପାଉଲ୍ ଭଳି ତିରିଶଟି ଶିଶୁଙ୍କୁ ନେଇ ଆଶ୍ରମ କରାଯାଇଛି । ସେ ସମସ୍ତେ ଏଠିକି ଚାଲି ଆସନ୍ତେ, ଆପଣଙ୍କ ସ୍ନେହ ପାଇଲେ ସେମାନେ ବଞ୍ଚି ଯାଆନ୍ତେ ।"—କହିଲେ ଆଉଜଣେ ।

"ଏହା ଈଶ୍ୱରଙ୍କ କାର୍ଯ୍ୟ । ଆପଣ ନିଯୁକ୍ତ ହେବାକୁ ରାଜିହୋଇଗଲେ ସେ ନିଜେ ସମସ୍ତ ଦାୟିତ୍ୱ ବହନ କରିବେ । ସେ ସମସ୍ତଙ୍କର ପିତା ।"

ଯେ ଯାହା କଥା କହିଦେଇ ସମସ୍ତେ ଅପେକ୍ଷା କଲେ । ଫାଦର୍ ସାମୁଏଲ୍ କିଛି ନକହି ଅପେକ୍ଷା କଲେ । କେଉଁ ବିଶ୍ୱାସରେ ସେ ଏଡ଼େ ବଡ଼ ଦାୟିତ୍ୱକୁ ମୁଣ୍ଡ ପତେଇଦେବେ ? କେଉଁ ଦମ୍ଭରେ ଅବା ଏଭଳି ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଦେବେ ? ସେ ମୁହୂର୍ତ୍ତେ ଉପରକୁ ଚାହିଁଦେଇ ମୁଣ୍ଡ ପୋତିଦେଲେ । ଧଳା ପୋଷାକରେ ସେ ଦେଖାଯାଉଥିଲେ ନିର୍ମଳ ପକ୍ଷୀଟିଏ ପରି ।

ବଡ଼ ଗିର୍ଜାର ପାଦ୍ରି ସାମ୍‌ନାରେ ହାତ ଛନ୍ଦି ତଳକୁ ମୁଣ୍ଡ ପୋତି କହିଲେ, "ଈଶ୍ୱରଙ୍କ ଇଚ୍ଛା ପୂର୍ଣ୍ଣହେଉ ।" ଆଉ ତିନିଜଣ ସେଇଭଳି ଭଙ୍ଗୀରେ କହିଲେ, "ଆମେନ୍ !!"

ସେମାନେ ଗାଡ଼ିପାଖକୁ ଧାଡ଼ିବାନ୍ଧି ଚାଲିଗଲାବେଳେ ଫାଦର୍ ସାମୁଏଲ୍ ଯେଉଁଠି ମୁଣ୍ଡପୋତି ଠିଆହୋଇ ରହିଗଲେ । ଗାଡ଼ି ମୁହଁ ବୁଲାଇ ଚାଲିଗଲା । ଭୂଇଁରେ ତାଙ୍କର ଦୁଇଟି ଦୁର୍ବଳ ପାଦ ଆସି ଫାଦର୍ ସାମୁଏଲ୍ ପଡ଼ିଆକୁ ଚାହିଁରହିଲେ ଅନେକ ସମୟ ପର୍ଯ୍ୟନ୍ତ ।

...ତେଣିକି ପ୍ରଭଦନ ବହୁ ପ୍ରକାର ଗାଡ଼ି ଆସିଲା । ବହୁ ପ୍ରକାର ଶବ୍ଦ ହେଲା । ଫାଦର୍ ସାମୁଏଲ୍ କେବେହେଲେ ଇଚ୍ଛା କଲେନାହିଁ ଜାଣିବାକୁ, କଏ ସେହି ବଦାନ୍ୟ ସଂସ୍ଥା, ଯାହା ପାଇଁ ଏତେ ଲୋକ ଦନରାତ ଲାଗି ଏତେ ଶ୍ରମ କରୁଥିଲେ । କେବେହେଲେ ସେ ତାଙ୍କର ସରଳ ନିର୍ଦ୍ଧନ ପଡ଼ୋଶୀମାନଙ୍କର କୌତୂହଳର ଉତ୍ତର ଦେଉନଥିଲେ । ସେମାନେ କୋଠା ଗଢ଼ିବାରେ, ବଗିଚ୍ଚ ଖୋଳିବାରେ ଶ୍ରମ କଲେ । ପୁରୁଣାଗଛ ନୂଆ ପାଣି ପାଇ ପଲ୍ଲବିତ ହେଲା ପରି ପ୍ରତ୍ୟେକ ପରିବାର ଉଜ୍ଜ୍ୱଳ ଦେଖାଗଲେ । ପିଲାମାନେ ନୂଆ ଜାମା ପିନ୍ଧି ଫାଦର୍ ସାମୁଏଲ୍‌ଙ୍କ ସାକ୍ଷାତ୍ କରିବାକୁ ଆସିଲେ । ତାଙ୍କ ହାତ ଧରି ଭିଡ଼ିନେଲେ ନୂଆ କୋଠାଆଡ଼କୁ ।

"ଫାଦର୍, ଏଇ ହେଲା ଖାଇବାଘର । ଏତେ ବଡ଼ ଘରେ କ'ଣ ଖାଇବାକୁ ହୁଏ ?... ଏଇଟା ପ୍ରାର୍ଥନା ଘର । ଏସବୁ ଶୋଇବା ଘର...ସେଇଟା ରନ୍ଧା ଘର । ଏତେ ଶୋଇବା ଘର କ'ଣ ହେବ ଫାଦର୍ ?"

"ଆଉ ଏଇଟା"—ସେମାନେ କହୁଥିଲେ, "ଫାଦର୍‌ଙ୍କ ରହିବା ଘର । ଏଠି ଦୁଇଟା ଖଟ ପଡ଼ିବ । ଗୋଟାକରେ ଫାଦର୍, ଆଉ ଗୋଟାକରେ 'ପାଉଲ୍' ! ବାଃ କେତେ ବଢ଼ିଆ ହେଇଚି !"

ଫାଦର୍ ସାମୁଏଲ୍ ପିଲାଙ୍କ ସାଙ୍ଗରେ ସେପରିଏ ବୁଲିଆସି ସେମାନଙ୍କୁ ଗୁହିଁ ହସିଲେ କେବଳ, କିଛି କହିଲେ ନାହିଁ । ପିଲାଏ ତାଙ୍କ ଗୃହପାଖେ କଲର୍ କଲର୍ ହେଉଥାନ୍ତି; ଖୁସିରେ ଡେଉଁଥାନ୍ତି ।

ମେରି କପ୍ପୋର ପୁଅ ସାମ୍ନାକୁ ଆସି କହିଲା, "ଫାଦର୍, ଏଇଠି ଆମରି ଭଳି ପିଲାମାନେ ରହିବେ ନା ?—ଏଇଠି କୋଠାଘରେ ରହିବେ ? ଚୌକି ଟେବୁଲ୍‌ରେ ଖାଇବେ ?—ମା' କହୁଥିଲା, ଆମେ ଏଇଠି ରହିପାରିବୁ ନାହିଁ । କାହିଁକି ରହିପାରିବୁ ନାହିଁ, ଫାଦର୍ ? ଆମେ କ'ଣ ପିଲା ନୋହୁଁ ?"

ଫାଦର୍ କପ୍ପୋର ପୁଅ ମୁହଁକୁ ଗୁହିଁରହିଥାନ୍ତି । ତାଙ୍କ ମୁହଁରୁ ହସ ଲିଭି ଯାଉଥାଏ । ସେ ହଠାତ୍ ଖୁବ୍ ବୁଢ଼ା ଦେଖାଯାଉଥାନ୍ତି, ଦୁର୍ବଳ ଦେଖାଯାଉଥାନ୍ତି ।

ପ୍ରିସ୍କିଲାର ଝିଅ ଅନେକ କଥା ବୁଝିଗଲାଣି । ସେ କପ୍ପୋର ପୁଅକୁ ଗୁହିଁ କହିଲା, "ଆମର ପରି ବାପା ମା' ଅଛନ୍ତି ! ଏଠି ଯେଉଁମାନେ ରହିବେ ସେମାନଙ୍କର ବାପ ମା' ନାହାନ୍ତି ।"

ଶିଶୁ କପ୍ପୋର ମୁହଁ ସାଙ୍କୁଡ଼ିଗଲା, ଆଖି ଡବଡବ ହୋଇଗଲା ପାଣିରେ । ସେ କିଛି ବୁଝିପାରିଲା ନାହିଁ । ପଚାରିଲା, "ସେମାନଙ୍କର କାହିଁକି କେହି ବାପ ମା' ନାହାନ୍ତି, ଫାଦର୍ ?"

ଫାଦର୍ ସାମୁଏଲ୍ ତା' ମୁଣ୍ଡ ସାଉଁଳିଦେଲେ । ପାଖକୁ ଟାଣିନେଇ କହିଲେ, "ଅଛନ୍ତି ବାପା, ସମସ୍ତଙ୍କର ବାପା ମା' ଅଛନ୍ତି । ଏଠି କେହି ହେଲେ ଛେଉଣ୍ଡ ନୁହେଁ । ଏଇ ଦେଖୁନୁ, ପାଉଲ୍‌ର କ'ଣ କେହି ନାହିଁ ?"

"ଅଛ, ଫାଦର୍ ! ମା' କହୁଥିଲା ପାଉଲ୍‌ର ବାପା ପରମ୍ପିତା ଈଶ୍ୱର ।"

ଫାଦର୍ ସାମୁଏଲ୍ ସମ୍ଭାଳି ନପାରି ସେଇ ପଡ଼ିଆ ଉପରେ ଆଣ୍ଠେଇ ପଡ଼ିଲେ । ପାଞ୍ଚଟିଯାକ ପିଲାଙ୍କୁ ବାହୁ ଭିତରେ ଜାକିଧରି ଶିଶୁ କେଥ୍ରୋ ମୁଣ୍ଡ ଉପରେ ଗାଲ ରଖି ଆଖି ବୁଜି ରହିଲେ କିଛି ସମୟ ! ଆଖିରୁ ଲୁହ ଝରି ତା' ମୁଣ୍ଡ ଓଦା ହୋଇଗଲା । ଫାଦର୍ ସାମୁଏଲ୍ ଆସ୍ତେ କହୁଥାନ୍ତି, "ତୁମ ସମସ୍ତଙ୍କର ବାପା ସେଇ ଜଣେ, ସେଇ ଜଣେ ! ଆମେନ୍ ! ଆମେନ୍ !!..."

"ଛ'ମାସ ଭିତରେ କାମ ସରିଗଲା । କାନ୍ଥ କବାଟ ରଙ୍ଗ ଲଗିଗଲା । ପାଚେରି ଫାଟକ ପ୍ରସ୍ତୁତ ହୋଇଗଲା । ସକାଳ ଖରା ରଙ୍ଗର, ନୂଆପତ୍ର ରଙ୍ଗର, ଫୁଟିଲା ଗୋଲାପ ରଙ୍ଗର ପରଦା, ଗୁଦର, ତକିଆ ସଜାହୋଇଗଲା । ଟେବୁଲ୍ ଚୌକି ସବୁ ଚକ୍‌ଚକ୍ । କେହି ଜଣେ ସମ୍ରାଟ୍ ତା'ର ମାଲିକ ନିଶ୍ଚୟ । ସେ ହିଁ ପ୍ରଥମେ ଆସି ତାକୁ ଅଧିକାର କରିବେ । ତା'ପରେ ବାଣ୍ଟିଦେବେ ତାଙ୍କ ମନ ଖୁସି । କାହାରି ସାହସ ହେଉନଥାଏ ଟିପ ମାରି ଛୁଇଁଦେବାକୁ ।

ସେମାନେ ବାରମ୍ବାର ଆସି ଫାଦର୍ ସାମୁଏଲ୍‌ଙ୍କୁ ସାକ୍ଷାତ୍ କରି ଯାଉଥାନ୍ତି; କୃତକୃତ୍ୟ ହେଉଥାନ୍ତି । ତାଙ୍କରି ପାଇଁ ସେ ସମସ୍ତ କୋଠାବାଡ଼ି ହୋଇପାରିଲା ବୋଲି କହୁଥାନ୍ତି । କହୁଥାନ୍ତି ସେ ତାଙ୍କ ଉପସ୍ଥିତିରେ ନହେବା କଥା ହୋଇଯାଉଛି । ସହରଠାରୁ ବହୁ ଦୂରରେ ବଣ-ଜଙ୍ଗଲଘେରା ଏ ଆଶ୍ରମରେ ମଣିଷଛୁଆଗୁଡ଼ିଏ ଈଶ୍ୱରଙ୍କ ସନ୍ତାନର ମର୍ଯ୍ୟାଦା ପାଇ ବଢ଼ିଉଠିବେ । ଫାଦର୍ ସାମୁଏଲ୍ ତାଙ୍କୁ ସେ ମର୍ଯ୍ୟାଦା ଦେବେ ।

ସେମାନେ କହିଲେ ଯେ ତାଙ୍କ ଇଚ୍ଛାରେ ଏଠାରେ ପାଞ୍ଚଜଣ ଶିଶୁ ମଧ୍ୟ ଏଇ ଭିତରେ ପାଳିତ ହେବେ । ଫାଦର୍‌ଙ୍କ ଇଚ୍ଛା ହିଁ ଈଶ୍ୱରଙ୍କ ଇଚ୍ଛା । ସେ ଏଣିକି ଯାହା ଯେଉଁଠି ଚାହିଁବେ, ତାହା ସେଇଭଳି ହେବ ।

ଡିସେମ୍ବର ମାସ ଆସିଗଲା । ଚବିଶ ତାରିଖ ସନ୍ଧ୍ୟାରେ ପିଲାମାନେ ଆସିଯିବେ । ସେଇ ରାତିରେ ପିଲାଙ୍କର ଭୋଜି ହେବ । ସେମାନେ ଏଇଠି ନୂଆଜନ୍ମ ଲାଭକରିବେ । ଏଇ ପାଚେରି ଭିତରେ ଫାଦର୍ ସାମୁଏଲ୍ ତାଙ୍କୁ ଗ୍ରହଣ କରିବେ ।

ସେ ସବୁ ଶୁଣିସାରିଲା ପରେ ସେମାନଙ୍କୁ ଶେଷରେ ଗୋଟିଏ କଥା କହିଲେ—"ମୋତେ ଏଇ କୁଡ଼ିଆରେ ରହିବାକୁ ଅନୁମତି ଦିଅନ୍ତୁ । ଏ ଶ୍ରେଷ୍ଠ ମୁଣ୍ଡିଆ ଉପରେ କୁଡ଼ିଆଟି ଖୁବ୍ ପ୍ରାଚୀନ, ମୋ'ଠୁ ମଧ୍ୟ ପୁରୁଣା । ମୁଁ ଏଇଠି ରହିଲେ ଆପଣଙ୍କର କୌଣସି ଅସୁବିଧା ହେବନାହିଁ ।"

ସେମାନଙ୍କ ଭିତରେ ଅନେକ ପରାମର୍ଶ ହେଲା । ଶେଷକୁ ଜଣେ ଆସି ବିନମ୍ରରେ ଜଣାଇଲେ, "ଫାଦର୍, ଆପଣଙ୍କ ପ୍ରତି ଆମର ଗଭୀର ସମ୍ମାନ ହେତୁରୁ ଆମେ ପ୍ରତିବାଦ କରିପାରୁନାହୁଁ । ଆମେ କେବଳ ଭାବୁଛୁ ଯେ ଆପଣଙ୍କ ରହିବା ପାଇଁ ଯେଉଁ ଘର ତିଆରି କରିଥିଲୁ, ସେଇଟା ଖାଲିପଡ଼ିରହିବ; କାରଣ ପାଉଲ୍ ପାଇଁ ଆମେ ଆଉ ଗୋଟିଏ ସ୍ୱତନ୍ତ୍ର ବ୍ୟବସ୍ଥା କରିଦେଇଛୁ ।"

ଫାଦର୍ ସାମୁଏଲ୍ ତାଙ୍କ ସରଳ ଢଙ୍ଗରେ ଅଳ୍ପ ହସି କହିଲେ, "ସେଇଟା ଖାଲି ରହିବ ବୋଲି ଆପଣ କାହିଁକି ଭାବୁଛନ୍ତି ?···କିଛି କ'ଣ ଏ ଯାଏ ଖାଲି ରହିଲାଣି ?"

ସେମାନେ ମୁଣ୍ଡ ନୁଆଁଇଦେଲେ ।

ଫାଦର୍ କହିଲେ, "ସେଇଠି ଯେ ରହିବେ ତାଙ୍କ ନିର୍ଦ୍ଦେଶରେ ଏ ଅନୁଷ୍ଠାନ ଚାଲିବା କଥା—ବେଶ୍ ତ ! ସେ ହିଁ ସେଇଠି ରହିବେ ।"

ଆଲୁଅ ଆସିଲା । ଗାଡ଼ି ଆସିଲା । ସେମାନେ ସମସ୍ତେ ଆସିଲେ । ଗୋଟିଏ ବସ୍ ଭିତରୁ ଏକାଭଳି ନୂଆ ଜାମା ଯୋଡା ପିନ୍ଧିଥିବା ତିରିଶ୍‌ଟି ପିଲା ଓହ୍ଲାଇଲେ । ଗାଁର ପାଞ୍ଚଟିଯାକ ପିଲା ସେଇଭଳି ନୂଆ ଜାମା ପିନ୍ଧି ଅପେକ୍ଷା କରିଥାନ୍ତି । ସେମାନଙ୍କୁ ଏକାଠି ଆଣି କୋଠା ସାମନାରେ ଠିଆକରାଗଲା । ବଡ଼ ଗିର୍ଜାର ପାଦ୍ରି ପ୍ରାର୍ଥନା କଲେ, "ହେ ପରମପିତା ! ଆମେ ସମସ୍ତେ ତୁମର ସନ୍ତାନ । ତୁମେ ହିଁ ଆମର ଆଶ୍ରୟ, ତୁମେ ଆମର ରକ୍ଷକ !"

ସମସ୍ତେ ଭାରି ଗମ୍ଭୀର ଦେଖାଗଲେ । ପିଲାଗୁଡ଼ିକ ଉଦାସ ଦେଖାଗଲେ । ସେମାନଙ୍କ ଆଖିରେ ତରଳ ତରଳ ଚାହାଣି । କ'ଣଟାଏ ଭୁଲ କରି ପକେଇଛନ୍ତି ଏବଂ ଧରାପଡ଼ି-ଯାଇଛନ୍ତି, ଏଇଭଳି ସନ୍ତ୍ରସ୍ତ ଭାବ । କମ୍ପୋଉର ପୁଅ ଫିକ୍‌କିନା ହସିଦେଲା । ଦୌଡ଼ିଆସିଲା ସାମୁଏଲ୍‌ଙ୍କ ପାଖକୁ । ଗୋଟିଏ ପିଲାକୁ ଆଙ୍ଗୁଠି ଦେଖେଇ କହିଲା, "ଫାଦର୍, ତା' ପେଣ୍ଟ୍‌ରେ ବୋତାମ୍ ଛିଣ୍ଡିଯାଇଛି ।"···ସେ ପିଲା କନକନ ହେଲା । ଫାଦର୍ ସାମୁଏଲ୍ ତା' ପାଖରେ ଆଣ୍ଠେଇପଡ଼ି ତାକୁ କୋଳେଇନେଲେ । ବୋତାମଟିକୁ ଲଗାଇଲାବେଳେ ତାଙ୍କ କାନ୍ଧ ପଛଆଡ଼ୁ କମ୍ପୋ କହିଲା, "ସ୍ୱା'ର ମା' ନାହିଁ ନା ଫାଦର୍ ! ମା' ଥିଲେ ନିଶ୍ଚେ ବୋତାମ ଲଗେଇ ଦେଇଥାନ୍ତା ।"

କମ୍ପୋ ହଠାତ୍ ଏକୁଟିଆ ବୋଧକଲା । ସମସ୍ତେ ତାକୁ ଚାହିଁରହିଥିବାର ସେ ଅନୁଭବ କଲା । ତାକୁ ଡରମାଡ଼ିବାରୁ ସେ କାନ୍ଦ କାନ୍ଦ ହୋଇଗଲା । ଫାଦର୍ ତାକୁ ଆର ବାହୁରେ ବେଢ଼େଇନେଲେ । ଉଭୟଙ୍କ ମୁଣ୍ଡ ଆଉଁସି ଦେଇ ଠିଆହେଲେ । ସବୁ ପିଲାଙ୍କ ମୁଣ୍ଡ ସଳସଳ କରିଦେଲେ । ସମସ୍ତେ ତାଙ୍କୁ ଘେରିଗଲେ ।

ପିଲାଏ ଚାହିଁଦେଲେ ବୁଝିଯାନ୍ତି, ଛୁଇଁଦେଲେ ବୁଝିଯାନ୍ତି । ଦେହଟିକୁ ଦେହରେ ଜଡ଼ାଇ-ଦେଲେ ଗୁଡ଼ାଏ ଅବୋଧ ଶବ୍ଦରେ ଖୁସି ପ୍ରକାଶ କରନ୍ତି । ଫାଦର୍ ସାମୁଏଲ୍ ତାଙ୍କୁ କିଛି କହିବାର ପ୍ରୟୋଜନ ହେଲାନାହିଁ । ତାଙ୍କ ଥନଥନ ଆଖି, ଲଡପଡ ମୁହଁ, ସେ ହସ, ସେ ଚାହାଣି, କୋଳେଇ ନେବାର ସେ ଭଙ୍ଗୀ, ତାଙ୍କ ଉଷ୍ମ ପାପୁଲିର ସ୍ପର୍ଶରେ ଅକୁହା କଥା କୁହା ହୋଇଗଲା । ସମସ୍ତେ ଚାହିଁରହିଥାନ୍ତି । ସୃଷ୍ଟିଟିଏ ତା କଅଁଳିଆ ଛୁଆଙ୍କୁ ନେଇଗଲା ଭଳି ପିଲାଗୁଡ଼ିକୁ ସାଙ୍ଗରେ ନେଇ ସେ ସେଇ ଘରେ ପଶିଗଲେ । ପିଲାଙ୍କୁ ସେ ନିର୍ଭୀକ କରିଦେଲେ, ସ୍ୱାଭାବିକ କରିଦେଲେ । ପିଲାଏ ଡେଇଁଲେ, ଧାଇଁଲେ, ପାଟିକଲେ । ଫାଦର୍ ସାମୁଏଲ୍ କେବଳ ମୁଗ୍ଧ ହେଲାଭଳି ହାତ ଛନ୍ଦି ସେମାନଙ୍କୁ ଚାହିଁରହିଲେ । ଅନ୍ୟମାନେ ଚାହିଁରହିଲେ ତାଙ୍କୁ । ସେ ଦିଶୁଥିଲେ ଜହ୍ନରେ ଢଆରି ବରଲ ନିର୍ମଳ

ପକ୍ଷୀଟିଏ ପରି । ପାଉଲ୍‌କୁ ବର୍ଷେ ପୂରିଯାଇଥାଏ । ସେ ଠୁକ୍ ଠୁକ୍ ଚାଲୁଥାଏ । ତାକୁ କିଏ ନରମ ଲୁମ୍‌ଲୁମିଆ ଉଲ୍‌ରେ ତିଆରି କଣ୍ଢେଇଟିଏ ଧରେଇଦେଇଥାଏ । ସେ ଆସି ଫାଦର୍ ସାମୁଏଲ୍‌ଙ୍କ ଆଣ୍ଠୁ ପାଖରେ ସେଇଥିରେ ବାଡ଼େଇଦେଇ କର୍ କର୍ ହେଇ ହସୁଥାଏ ।

ଫାଦର୍ ସାମୁଏଲ୍ ସେତେବେଳେ ବୋଧହୁଏ ବିହ୍ୱଳ ହୋଇ ଠିଆହୋଇଥାନ୍ତି । କେଉଁ ବିଶ୍ୱାସରେ ସେ ଏଡ଼େବଡ଼ ଦାୟିତ୍ୱ ମୁଣ୍ଡେଇ ନେଲେ ? ସେ ଗୋଡ଼ରେ ଏତେ ବଳ କାହିଁ ଏ ସମସ୍ତଙ୍କୁ ତୋଳିନେଇ ସମ୍ଭାଳିବାକୁ ? ସେ ଏମିତି କିଏ କି ?

ସମସ୍ତେ ଅତି ନିଶ୍ଚିନ୍ତ ମନରେ ଫେରିଗଲେ । ଲୋକ ରଖିଗଲେ ସବୁ କଥାକୁ । ବଗିଚାରେ ମାଳୀ, ରୋଷେଇରେ ରାନ୍ଧୁଣିଆ, ଲୁଗା ସଫା କରିବାକୁ, ଘର ଝାଡ଼ୁ କରିବାକୁ, ବିଛଣା ପକେଇବାକୁ, ଜାମା ପିନ୍ଧେଇବାକୁ ଲୋକ ରହିଲେ । ହିସାବପତ୍ର ପାଇଁ ଲୋକ ରହିଲେ । ସମସ୍ତେ କେବଳ ଚାହିଁରହିଲେ ସେଇ ଜଣକର ଇଙ୍ଗିତକୁ । ଫାଦର୍ ସାମୁଏଲ୍ ଯେତେବେଳେ ଯାହା ଇଚ୍ଛାକଲେ ତା' କରିବା ସେମାନଙ୍କର ଏକମାତ୍ର କର୍ତ୍ତବ୍ୟ ହୋଇଗଲା ।

ଗୋଟିଏ ଗୋଟିଏ ବଖରାରେ ପାଞ୍ଚଟି ଲେଖା ବିଛଣା । ସବା ଶେଷ ବଡ଼ ବଖରାଟିରେ ଛ'ଟି । ତେର୍ ଖୋଲା ଜାଗା, ଖେଳଣା ଆଉ ଫୁଲତୋଡ଼ା ସଜାଡ଼ି ରଖିବାକୁ । ସାତଟି ସିଷ୍ଟର୍, ସାତଟି ବଖରାର ଦାୟିତ୍ୱ ନେଇଥାନ୍ତି । ପିଲାଙ୍କୁ କମ୍ବଳ ଘୋଡ଼େଇଦେଇ ଆସ୍ତେ ଗୀତ ଗାଇ, କାହାଣୀ କହି ଶୁଆଇବା ସେମାନଙ୍କ କାମ । ଫାଦର୍ ସାମୁଏଲ୍ ନିଃଶବ୍ଦରେ ଯେଉଁଏ ନିଶ୍ୱାସ ବୁଲିଆସିଲା ପରେ ଲାଇଟ୍ ଲିଭାଇ ଦିଆଯାଏ । ସିଷ୍ଟର୍‌ମାନେ ସେମାନଙ୍କ ବଖରାକୁ ଚାଲିଯାନ୍ତି । ଚୁପ୍‌ଚାପ ହୋଇଯାଏ ଚାରିଆଡ଼ । ଖୁବ୍ ଧୀରେ ଚାଲିକୁ ମୁଣ୍ଡପୋତି ଫାଦର୍ ସାମୁଏଲ୍ ଫାଟକ ପର୍ଯ୍ୟନ୍ତ ଆସନ୍ତି । ଦରବାନ୍ ହାତରୁ ଲଣ୍ଠନଟିଏ ଧରି ତାକୁ ଚାହିଁ ହସିଦିଅନ୍ତି । ବିଦାୟ ମାଗି ଏକୁଟିଆ ଯା'ନ୍ତି ସେ ଅନ୍ଧାର ଭିତରେ ଲୁଚିରହିଥିବା ମୁଣ୍ଡିଆ ଚାଳର କୁଡ଼ିଆଟିକୁ । ତଳେ ଆଣ୍ଠୁମାଡ଼ି ବସି ପ୍ରାର୍ଥନା କରନ୍ତି ନୀରବରେ, ଲୁହରେ । ଲଣ୍ଠନଟିକୁ ଦବେଇ ଦିଅନ୍ତି । କବାଟ ଆଉଜାଇ ଦିଅନ୍ତି । ସେଇ ଦଉଡ଼ିଆ ଖଟଟିରେ ଶୋଇଯାନ୍ତି କ୍ଲାନ୍ତ ପକ୍ଷୀଟିଏ ପରି ।

ଫାଦର୍ ସାମୁଏଲ୍‌ଙ୍କ ଆଶ୍ରମ । ଫୁଲ ଫୁଟିଲା ପରି, ଫୁଟି ମହକିଲା ପରି ଚାରିଆଡ଼େ ପ୍ରସରିଗଲା ତା'ର ଖ୍ୟାତି । ଅନେକେ ଦେଖିବାକୁ ଆସିଲେ । ଅସଂଖ୍ୟ ଫଟୋ ଉଠିଲା । ଦଳେ ଦଳେ ଲୋକ ଆସି ଜିପ୍ ଗାଡ଼ିରେ ପହଞ୍ଚିଲେ । ସେମାନେ କାହା କଥା ନଶୁଣି ଏଣେତେଣେ ବୁଲିଲେ । ଜାଣିଶୁଣି ସମସ୍ତଙ୍କୁ ଅବଜ୍ଞା କଲେ, ପାଟିତୁଣ୍ଡ କଲେ । ପିଲାଏ ସେମାନଙ୍କୁ ଦେଖି ଆଉଜିଗଲେ । ତାଙ୍କୁ ଚାହିଁରହିଲେ ଆତଙ୍କରେ ।

ଫାଦର୍ ସାମୁଏଲ୍ ଆସି ସେମାନଙ୍କ ଆଗରେ ଠିଆହୋଇ ବିନମ୍ର ସ୍ୱରରେ କହିଲେ—
"ଏଇଠି ଗ୍ରେଟ ଶିଶୁମାନଙ୍କୁ ପାଳନ କରାଯାଏ । ଆପଣ ଦୟା କରି କହିବେ କି, ଆମେ ଆପଣଙ୍କ କେଉଁ ସେବାରେ ଲାଗିପାରୁ !"

ଜଣେ ସାମ୍ନାକୁ ଚାଲିଆସି ତାଙ୍କୁ କଟମଟ କରି ଚାହିଁଲା । କହିଲା, "ଆପଣ ସେଇ ଫାଦର୍ ସାମୁଏଲ୍ ? ଆପଣ ତ ଢେର୍ ସେବା କରିସାରିଲେଣି—ଆଉ କ'ଣ କରିବେ ? ଗୁଡ଼ାଏ ଜାରଜଙ୍କୁ ନେଇ ଏଠି ଗୋଟେ ନବରଙ୍ଗ ଲାଗିଛି । କୋଉ ସମ୍ରାଟଙ୍କ ପିଲାଏ ଏମାନେ ଯେ ସ୍ୱାଙ୍କ ପାଇଁ ଏମିତି ବିଳାସ ଖଞ୍ଜା ହୋଇଚି ଏଠି ! ଅଥଚ ଦରିଦ୍ର ବାପ ମା'ଙ୍କ ପାଖରେ ଥାଇ ହଜାର ହଜାର ଶିଶୁ ଖାଇବାକୁ ନପାଇ ମରୁଛନ୍ତି । ସେମାନଙ୍କର ଦୋଷ କ'ଣ ? ସେମାନେ ଅଣବାଇଆ ହୋଇପାରିଲେ ନାହିଁ—ଏଇଆ ନା ?"

ସେ ନିଆଁ ଧାସକୁ ଚାହିଁପାରୁନଥାନ୍ତି । ଝାଞ୍ଜି ପବନରେ ତାଙ୍କୁ ଆଫା ଆଫା ଲାଗୁଥାଏ । ତଥାପି ସେ କହିଲେ, "ଆପଣ ଦୟାକରି ମୋ ସାଥିରେ ଆସିବେ କି ? ଆପଣମାନେ ଆମର ଅତିଥି । ଆପଣଙ୍କ ସେବା ଆମର କର୍ତ୍ତବ୍ୟ ।"

ଆଉ ଜଣେ ସେ ଭିତରୁ ଉଚ୍ଚୁକି ଆସି କହିଲା, "ଆରେ ରଖିଥାଅ ତମର ଚାଟୁକାର କଥା, ଆଉ ତମର ସେବା । ସମାଜର ସବୁ ଧନୀ ମିଶି ବ୍ୟଭିଚାର କରିବେ । ତାକୁ ଘୋଡ଼େଇବାକୁ ସେଥିରୁ ଜନ୍ମ ହେଉଥିବା ପିଲାଗୁଡ଼ିକୁ ଏଇଠି ଈଶ୍ୱରଙ୍କ ନାଁରେ ପାଳନ କରାଯିବ । ଏଥିରୁ ଗୋଟାଏ ହାଣ୍ଡିପିଲା ପୋଷିବାକୁ ଯେତେ ଖର୍ଚ୍ଚ ହେଉଛି, ଶହେ ଲଙ୍ଗଳା ଭୋକିଲା ପିଲାଙ୍କୁ ବଞ୍ଚେଇହେବ । ସେମାନେ କ'ଣ ତମ ଈଶ୍ୱରଙ୍କ ସନ୍ତାନ ନୁହନ୍ତି ? ତା' କେମିତି ହେବେ ? ଈଶ୍ୱର ପରି ଲୁଚିବୁଲୁଥିବା ଧନୀ, ବ୍ୟଭିଚାରୀ, ବଦାନ୍ୟ ବଡ଼ଲୋକ ! ବନ୍ଦକର ଏ ଭଣ୍ଡ କାରଖାନା । ନହେଲେ ଆମେ ଏଇଠି ନିଆଁ ଲଗେଇ ଏ ଚର୍ବିଲଗା ଘୁଷୁରି ପିଲାଙ୍କ ସମେତ ସମସ୍ତଙ୍କୁ ପୋଡ଼ିଦେବୁ ।"

ଫାଦର୍ ସାମୁଏଲ୍ ମୁହଁ ଘୋଡ଼େଇ କିଛି ସମୟ ଟଳିଲେ ଏବଂ ଗଛ କାଟିଲାପରି ପଡ଼ିଗଲେ । ସେମାନେ ଚାରିଆଡ଼କୁ ଚାହିଁ ନିଆଁ ବର୍ଷିଲାପରି କ'ଣ ଗୁଡ଼ାଏ ବକ ବକ ତାଙ୍କର ଧୂଳି ଆଉ ଧୂଆଁର ଜିପ୍ ଗାଡ଼ିଟାକୁ ଘଡ଼୍ ଘଡ଼୍ ଶବ୍ଦରେ ଉଡ଼ାନେଲେ ଜଙ୍ଗଲ ବାଟଦେଇ ।

ସମସ୍ତେ ଝପଟି ଆସିଲେ ଫାଦର୍ଙ୍କ ପାଖକୁ । ତାଙ୍କୁ ଟେକିନେଲେ ସେଇ ଖାଲିଘର ଭିତରକୁ । ସେଇଠି ଗ୍ରେଟ ପିଲାମାନେ କାନ୍ଦଉଠିଲେ । ସିଷ୍ଟର୍ମାନେ ସକସକ୍ ହେଲେ । ଆଉ ସବୁ କର୍ମଚାରୀ ଛଟାବଟା କଲେ । ଡାକ୍ତରବାବୁ ଦୌଡ଼ି ଆସିଲେ ଖବର ପାଇ ।

କିଛି ସମୟ ପରେ ତାଙ୍କର ଚେତା ଫେରିଲା । ସେ ଗ୍ଳୁକୋଜ୍ ଖାଇଲା ପରି ଥରୁଥାନ୍ତି । ସିଷ୍ଟର୍ମାନଙ୍କୁ ଠାରିଦେବାରୁ ସେମାନେ ପିଲାଙ୍କୁ ନେଇ ବାହାରିଗଲେ । ସମସ୍ତଙ୍କୁ ଯେ ଯାହାର କାମକୁ ଯିବାକୁ ସେ ଆଖିର ଚାହାଣିରେ ଜଣାଇଦେଲେ । କେବଳ ବାକି ରହିଲେ ଡାକ୍ତରବାବୁ ଆଉ ହିସାବପତ୍ର କରୁଥିବା ସେ ବାବୁ ଜଣକ ।

ସେ ଦୁହେଁ ଏକାସ୍ୱରରେ ଫାଦର୍ଙ୍କୁ ପଚାରିଲେ, "ସେମାନେ କିଏ ଆସିଥିଲେ ଫାଦର୍ ? କାହିଁକି ଆସିଥିଲେ ?"

ଫାଦର୍ ସେମାନଙ୍କୁ ଗୁହିଁ ଶୁଖିଲା ମୁହଁରେ ଅଳ୍ପ ଟିକିଏ ହସିଦେଲେ—

"ମୁଁ କି ଜାଣେ ସେମାନେ କିଏ ? ମୁଁ କି ତାଙ୍କୁ ମୁକାବିଲା କରିବାକୁ ସମର୍ଥ ?"

"ସେମାନେ କ'ଣ ସେମିତି କହୁଥିଲେ ଫାଦର୍ ?"

"ସେମାନେ ଯାହା କହୁଥିଲେ ତାହା ହୁଏତ ଯଥାର୍ଥ; କିନ୍ତୁ ତାଙ୍କର ଅନୁଭବ ଯଥାର୍ଥ ନୁହେଁ । ସେମାନଙ୍କର ଶ୍ରଦ୍ଧା ନାହିଁ, କଥାରେ ନିଷ୍ଠା ନାହିଁ, ସେମାନେ କ'ଣ କହୁଥିଲେ ନିଜେ ବୁଝିପାରୁନଥିଲେ ।"

"ଆମେ କ'ଣ କରିବା ଫାଦର୍ ?"

"କିଛି ନାହିଁ—ସେମାନଙ୍କ ପାଇଁ କେବଳ ପ୍ରାର୍ଥନା କରିବା ।"

"ଏଭଳି ଦୁଷ୍ଟଲୋକଙ୍କୁ କ'ଣ କ୍ଷମା ମିଳେ, ଫାଦର୍ ? ପ୍ରାର୍ଥନା କଲେ କ'ଣ ସେମାନଙ୍କର କିଛି ଉପକାର ହୁଏ ?"

ଫାଦର୍ ସାମୁଏଲ୍ ଅଳ୍ପ ନୀରବ ରହି କହିଲେ, "ସେଇଠୁ କ୍ଷମା ନପାଇଲା ଭଳି ଅପରାଧ ମଣିଷ କରିପାରେନା । ମଣିଷ ଦୁର୍ବଳ । ମଣିଷ କେବଳ ଅପରାଧ କରିପାରେ । କ୍ଷମାପାଇଁ କେବଳ ପ୍ରାର୍ଥନା କରିପାରେ । ଯାହା ହୁଏ ସେଇ ପ୍ରାର୍ଥନାରେ ହିଁ ହୁଏ ।"

ସେଦିନ ମଧ୍ୟାହ୍ନ-ଭୋଜନ ପୂର୍ବରୁ ସମସ୍ତେ ଅନେକ ସମୟ ନୀରବ ପ୍ରାର୍ଥନା କଲେ । ଫାଦର୍ ସାମୁଏଲ୍ ସେ ଖାଲଘରଟିରେ ଚଟେଇ ଉପରେ ଦିନସାରା ବସିରହିଥିଲେ ।

କିଛିଦିନ ପରେ ହିସାବପତ୍ର କରୁଥିବା ବାବୁ ସଜ ଉଣ୍ଡି ଫାଦର୍ ସାମୁଏଲ୍‌ଙ୍କୁ କହିଲେ, "ଫାଦର୍, ଏବେ ଦୁଇମାସ ହେଲା ପଇସା ଆସୁନାହିଁ । ଯାହା ଥିଲା ସେଥିରେ ଚଳୁଛୁ । କ'ଣ କରିବା ? ମୁଁ ଚଠି ଲେଖି ଲେଖି ଉତ୍ତର ପାଉନାହିଁ ।"

ଫାଦର୍ କିଛି ସମୟ ତାଙ୍କୁ ବଲବଲ ଗୁହିଁ ଅଳ୍ପ ହସିଦେଲେ । ତାଙ୍କ ଭିତରେ ସେଇ ପଦେ କଥା ଗୁଞ୍ଜରୁଥିଲା, "ଆମେ ଏମିତି କିଏ କି—ଏ ଦାୟିତ୍ୱ ସମ୍ଭାଳିନେବା ?" ସେଇ ବାବୁ ପୁଣି ଦିନେ ଖୁବ୍ ଖୁସି ହୋଇ ଫାଦର୍‌ଙ୍କୁ ଆସି କହିଲେ, "ଫାଦର୍, ଉତ୍ତର ଆସିଗଲା । ସାହାଯ୍ୟ ଆସି ପହଞ୍ଚିବ । ଆମେ ନଭେମ୍ବର ଶେଷଯାଏ ଚଳିଯିବା । ତେଣିକି କ'ଣ ହେବ ?" ଫାଦର୍ ପୁଣି ତାଙ୍କୁ ଗୁହିଁ ସେମିତି ହସିଦେଲେ ।

ଏମିତି ଏମିତି ଗ୍ଲୁଲିଥାଏ । ପିଲାଏ କ୍ଷୀର ଖାଆନ୍ତି, ଫଳ ଖାଆନ୍ତି । ଦିନ ଗୋଟାଏ ବେଳେ, ରାତି ଆଠଟା ବେଳେ ଏକାଠି ବସି ଭାତ ଖାଆନ୍ତି । ତାଙ୍କର ପିନ୍ଧିବା ଊଣା ହୁଏନାହିଁ । ଘୋଡ଼େଇ ହେବା ଊଣା ହୁଏନାହିଁ । ସେମାନଙ୍କର ଯତ୍ନ ନିଆହେଉଥାଏ ଦିନରାତି । ତଥାପି ଫାଦର୍ ସାମୁଏଲ୍ କହନ୍ତି ଯେ ସେମାନେ ଯେଉଁଥିରୁ ବଞ୍ଚିତ ହୋଇଛନ୍ତି ତାଙ୍କୁ ତାହା କେହି ଦେଇପାରିବେ ନାହିଁ । ସେଥିପାଇଁ ଗାଁର ପାଞ୍ଚଟି ପିଲାଙ୍କୁ ସେ ରାତିରେ ତାଙ୍କ ମା'ମାନଙ୍କ ପାଖରେ ଶୋଇବାକୁ ଛାଡ଼ିଦିଅନ୍ତି । ସେ ମା'ମାନଙ୍କୁ ଆଶ୍ରମ ତରଫରୁ ଅନେକ ସୁବିଧା କରିଦେଇଛନ୍ତି । ସେମାନେ ଆସି ଅନ୍ୟ ପିଲାଙ୍କୁ ମଧ୍ୟ ସ୍ନେହକରି କୋଳେଇ ନିଅନ୍ତି ।

ବଡ଼ଦିନ ପାଖେଇ ଆସିଲା । ଡିସେମ୍ବର ମାସର ଦିନ ପରେ ଦିନ ବିତି ଚାଲିଲା । ପିଲାଙ୍କ ପାଇଁ ନୂଆ ଜାମା ହୋଇପାରୁନଥାଏ । ତେଣେ ପ୍ରତିଦିନ ଚଳିବା ଆଉ ସମ୍ଭବ ହେଉନଥାଏ । ଆଗରୁ ପିଲାଙ୍କ ଅନୁଭବକୁ ନଆସିଲା ଭଳି ସାମାନ୍ୟ କାଟିରଖି ଯାହା ବଳକ୍ୟ ବାହାର କରିଥିଲେ, ସେଥିରେ ପନ୍ଦର ଦିନ ଯାଏଁ କୌଣସିମତେ ହୁଏତ ଚଳିଯାଇପାରେ ।

ସ୍ତ୍ରୀ' ଭିତରେ ଦିନେ ପିଲାଙ୍କପାଇଁ ନୂଆ ଜାମା ଥାକେ ଧରି ଫାଦର୍ ସାମୁଏଲ୍ ଆସି ପହଞ୍ଚିଲେ । ତାକୁ ବଡ଼ଦିନ ଯାଏଁ ଲୁଚେଇ ରଖିବା କଥା । ସମସ୍ତେ ବିସ୍ମିତ ହେଲେ— କେମିତି ଆସିଲା ? ଫାଦର୍ କେଉଁଠୁ ଆଣିଲେ ? ଟିକଏ ବୁଝିବାରୁ ଜଣାଗଲା ଯେ ଫାଦର୍ ପୋଷ୍ଟଅଫିସ ଜମା ଖାତାରୁ ତାଙ୍କର ସବୁ ପଇସା ଉଠେଇ ଆଣିଛନ୍ତି ।

ତିନି ଚାରି ଦିନ ଧରି ସବୁ କର୍ମଚାରୀ ଓଳିଏ ଖାଇବା କାଟିଦେଇଛନ୍ତି—ପିଲାଙ୍କର ନଅଣ୍ଟ ନହେଉ । ଫାଦର୍ ସାମୁଏଲ୍ ଦିନଭିତରେ ଅନେକଥର ଟହଲି ପରି ସେଇ ଖାଲି ଘରଟିକୁ ପଶିଯାଉଥାନ୍ତି । ପର୍ଦ୍ଦାପରି ନିର୍ମଳ ଦୁର୍ବଳ ମଣିଷଟିଏ । ଅନ୍ୟମାନଙ୍କ ଆଖି ଜକେଇଯାଉଛି । ପଢ଼ୁଆରେ ଖେଳୁଥିବା ପିଲାଙ୍କୁ କେହି ଚାହିଁପାରୁନାହାନ୍ତି । ସେ ନିରାଡ଼ମ୍ବର ଅଗାଧ ବିଶ୍ୱାସକୁ ଚାହିଁପାରୁନାହାନ୍ତି ।

ବାଇଶି ତାରିଖଦିନ ସକାଳୁ ଫାଦର୍ ସାମୁଏଲ୍ ପିଲାଙ୍କ କଥା ବୁଝିଦେଇ ବାହାରିଗଲେ ପାଖ ସହରକୁ । ଫେରିଲାବେଳକୁ ପିଲାଏ ଖାଇପିଇ ବିଶ୍ରାମ ନେଇଥାନ୍ତି । ଫାଦର୍‌ଙ୍କୁ ଦେଖି ଅନ୍ୟମାନେ ସମସ୍ତେ ପାଖେଇଆସିଲେ । ତଳକୁ ମୁଣ୍ଡ ପୋତି ସେ ବାବୁ ଜଣକ କହିଲେ, "ଫାଦର୍, ଏ ଓଳି ସବୁ ଖାଡ଼ବୁଡ଼ି ରନ୍ଧାହୋଇଗଲା । ଉପର ଓଳିକୁ କିଛି ନାହିଁ । ପଇସାଟିଏ ନାହିଁ ବଜାର ସଉଦା ଆଣିବାକୁ ।"

ଫାଦର୍ କିଛି ନକହି ତାଙ୍କ ହାତକୁ ଥାକେ ନୋଟ ବଢ଼େଇଦେଲେ । ଟିକଏ ହସିଦେଇ ପଛକୁ ନଚାହିଁ ସେଇ ଘରଟିରେ ପଶିଗଲେ । ବାବୁ ହିସାବ କରି କହିଲେ ଯେ ଦୁଇଦିନ କୌଣସିମତେ ଚଳିଯିବ—ବଡ଼ଦିନ ରାତିକୁ କିନ୍ତୁ କିଛି ରହିବନାହିଁ ।

ତଥାପି ଏତେଗୁଡ଼ାଏ ପଇସା ଫାଦର୍ ପାଇଲେ କେଉଁଠୁ ?······ଡ୍ରାଇଭର୍ ଆସି ଚୁପ୍‌ଚୁପ୍ କହିଲା ଯେ, ତାଙ୍କର ମାଟିଘର ଏବଂ ବାଡ଼ି ସେ ଜଣେ ଧନୀଲୋକଙ୍କୁ ବିକ୍ରି କରିଦେଲେ ।

କାଗଜର ନୋଟଗୁଡ଼ିକ ସେ ବାବୁଙ୍କ ହାତରେ ମହଣ ମହଣ ଭାର ହେଲା । ହାତ ନଇଁଗଲା । ମୁଣ୍ଡ ନଇଁଗଲା । କେହି ମୁହଁ ଟେକି ଚାହିଁପାରୁନଥିଲେ ।

କଥାବାର୍ତ୍ତାରେ ଫାଦର୍ ସାମୁଏଲ୍ ସାମାନ୍ୟ ଅନ୍ୟମନସ୍କ ରହୁଥିବାର ସମସ୍ତେ ଲକ୍ଷ୍ୟକଲେ । ପିଲାଙ୍କ ସାଙ୍ଗରେ କିନ୍ତୁ ସେଇ ଆଗଭଳି ନରମ ହସ, କଥା, ସ୍ନେହ ଏବଂ କୋଳାକୋଳି ।

ସେଦିନ ସକାଳୁ ପିଲାଏ ଖେଳରେ ମାତିଥାନ୍ତି । ଫାଦର୍ ତାଙ୍କ ମନ୍ଦିରେ ଠିଆହୋଇ ରହିଥାନ୍ତି । ପିଲାଟିଏ ଆସି ତାଙ୍କ ଦେହରେ ଲଟେଇ ହେଉଥାଏ । ପୋଷ୍ଟମ୍ୟାନ୍ ବାହାରୁ ପଶିଆସିଲା । ନମସ୍କାର ଜଣାଇ ଖଣ୍ଡିଏ ଚିଠି ବଢ଼େଇଦେଲା—ସହରରେ ସେଦିନ ରାତିରେ ଭୋଜି ନିମନ୍ତ୍ରଣ । କେହି ଜଣେ ଖୁବ ବିଶିଷ୍ଟ ଲୋକ ଆସୁଥିବାରୁ ଆୟୋଜନ ହୋଇଛି । ବଡ଼ ବଡ଼ ଲୋକଙ୍କୁ ନିମନ୍ତ୍ରଣ ହୋଇଛି ।

ପିଲାମାନେ ତାଙ୍କ ହାତରୁ ନେଇ ନିମନ୍ତ୍ରଣ ପତ୍ରଟିକୁ ଦେଖିଲେ । ପଢ଼ୁଆ ପିଲାଏ ଅକ୍ଷର ଚିହ୍ନିଲେ । ପାଉଲ୍ ଆସି ଫାଦର୍‌ଙ୍କ ପାଖରେ ବସିଥିଲାବେଳେ ତାଙ୍କ ବେକକୁ ଭିଡ଼ିଧରି ଗାଲ ଆଉଁସିଦେଲା ।

ପିଲାଟିଏ କହିଲା, "ଫାଦର୍, ତୁମେ ଚାଲିଗଲେ ଆମ ଭୋଜିରେ କିଏ ବସିବ ?—ଆମେ ତମ ସାଙ୍ଗେ ଭୋଜିଖାଇ ଯିବୁ ।"

ଆଜି ରାତି ଫାଦର୍ ସାମୁଏଲ୍‌ଙ୍କ ଶେଷରାତି । ଆଜି ଆଶ୍ରମରେ ପ୍ରଥମ ଉପବାସର ରାତି । ପିଲାଟିର ଗାଲ ଚିପିଦେଇ ଫାଦର୍ ତା' ଆଖିକୁ ଅଦ୍ଭୁତ ଢଙ୍ଗରେ ଚାହିଁଲେ ।

ସବୁ ବଡ଼ମଣିଷମାନଙ୍କୁ ସେ ଦିନସାରା ଖୁସିହେବାକୁ କହୁଥାନ୍ତି । ସମସ୍ତଙ୍କ ମୁହଁକୁ ଚାହିଁଦେଇ ହସିବାକୁ କହୁଥାନ୍ତି । ସମସ୍ତେ କିନ୍ତୁ ସାଙ୍କୁଡ଼ି ଯାଉଥାନ୍ତି । ସେଦିନ ଶୀତ—ନାହିଁ ନଥିବା ଶୀତ !

ସନ୍ଧ୍ୟା ହୋଇଗଲା । ପିଲାଏ ବଡ଼ପାଟିରେ ପ୍ରାର୍ଥନା ବୋଲିଲେ—"ହେ ପରମପିତା ! ତୁମେ ଆମର ଏକମାତ୍ର ଆଶ୍ରୟ । ତୁମେ ଆମର ରକ୍ଷକ ।" ପିଲାଙ୍କ ତୁଣ୍ଡରେ ଅତି ଅଦ୍ଭୁତ ଶୁଭିଲା ସେଦିନର ସେ ପ୍ରାର୍ଥନା ।

ସାତଟା ବାଜିଲା । ସିଷ୍ଟର୍‌ମାନେ ଇତସ୍ତତଃ ହେଲେ । ପିଲାଙ୍କୁ ଖାଇବା ଘରକୁ ନେବାକୁ ସଫାସୁତୁରା କରାଇବା କଥା । କ'ଣ କରିବେ ? ଆଜି ତ ଗୋଟିଏ ଦାନା ବି ଖାଇବାକୁ ନାହିଁ । ସେମାନଙ୍କ ଆଖିରେ ଲୁହ । ଫାଦର୍ ସାମୁଏଲ୍ ସବୁଦିନ ପରି ପିଣ୍ଡାରେ ଚୌକି ପକେଇ ବସିଥାନ୍ତି । ସେମାନେ ଫାଦର୍‌ଙ୍କୁ ଚାହିଁଦେଇ ନିଜ କାମରେ ବାହାରିଗଲେ । ରୋଷେଇଆ ତା' ପୋଷାକ ପିନ୍ଧି ଟେବୁଲ ସଜେଇଦେଲା । ଧାଡ଼ି ଧାଡ଼ି ପ୍ଲେଟ ଥୋଇଦେଲା । ତା' ଆଖିରେ ଲୁହ । ପିଲାଙ୍କୁ ଦେବାକୁ ତା' ପାଖରେ ଚିମୁଟେ ବି ଖାଦ୍ୟ ନଥିଲା ।

ଫାଦର୍‌ଙ୍କ ଆଗରେ ଆସି ସେ ବାବୁ ଜଣକ ଠିଆହେଲେ । ଡାକ୍ତରବାବୁ ଟୋକାଲୋକ । ସେ ଆସି ଠିଆହେଲେ । ଆଗରେ ଅବୋଧ ଶିଶୁଗୁଡ଼ିକ ଟେବୁଲ୍ ଚାରିଆଡ଼େ ଘେରି ବସିଯିବେ ଅଗାଧ ବିଶ୍ୱାସରେ···ତା'ପରେ କ'ଣ ହେବ ? ଏଭଳି ନିଷ୍ଠୁର ପରିହାସ ପାଇଁ କ'ଣ ସେମାନେ ଯୋଗ୍ୟ ?

ସେମାନଙ୍କ ମୁହଁରୁ ରକ୍ତ ଓହ୍ଲେଇ ଯାଇଥାଏ । ଓଠ ଶୁଖିଯାଇଥାଏ । ସେମାନେ ଘଣ୍ଟା ଦେଖି ଲାଗିଥାନ୍ତି । ଆଠଟାକୁ ପାଞ୍ଚ ମିନିଟ୍ । ସମ୍ଭାଳି ନପାରି ଜଣେ ପଚାରିଲା—ଫାଦର୍, କ'ଣ କରିବା ?

ଫାଦର୍ ସାମୁଏଲ୍‌ଙ୍କ ସ୍ୱରରେ କୌଣସି କମ୍ପନ ନଥିଲା । "ଯାହା କର ଆସିଚେ ତା' କରିବା !"—ତାଙ୍କ ମୁହଁରେ ଅଦ୍ଭୁତ ରେଖାଏ ହସ । ଗତ ଦୁଇ ଦିନର ମେଘ ସମ୍ପୂର୍ଣ୍ଣ ଓହ୍ଲେଇଯାଇଥାଏ । ତାଙ୍କ ମୁହଁ ଦିଶୁଥାଏ ଶ୍ରେଷ୍ଠ ପିଲା ମୁହଁଟିଏ ପରି ।

ଫାଦର୍ ଉଠିଲେ ଖାଇବାଘର ଆଡ଼େ ଯିବାପାଇଁ । ଅନ୍ୟମାନେ ବିସ୍ମିତ ଯନ୍ତ୍ରଗୁଡ଼ିଏ, ତାଙ୍କ ପଛେ ପଛେ ଚାଲିଲେ । ପିଲାଏ ଭିତରେ ବସିସାରିଥିଲେ । କଲର୍ କଲର୍ ହେଉଥିଲେ । ଜଣେ ପାଟିକରି ପଚାରୁଥିଲା, "ସିଷ୍ଟର୍, ଆଜି ଆମର ଭୋଜି ହେବନା—ଫାଦର୍ କହୁଥିଲେ !!"

ସମସ୍ତଙ୍କ ଦେହ ଶୀତେଇଗଲା । ଗୋଡ଼ ଝିମିଖାଇଗଲା । ଗେଟ୍ ପାଖରେ ଗୋଟାଏ ବଡ଼ ଗାଡ଼ିର ଆଲୁଅ ପଡ଼ିଲା । ଗାଡ଼ି ପଶିଆସିଲା ଭିତରକୁ । ଜଣେ ଭଦ୍ରଲୋକ ଓହ୍ଲେଇପଡ଼ି ସିଧା ଫାଦର୍ ସାମୁଏଲ୍‌ଙ୍କ ପାଖରେ ନଇଁପଡ଼ି ସମ୍ମାନ ଜଣାଇଲେ ।

"ଫାଦର୍, ଆମକୁ କ୍ଷମାକରନ୍ତୁ ! ଆମର ଯେଉଁ ଭୋଜିପାଇଁ ଆପଣଙ୍କୁ ନିମନ୍ତ୍ରଣ ହୋଇଥିଲା ତା' ହୋଇପାରିଲା ନାହିଁ । ଆମର ଅତିଥି ଆସିଲେ ନାହିଁ । ପଚାଶଜଣଙ୍କ ପାଇଁ ପ୍ରସ୍ତୁତ ସମସ୍ତ ଭୋଜକଟିକୁ ସେମାନେ ମୋ ହାତରେ ଏଠିକି ପଠାଇଦେଇଛନ୍ତି । ଆପଣ ଗ୍ରହଣ କରି ପାରିଲେ ଆମେ ନିଜକୁ କୃତାର୍ଥ ମଣିବୁ ।"

ଫାଦର୍ ସେହିଭଳି ଠିଆହୋଇଥାନ୍ତି । ସମସ୍ତେ ସ୍ତବ୍ଧ । ତା'ପରେ ଠିକ୍ ଆଠଟାରେ ଭୋଜି ଟେବୁଲ ଉପରକୁ ଚାଲିଆସିଲା । ଖାଇବା ପୂର୍ବରୁ ଫାଦର୍ ସାମୁଏଲ୍ ପ୍ରାର୍ଥନାକଲେ, "ହେ ପରମପିତା ! ତୁମେ ହିଁ ଆମର ଏକମାତ୍ର ଆଶ୍ରୟ ! ତୁମେ ହିଁ ଆମର ଏକମାତ୍ର ରକ୍ଷକ !"

ପିଲାଏ ସକାଳର ପକ୍ଷୀପରି କଳରବ କରିଉଠିଲେ । ଭୋଜିର ତୁଳନା ନାହିଁ । ବଡ଼ମଣିଷଙ୍କ କାହାରି ଆଖିରେ ଲୁହ ବାଧା ମାନୁନଥାଏ । ଏତିକିବେଳେ ପୋଷ୍ଟମ୍ୟାନ୍ ଟେଲିଗ୍ରାମ୍‌ଟିଏ ଆଣି ଫାଦର୍‌ଙ୍କ ହାତକୁ ବଢ଼ାଇଦେଲା । ସେ ଆସ୍ତେ ଉଠି ସେଇଟିକୁ ବାବୁଙ୍କୁ ଧରାଇଦେଇ ବାହାରକୁ ଚାଲିଗଲେ ।

ବଡ଼ମଣିଷମାନେ ଏକାଠି ଜୁଣ୍ଡହୋଇ ସେ ଟେଲିଗ୍ରାମ୍‌ଟିକୁ ପଢ଼ିଲେ । ସେଥିରେ ଲେଖାଥିଲା, "ତାର ଯୋଗେ ଆପଣଙ୍କ ସଂସ୍ଥା ହିସାବକୁ ଲକ୍ଷେ ଟଙ୍କା ଜମା ଦିଆଗଲା ।—ସେଇ ପୁରୁଣା ବନ୍ଧୁ—"

···ଏ ଦାୟିତ୍ୱ ମୁଣ୍ଡେଇବାକୁ ଏ ଦୁର୍ବଳ ଗୋଡ଼ରେ କ'ଣ ବଳ ଅଛି ? ଆମେ ଏମିତି କିଏ କି ?

---

# ସବା ସାନଟିଅ

ଧୁତ୍ତ୍ ! ମୁଁ ଏବେ ଏଇଠି ବସି ଗୁଡ଼େ କାନ୍ଦନ୍ତି ନା’ କ’ଣ ! ଏ ଘରଟା ତ ସବୁଦିନେ ଏମିତି ଜଗୁଛିଆ ଥିଲା । ଏମିତି ଦିନ ଦି’ଟା ପର୍ଯ୍ୟନ୍ତ ସକାଳର ଅଇଁଠା ପ୍ଲେଟ୍ ଟେବୁଲ୍ ଉପରେ ପଡ଼ିରହୁଥିଲା । ଏମିତି ଶୋଇବାଘର ପରଦାର ବାଁକାନଟାକୁ ସବୁଦିନ ହାତ ପୋଛି ପୋଛି ମୁଁ ମଇଳା କରିଥିଲି । ଏମିତି ଶେଯ ଉପରେ ଗୋଟାଏ ପଟେ ପେଣ୍ଟ୍ ସାର୍ଟ, ଅନ୍ୟ ପଟେ ଟାଓ୍ୱେଲ ଫିଙ୍ଗା ହୋଇ ପଡ଼ୁଥିଲା ।

—ହଁ, ମାନୁଚି ଯେ ଆଉ ବଖରାରେ ଯାହାଥିଲା ତା’ ଆଜି ନାହିଁ । ନ ରହିବା କଥା ।... ଏଇ ଚାରି-ପାଞ୍ଚ ମାସ ଧରି ସେ ବଖରା ସାରା ଓଦା ଓଦା ଲାଗୁଥିଲା । ଡେଟଲ ଫିନାଇଲ ଗନ୍ଧ ଭରି ରହିଥିଲା । ସେଇଟା ଆଜି ଆଉ ନାହିଁ । ସେ ବେଲୁରି ଖଟ, ସେ ପାତଳ ବିଛଣା, ସେ ସ୍ଲେଟ ଟେବୁଲ, କମୋଡ଼ ସବୁ କ’ଣ ହବ ଆଉ !

ଆଚ୍ଛା, ଏ ସିଗାର ଖଣ୍ଡିକ ବି ଓଦା ହୋଇଯାଇଚି । କେମିତି ଓଦା ହେଲା ? —ହଁ...ହଁ! ସେ ମଝିରେ ଟିକିଏ ଟିପ୍‌ଟିପ୍ ବର୍ଷା ହେଇଗଲା ତ ! ସେଇଠି ଖଣ୍ଡେ ଟାଣିବାକୁ ଖୁବ୍ ମନ ହେଉଥିଲା । ସେ ମଢ଼ିଆ ବ୍ରାହ୍ମଣ ଜମା ରାଜି ହେଲା ନାହିଁ—କହିଲା କ’ଣ ନା ମଶାଣିରେ ସିଗ୍ରେଟ ପିଆଯାଏ ନାହିଁ । ରାସ୍କେଲଟା କ’ଣ ଜାଣେ ? ଚୁଲ୍ଲାଟାରେ ଅଗଡ଼ମ ବଗଡ଼ମ ବକୁଥାଏ—ଏଇଟା ସିଧା ହେଇଗଲା—ସେଇଟା ବଙ୍କା ହେଇଗଲା—କାଠଗଡ଼ ସବୁ ଉତ୍ତର ଦକ୍ଷିଣ କରି ସଜାଅ—ଘିଅପଡ଼ି ଏଇଠି ରଖ—କନା ତାଙ୍କ ସଜିଲ କରି ରଖ । ଇଡ଼ିଅଟ୍ ! ସେ ଦେହଟିକୁ କେମିତି ଥୋଇଲେ ସୁବିଧା ହେବ, କେମିତି ଟିକିଏ ବଙ୍କା କରି ଘୁଞ୍ଚେଇଲେ କାଠଗୋଡ଼ ପେଟପାଖରେ ରହିବ ନାହିଁ, ଏଇଟା କ’ଣ ସେ ମୋ’ଠୁ ବେଶି ବୁଝେ ? ସେ କ’ଣ ତା’ ସାଥିରେ ତେପନ ବର୍ଷ ବଞ୍ଚିଛି ।

ବାହାରଘର ବେତ ଚୌକିରେ ବସି ହାତରେ ଖଣ୍ଡେ ବହି ଧରି ଏଭଳି ସିଗାର୍ ଟାଣିବା ଛଡ଼ା ବର୍ତ୍ତମାନ ଆଉ କ’ଣ କରାଯାଇପାରେ ? ତା’ ସମସ୍ତରେ ସେ ଗ୍ରୀକବାଣୀ ଆସି ବାସନ ଦି’ଖଣ୍ଡ ମାଜିଦେଇଯିବ । ଆଜି ଅବଶ୍ୟ ଟିକିଏ ଅଲଗା । ସେ ପାଖ ବଖରାକୁ ପଶି ଝାଡ଼ୁ କରିପାରେ । ଆଜି କିଛି ମନା ନାହିଁ । ମୁଁ ତାକୁ ମନା କରିଥିଲି ତ; କାରଣ ମୋତେ ସେ କାମ କରିବାକୁ ହୋଇଥିଲା । ଆଉ କିଏ ଥିଲା ଏ ସଂସାରରେ ଯେ ସେଥିପାଇଁ ଅଧିକାର ପାଇଥିଲା ! ଛ’ମାସ ତାକୁ ହଗେଇବା, ମୁତେଇବା, ଛାଞ୍ଚେଇବା, ଲୁଗା ବଦଳେଇବା କାମ

ନିଜ ହାତରେ କରି କରି ମୋର କିଛି ସ୍ୱାସ୍ଥ୍ୟହାନି ବୋଧହୁଏ ହୋଇଗଲା । ସେଇଟାର ଅବଶ୍ୟ କିଛି ମାନେ ନାହିଁ । ଖାଇବା ତ ସେହି ପୁରୁଣା ଅଭ୍ୟାସରେ ଚାଲିଥାଏ । ମୁଁ ତାକୁ ଷ୍ଟୋଭ୍‌ରେ ଉପମା ଟିକିଏ କରି ପ୍ରଥମ ଦିନ ଦେଲିବେଳେ ସେ ଏମିତି କାନ୍ଦୁଥିଲା କାହିଁକି ? ମାଇକିନିଆଗୁଡ଼ାକ ବୋଧହୁଏ ସମସ୍ତେ ଏମିତି ! —ନାଇଁ, ବୋଧହୁଏ ମା'ଗୁଡ଼ାକ ହିଁ ସେମିତି । ମୁଁ ତାକୁ କେତେ ବୁଝେଇଲି । ମୁଣ୍ଡବାଳ ସାଉଁଳି ଦେଲି । ସେ ହାଡ଼ ଗୁଜୁଗୁଜୁ ବୁକୁ ଆଉଁସିଦେଲି । ସେ ତ କଥା କହିପାରୁ ନଥାଏ । ତାଙ୍କ ପରି ତା ବାଁ ହାତରେ ମୋତେ ସାଉଁଳି ଦେଇ କାନ୍ଦୁଥାଏ ଅଜସ୍ର । ସତରେ ହୀନକପାଳୀଟା ! ମୋ ଭଳି ଗୋଟିଏ ପୁଅ ଜନ୍ମ କରି ତା'ର କ'ଣ ଆଉ ଭାଗ୍ୟ ବଦଳିଥାନ୍ତା ! ସେମିତି କାନ୍ଦିଲେ ଭଲ କିଛି ଆଉ ଶୁଧୁରିବାର ଥିଲା ? କିନ୍ତୁ ସେ କାନ୍ଦିବ । ସେ ଜୀବନସାରା ସେମିତି କାନ୍ଦି ଆସିଛି । ନିହାତି ବୋକୀଟାଏ ।

ସନ୍ତ୍ଵବେଳେ ଟିକିଏ ନପିଇଲେ ତ ମୁଁ ଚଳିପାରିବ ନାହିଁ, ବିନାକାରଣରେ ଚଡ଼୍ ଚଡ଼୍ ହେବ, ମିଜାଜ୍ ବିଗିଡ଼ିଯିବ । ବେଳେବେଳେ ମୁଁ ଗୁଡ଼ାଏ ରୁକ୍ଷ ମଧ୍ୟ ହେଇଯିବାର ମନେ ଅଛି । ମା'ଙ୍କୁ ପ୍ରଥମେ ଲୁଚେଇ ଲୁଚେଇ ପିଉଥିଲି । ସେ କିନ୍ତୁ ଉଡ଼ିଗଲା ଚଢ଼େଇର ପର ଗଣିଦେବା ଲୋକ । ସେ ଢେର୍ ଦିନ ଆଗରୁ ଜାଣିସାରିଥିଲା । ବାପା ମରିବାର କିଛିଦିନ ପରେ ମୋତେ ତାଙ୍କ ବଡ଼ଥାଳିରେ ଭାତ ବାଢ଼ିଦେଇ ପାଖରେ ପଙ୍ଖା ନେଇ ବସିଲା । ଧଳାଶାଢ଼ୀ କ'ଣ ତା'ଆଗରୁ ସେ ପିନ୍ଧୁନଥିଲା କି ? ପିନ୍ଧୁଥିଲା । କୁମ୍ଭପକା ସେ ଷ୍ଟାରେଜ୍ରପାଟ ଖଣ୍ଡ ତାକୁ ବଢ଼ିଆ ମାନୁଥିଲା । କିନ୍ତୁ ଧଡ଼ି ନଥିବା ଧଳାକନ୍ତାରେ ସେ ଭରି ହୀନମାନ ଦେଖାଯାଉଥିଲା । ···ବାପାଙ୍କ ବଡ଼ ଗିନାରେ ଡାଲି ବଢ଼ା ହୋଇଥାଏ । ମୁଁ ଖାଇଲା- ବେଳେ, ମନେଅଛି, କେମିତି କେମିତି ଲାଗୁଥାଏ । ଘରେ ସେ ବଡ଼ମୁଣ୍ଡି, ସେ ହିଁ ସେ ପିଢ଼ାରେ ବସି ସେ ଥାଳିରୁ ଖାଇପାରେ । ମାନୁଛି, ମୋତେ ଖୁବ୍ ମାଡ଼ପଡ଼ିଲାପରି ଲାଗିଲା । କିନ୍ତୁ ଅଦ୍ଭୁତ ଭାବରେ ଖୁସି ବି ଲାଗିଲା । ମୁଁ କ'ଣ ସତକୁ ସତ ମୋ ଅବଚେତନାରେ ମୋ ବାପାଙ୍କ ମୃତ୍ୟୁ କାମନା କରୁଥିଲି ? ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇ ତାଙ୍କର ପରାଜୟ କାମନା କରୁଥିଲି ?···ବୋଉ ନୀରବରେ ପଙ୍ଖା କରୁଥିଲା ଏବଂ ସେହିଭଳି ନୀରବରେ କାନ୍ଦୁଥିଲା ।

ବାପାଙ୍କୁ ମୁଁ ଅନେକ କଥାରେ ଅମାନ୍ୟ କରିଥିଲି । ସେ କାହିଁକି ନିହାତି ଛୋଟ ଛୋଟ କଥାରେ ବଢ଼ିନ୍ତା ପୁଅର ବିରୋଧ କରୁଥିଲେ, ସେଥିପାଇଁ ମୁଁ ଦୁଃଖିତ ହେଉଥିଲି । ବାପା ସେତେବେଳେ ନିହାତି ପିଲାଳିଆ ଜଣାଯାଉଥିଲେ । ମୁଁ ତାଙ୍କୁ ଭଲ ପାଉଥିଲି; କିନ୍ତୁ ଟିକିଏ ଦୟା ବି କରୁଥିଲି । ଆହା ବିଚରା, ସେ ଜମା ଜାଣିପାରୁନଥିଲେ ଯେ ଅନ୍ୟ ବାପ ଭଳି ସେ ମଧ୍ୟ ମୋତେ ସଦାବେଳେ ତାଙ୍କର ବଶମ୍ବଦ ହେବାକୁ ଚାହୁଁଥିଲେ । ମୁଁ ଏମ୍.ଏ. ପାଶ୍ କରିବା ଆଗରୁ ମୋତେ ଆଣି ଗୁଡ଼ାଏ ଝିଅଙ୍କ ଫଟୋ ଦେଖେଇଲେ । ମୁଁ ଖେଁ ଖେଁ ମାରି ହସିଥିଲି । ସିଧା ଜବାବ ଦେଇଥିଲି ଯେ ମୁଁ ବାହା ହେବିନାହିଁ । ସେ ଘାବରେଇ ଗଲେ; ଖୁବ୍ ଦବିଗଲେ···ଅନେକ ଆହତ ହେଲେ ।

ଉଲ୍ଲୁ ! ମୁଁ ଭଲ କାହିଁକି ବସି ହେଇଥାନ୍ତି ? ମୋର ସେ ସବୁ ସମ୍ଭାଳିବାକୁ ବେଳ ହିଁ ନଥିଲା—ଏବେ ବି ନାହିଁ । ମୁଁ ଟିକିଏ ନିଶାପ୍ରିୟ । ବାପା ବି ପିଉଥିଲେ, ମୁଁ ଜାଣେ । ମୋର କିନ୍ତୁ ଦୁଇଟି ନିଶା । ସେଥିରେ ମୋର ସବୁ ଉପାର୍ଜନ ସରିଯାଏ ତ ! ମୁଁ ଆଉଜଣକୁ ନେଇ କେମିତି ସମ୍ଭାଳିଥାନ୍ତି ? ହେଇ, ଏଇ ମାସ ବହି ବାବଦକୁ ନଅଶହ ଟଙ୍କା ପଡ଼ିଗଲା । ଏ ଦରିଦ୍ର ଦେଶରେ ବିଅର୍ ବୋତଲଟା ବେଳେବେଳେ କୋଡ଼ିଏ ଟଙ୍କା ବି ହୋଇଯାଏ । ତଥାପି ନପିଇଲେ କ'ଣ ମୁଁ ବଞ୍ଚିପାରିବି, ନା ନପଢ଼ିଲେ ବଞ୍ଚିପାରିବି ?···ଆଉ ବାକି ସେ ଯେଉଁ କଥା—ସେଇଟା ଏବକୁ ଘରି ପିଲାଳିଆ ବୋଧହେଲାଣି । ମିସେସ୍ ଦାସ, ମିସେସ୍ ମାଲହୋତ୍ରା ଏବେ ବି ନିମନ୍ତ୍ରଣ କରନ୍ତି । ବେଳେବେଳେ ଯାଏ । ସବୁ ଆଗଭଳି ହୁଏ; କିନ୍ତୁ ଅଭ୍ୟାସ ମେଣ୍ଟାଇଲା ପରି ଲାଗେ । ଶେଷରେ ଖୁବ୍ ସତ ପରି ଲାଗେ ସଫେନହ୍ୱଅର୍ ।

ଶେଷକୁ ମୁଁ ବାହାହେଲି ନାହିଁ, ମାନେ ହୋଇପାରିଲି ନାହିଁ—ହେବାର ପ୍ରୟୋଜନ ନଥିଲା । ବାପା ମୋର ଅନୁପସ୍ଥିତିରେ ହିଁ ମରିଗଲେ । ମୁଁ ଖବର ପାଇ ଆସିଲି । ବାର ତେରଦିନ ଯାଏଁ ବହୁତ ଗୁଡ଼ାଏ ଲୋକ ମିଶି ଭୋଜିଭାତ କଲେ । ମଝିରେ ମଝିରେ ବାଧ୍ୟ-ରକ୍ଷା କଲାପରି ଜଣେ ଜଣେ କମ୍ପା କେଇଜଣ ଏକାଠି ମିଶି କିଛି କାନ୍ଦିଲେ । ମା'କୁ ବେଢ଼ି ବାରଆଡ଼ କଥା ଗପିଲେ । ମା' ବି ଆସ୍ତେ ଆସ୍ତେ କାଠେଇଗଲା । ସେଦିନ ମୋ ପାଇଁ ବଡ଼ଥାଳିରେ ଭାତ ବାଢ଼ି ଦେଇ ସେ ନୀରବରେ କାନ୍ଦୁଥିଲା । କାନ୍ଦିବା ଉଚିତ । କାନ୍ଦିବା ସ୍ୱାଭାବିକ । ମୁଁ ତଳକୁ ମୁହଁ ପୋତି ଖାଇ ଲାଗିଥାଏ । ମୋତେ ହଠାତ୍ ଶୁଭିଲା—"ଆରେ, 'ରଜୁ'କୁ ଆଉ ଖଣ୍ଡେ ମାଛ ଦିଅନ !" ମୋ ହାତ ସ୍ଥିର ହୋଇଗଲା । ମୁଁ ଆଖିମିଟିକା ନମାରି ଚାହିଁରହିଲି । ବହୁଦିନ ତଳକୁ ମୋ ଅଜାଣତରେ ଖସିଗଲା ।···ସେଇଠି ମା' ସେଇ ଷୀରୋଦ୍ରପାଟ ପିନ୍ଧିଛି । ବାପାଙ୍କର ବିରାଟ ବପୁ । ବିରାଟ ଡେଣା । ଗହଳ ନିଶ । ମୁଁ ହାଫ୍ ପେଣ୍ଟ୍ ପିନ୍ଧି ଗ୍ରେଟ ପିଢ଼ାରେ ଗ୍ରେଟଥାଳି ନେଇ ବସିଛି । ମା' ମଝିରେ ପଙ୍ଖା ଧରି ନୀରବରେ ବିଞ୍ଚୁଛି ।···ବାପା ସତକୁ ସତ ଗୃହୁଁଥିଲେ ମୋତେ ଆଉ ଚେକାଏ ମାଛ ଦିଆଯାଉ । ମୋର୍ ମାଛର ପ୍ରୟୋଜନ—ମୋ ଅପେକ୍ଷା ସେ ଅଧିକ ବୁଝିଛନ୍ତି । ବାପା, ବାସ୍ତବିକ ଭାରି ଭଲ ମଣିଷ ।

ମୁଁ ଆଖିମିଟିକା ମାରି ଚାହିଁଲି । ଧଳାକପଡ଼ାରେ ମ୍ଳାନମାନିଆ ଦିଶୁଥିବା, ସେହିଭଳି ପଙ୍ଖାଟିଏ ଧରି ମା' ବସିଥାଏ । ତା' ହାତ ବି ଅଟକି ଯାଇଥାଏ । ସେ ବି ସେମିତି ଶୂନ୍ୟକୁ ଚାହିଁଥାଏ । ତାକୁ କ'ଣ ସେଇ ଦୃଶ୍ୟ ଦିଶୁଥାଏ ? ସେ କ'ଣ ସେଇ କଥା ଶୁଣିପାରୁଥାଏ ଏବଂ ସେଇଠୁ ଉଠିଯାଇ ସେ ମୋ ପାଇଁ କ'ଣ ଆଉ ମାଛ ଚେକାଏ ଆଣି ଦେଇଥାନ୍ତା ? ··ସେଇଠି କ'ଣ ଆଉ କେହି ଅଦୃଶ୍ୟ ରହି ପହଁରି ବୁଲୁଥିଲା ?

ମୁଁ ଘରେ ତାଲା ପକେଇଦେଇ, ମା'କୁ ନେଇ ଏଠିକି ଚାଲିଆସିଲି । ବାପାଙ୍କର ଲୁଗାପଟା, ଆସନ, ବାସନ ସବୁ ମା' ଆଣିଥିଲା । ମୁଁ ଅଧେ ସେଥିରୁ ଉପରେ, ଆଉ ଅଧେ

ଲାଜରେ ପିନ୍ଧଲିନାହିଁ, ବ୍ୟବହାର କଲିନାହିଁ । ଥରେ ଶୀତଦିନେ ତାଙ୍କ ଗଳାବନ୍ଧା କୋଟ୍ ପିନ୍ଧି ମୁଁ ଚାଲିଗଲାବେଳେ ପଛକୁ ଫେରି ଚାହିଁ ଦେଇଥିଲି । ପରଦା ଆଢୁଆଳରୁ ମୁହଁ କାଢ଼ି ମା' ଠିଆହୋଇଥାଏ । ମୁଁ ଦେଖି ଡରିଗଲି । ବାଟରେ ମୋର ଝାଳ ଫିଟିଗଲା । ତାକୁ ଚୌକି ଉପରେ କାଢ଼ି ଥୋଇଦେଇ ମୁଁ କ୍ଲାସକୁ ଚାଲିଯାଇଥିଲି । ଦିନସାରା ଭଲ ପଢ଼େଇ ପାରିଲିନାହିଁ । ଡରିଲା ଡରିଲା ପରି ଲାଗୁଥାଏ । ସେଦିନ ସନ୍ଧ୍ୟାରେ 'ପାର୍ଟୀ' ପାଖରେ ବସି ଖୁବ୍ ପିଇଲି । ଅନେକ ରାତିରେ ଫେରିଲି । କୋଟ୍‌ଟାକୁ ମା' ଉପରକୁ ଫିଙ୍ଗିଦେଇ ନଖାଇ ଶୋଇଗଲି । ସେ ରାତିସାରା ମା' ବୋଧହୁଏ କାନ୍ଦିଥିଲା । ତା' ଆରଦିନ ତା' ମୁହଁ ଦେଖି ମୁଁ ଜାଣିଗଲି । ସେ ସବୁବେଳେ ସେମିତି ଗୁଡ଼ାଏ କାନ୍ଦୁଥିଲା କାହିଁକି ? ଏତିକି ବୋକୀ ଆଉ କେହି ନଥିବେ !

ବାପାଙ୍କର ଗୁଡ଼ାଏ ପୋଷାକ ମୁଁ ବନ୍ୟା ପାଇଁ ଦାନ କରିଦେଲି । ଗୁଡ଼ାଏ ମୂଷା ଖାଇଗଲେ । କଂସାଥାଳି ହାତରୁ ଖସି ଚୂନା ହୋଇଗଲା । ସବୁବେଳେ ମା' ଅସରାଏ ଲେଖା କାନ୍ଦିଥିଲା । ଏବେ ଏ ଘରେ ବାପାଙ୍କର ହୋଇ ଆଉ କିଛି ନାହିଁ···ହେଇ କେବଳ କିଛି ସ୍ମୃତି । ପାଣିରେ ବମ୍ବ ଦୋହଲିଲା ପରି ମୋ ମୁହଁରେ ତାଙ୍କ ଚେହେରାର ଝାପ୍‌ସା କିଛି ଛାଇ—ସବୁ ମଳିନ, ସବୁ ଦରଲିଭା ।

ମୁଁ ପ୍ରାୟ ସବୁଦିନ ସନ୍ଧ୍ୟାବେଳେ ତାସ୍ ଖେଳିଲି । ଅଳ୍ପ ଅଳ୍ପ ପଇସା ଥୋଇ ଖେଳିଲେ ଆଉ ପ୍ରକାରେ ରୋମାଞ୍ଚ ହୁଏ । ସେମିତି ବି ଖେଳିଲି । ବ୍ରିଜ୍ ଖେଳର ସବୁ ତଥ୍ୟ ମୋତେ ଜଣା । ସବୁ ବିଖ୍ୟାତ ବହି ମୁଁ ପଢ଼ିଛି । କିନ୍ତୁ ଠିକ୍ ଖେଳିବେଳେ ଭୁଲ କରିଦିଏ, ହାରିଯାଏ । —ଘୋଡ଼ଦୌଡ଼ରେ ବି ସେଇଆ । ମୋର ପରାମର୍ଶ ନେଇ ଅନ୍ୟମାନେ ଜିଣିଛନ୍ତି—ମୁଁ କେବେ ନିଜେ ଥରଟେ ସୁଦ୍ଧା ଜିଣିନାହିଁ ।

ମୁଁ ପ୍ରଚୁର ବକ୍ତୃତା ଦେଇ ଜାଣେ । ମା' ମୋତେ ବାରମ୍ବାର ଏଇ ଭାତଥାଳି ପାଖରେ ବସିଥିଲାବେଳେ ମନା କରେ ସେମିତି ଗପିବାକୁ । କହେ ତୁନିପଡ଼ିବାକୁ, ବୁଢ଼ାମାରିବାକୁ, ବାଘହେବାକୁ, ଘରସଂସାର କରିବାକୁ । ଝିଅମାନଙ୍କୁ ଆଣି ଦେଖାଏ । ମୁଁ ହସି ଉଡ଼େଇଦିଏ । ସେମାନେ ଚାଲିଯାନ୍ତି । ତାଙ୍କ ମା'ମାନେ ମୋ ମା' ସହିତ ମୁହଁ ଶୁଖେଇ କଥା କହନ୍ତି—ତା'ପରେ ଚାଲିଯାନ୍ତି ।

ଧେତ୍ ! ଏ ମାଇକିନାଗୁଡ଼ାକ ସବୁବେଳେ ସେଇଆ । ···ମୁଁ ବହୁ ନାରୀଙ୍କୁ ସମ୍ଭୋଗ କରିଛି । ସେମାନେ ଭୁଲିଯାଇଛନ୍ତି । ମୁଁ ଭୁଲିଯାଇଛି । କେବେହେଲେ କାହାକୁ ଆଣି ମୋ ପାଖରେ ସବୁଦିନକୁ ଭରିଯା କରି ରଖିବାକୁ ଚାହିଁନାହିଁ । ମୁଁ କ'ଣ ସେମାନଙ୍କୁ ଭଲପାଇ ନାହିଁ ? ଓଃ ସେ କଥା ଜମା ନୁହେଁ । ମୁଁ ତାଙ୍କୁ ଖୁବ୍ ଭଲପାଇଛି । ତାଙ୍କୁ ଭଲ ନପାଇ କ'ଣ ବଞ୍ଚିହୁଏ ! କିନ୍ତୁ ମୁଁ ଯେତିକି ସମୟ ତାଙ୍କୁ ଦେଇଛି ତା'ଠୁ ଅଧିକ ମୋ ପାଖରେ ନାହିଁ ।

ମୁଁ ଘରକୁ ପ୍ରାୟ ହାଲିଆ ହୋଇ ଫେରୁଥିଲି । ମା' ପ୍ରଥମେ କିଛି ଖୁଆଇ ଦେଉଥିଲା । ତା'ପରେ ମୁଁ ଇଚ୍ଛାସୁଖେ ସିଗାର୍ ଟାଣୁଥିଲି । ଟେବୁଲ ଉପରେ ସେ ସବୁଦିନ ସଜାଡ଼ି ରଖୁଥିବା ବହିଥାକକୁ ସବୁଦିନ ଉଲଟ ଦେଉଥିଲି । ମନକୁ ମନ ଗୁଣୁଗୁଣୁ ହେଉଥିଲି । ମା' କ'ଣ ସବୁ ମୋ ପଛେ ପଛେ ଗୋଡ଼େଇ ଗୋଡ଼େଇ କହୁଥିଲା—ମୁଁ ଶୁଣୁ ନଥିଲି । ଶୁଣିଲେ ବି ବୁଝୁନ ଥିଲି । ଟଙ୍କା ମାଗିଲେ ମୁଣ୍ଡ ଝାଡ଼ି ଯାହା ଥାଏ ଦେଇଦେଉଥିଲା ! ସେ ମୋ ପାଇଁ ବଜାର ଆଣୁଥିଲା । ରାନ୍ଧବାଢ଼ି ଜୋଡ଼େଇ ରଖୁଥିଲା । ମୁଁ ନ ଖାଇଲେ ଖାଉ ନଥିଲା, ମୁଁ ନ ଶୋଇବାଯାଏଁ ବୋଧହୁଏ ଚାହିଁ ରହୁଥିଲା । ଭାରି ଦୁଃଖିନୀ ମା'ଟିଏ ମୋ'ର । ଟିକିଏ ଆଡ଼ପାଗଳୀ, ବୋକୀ, କାଳୀ, ପାଚିଲାମୁଣ୍ଡୀ ଗେଡ଼ୀ ମା'ଟିଏ ।

“ଆଲୋ ମା' ! ତୁ କାହିଁ ତୋ ପାଟଗୁଡ଼ାକ କାଢ଼ି ପିନ୍ଧ ନେଉ ନାହୁଁ ? ତାକୁ ଆଉ କିଏ ପିନ୍ଧିବ ବୋଲି ସାଇତୁଛୁ ।”

ଗାଲରେ ହାତ ଦେଇ ମୋ ଆଡ଼କୁ ବାଲୁବାଲୁ ଚାହିଁ ସେ ହସିପକାଇଲା । ତା'ପରେ ଦେଖୁ ଦେଖୁ କାନ୍ଦପକାଇଲା ।

“ଶୁଣ, ମୋ ଜ୍ଞାନୀ ପୁଅର ଅଲିଆ କଥା ! ବୋହୂଟିଏ ଆଣିବୁ ବୋଲି ତ ଚାହିଁ ଚାହିଁ ଆଖିରୁ ପାଣି ମଲାଣି । ସେଗୁଡ଼ାକୁ ଆଉ କିଏ ପିନ୍ଧିବ ? ଶୁଭ ସାଇତା ପାଟ ।”—କହୁ କହୁ କଥାଗୁଡ଼ାକ ନାକବାଟେ ତରଳ ଥୋପି ପଡ଼ିଲା । ଆଖିରୁ ଝର ଝର ପାଣି ଗଡ଼ିଗଲା । ଭୟଙ୍କର ନାକକାନ୍ଦୁଣୀ !

ଏଇ ପାଞ୍ଚମାସ ତଳେ ଏମିତି ହଠାତ୍ ଠିଆରେ ପଡ଼ିଗଲା । ତାକୁ ଟେକି ଆଣିଲି । ତା' ଦେହ ଫଡ଼ଫଡ଼ ହେଲା । ତାଢଟାଏ ଛେଚ ଦେଲା । ତା'ପରେ ପାଟି ପଡ଼ିଗଲା । ଅଙ୍ଗ ପଡ଼ିଗଲା । ପଡ଼ିଶା, ଅଡ଼ିଶା, ଡାକ୍ତର ଆସିଲେ । ଛାତ୍ର, ଅଧ୍ୟାପକ, ବନ୍ଧୁ, ଅଫିସର ସବୁ ଗୋଷ୍ଠ ଗୋଷ୍ଠ ଆସିଲେ ।

“ଏଣିକି କେବଳ ସେବା କରିବାକୁ ହେବ ସାର୍—ଆଉ କିଛି ଉପାୟ ନାହିଁ । ସତୁରୀ ବର୍ଷର ବୁଢ଼ୀ । ସେ ଆଉ ଏଥିରୁ ଭଲ ହୋଇପାରିବେ ନାହିଁ ।”

ସେ କ'ଣ ଆଉ ଭଲ ହୋଇଥାନ୍ତା କି ! ସେ ଗ୍ରେଟ ବେଲୁର ଖଟଟି ଉପରୁ ବାଲୁବାଲୁ ଚାହିଁଥାଏ ମୋ ମୁହଁକୁ । ସବୁ ଶୁଣୁଥାଏ । ସବୁ ବୁଝୁଥାଏ । ଖାଲି କାନ୍ଦୁଥାଏ । ଓଦା କନାଟିଏ ପରି ମୁହଁଟି କୁଞ୍ଚ କୁଞ୍ଚ ଚପୁଡ଼ି ହୋଇଯାଉଥାଏ ।

ଭାରି ଅଡୁଆ ଲାଗିଲା । ସେ ରାତସାରା ସ୍ତ୍ରୀଲୋକମାନେ ରହିଲେ ପାଳିକରି । ତଦାରେ ପରସ୍ତା କରାଇଲେ । ଔଷଧ ଖୁଆଇଲେ । ପାଣି ପିଆଇଲେ । ତା'ପରେ କିଏ କେଉଁ ଆଲରେ ସବୁ ଖସିଗଲେ । ମେହେନ୍ତର ସିବା ଛଡ଼ା ଯେ କାର୍ଯ୍ୟ କରିବାକୁ କେହି ରାଜି ହେଲେ ନାହିଁ । ଆଉ ଗୋଟାଏ ସେ ଜନ୍ମ ଦେଇ ତା ମୁଣ୍ଡ କିଣିଛି—ସେଇ ତ ଶେଷକୁ କରିବ—କଲି ମଧ୍ୟ ।

ପରିସ୍ଥିତି ରହିଗଲେ ଏପରି ଉତ୍କଟ ଗନ୍ଧଟିଏ ବୋଲି ମୋର ଧାରଣା ନଥିଲା । ପ୍ରତିଦିନ ସକାଳୁ ସେ ମୂତଭରିବାଟା ସଫା କରିବା ହେଲା ପହିଲି କାମ । ତା'ପରେ ବୁଢ଼ୀକୁ ଟେକିନେଇ କାନ୍ଥ ଆଉଜାରେ କମୋଡ଼ରେ ବସେଇବା । ଏଥିରେ ଦିନର କାର୍ଯ୍ୟସୂଚୀ ଆରମ୍ଭ । ଏ ଚୁରୁଟ୍‌ଗୁଡ଼ିକ ଭାରି କଡ଼ା; କିନ୍ତୁ ଯେତେ ଯାହା ଚେଷ୍ଟାକଲି ପ୍ରଥମଦିନ ପ୍ରେକହେଲି ନାହିଁ । ଶୁଡ଼ାଏ ବାନ୍ତି କରିପକେଇଲି । ରାତିରେ ସେହି ଦିଟ ପାଖେ ଶୋଇ ନରହିଲେ କେମିତି ଆଉ ହେବା କଣହେବ ? ଶୋଇରହେଲି ତିନି ରାତି ଦିନ । ରାତିରେ ନିଦ ହେଲାନାହିଁ । ଦିନସାରା ଝିକ୍ ଝିକ୍ ଲାଗିଲା । ···ହେଟ୍ ବେ ! ସେବା ନା ଝେମୁଆଳୁ । ହଜାରେ ଯୁ କ୍ତିରେ ଚେଷ୍ଟାକଲି—ଓ୍ୱେକ ହେଲାନାହିଁ । ଦାନ୍ତକୁ ଦାନ୍ତ ଚେପିକେତି ବୁଢ଼ୀକୁ ଅଣି ଖଟିଆ ଉପରେ ଛେଚଦେବାପାଇଁ ମନହେଇଗଲା ।

କ'ଣ କଲି କେଜାଣି—ସେ ଖାଲି ତରଳା ପରି ମୋ ମୁହଁକୁ ଚାହିଁରହିଲା । ମୁଁ ରାତିରେ ଶୋଇ ନପାରି ଦେହ-ମନର ବନ୍ଧା ତୁଟାଇବାକୁ ସକାଳୁ ମୁହାଁଏ ପିଇଦେଇଥାଏ । ମୋ ଓଠ ଶେତା, ମୋ ଥୋଡ଼ ଭୁଡ଼ିଆ, ମୋ ଅଖି ଚାରିପଟେ କଳା ଦାଗ, ମୁଣ୍ଡବାଳ ଅଳରା ହୋଇଥାଇପାରେ । ଆଖିଡୋଳା ରଙ୍ଗ ଟହଟହ ହୋଇ ତର୍‌ଟି ତର୍‌ଟି ହେଲାପରି ଚାହିଁ-ଥାଇପାରନ୍ତି । ସେଥିରେ ସେ ତା ଜୁନ ପୁଅକୁ ଖୋଜି ପାଇ ନଥାଇପାରେ ।

ଅବେ ଯାଉନ୍ତୁ—ମୁଁ କ ତୋ' ଭିତରେ ମୋ ମା'କୁ ଖୋଜି ପାଉଚ ? ମା' ଯେ ମୋ ଦେହକୁ ଧୂଳି ଝାଡ଼ିଦେଇ କୋଳ କରୁଥିଲା, ଖିର ଖୁଆଉଥିଲା, ଯେ ଷୀଦ୍ରେପାଟ ପିନ୍ଧୁଥିଲା—ଏଇ ବୁଢ଼ୀଟି ସେଇ ? ମୋତେ ଯାହା ସେ କରିଥିଲା ମୁଁ ସେଇଆ ସ୍ୱା'କୁ ଶୁଝିବାକୁ ହେବ ? ଏଇଟା କ'ଣ ମହାଜନୀ କାରବାର ହେଇଛି, ମୂଳ କଳାନ୍ତର ହିସାବ ହେବ ? ସେ ମଣିଷକୁଅଟାକୁ ଟେକପାଲ କରୁଥିଲା ସେ ବଞ୍ଚିବ ବୋଲି । ଏଇଟାକୁ କ'ଣ ଯେତେ ଯତ୍ନ କଲେ ଆଉ ବଞ୍ଚିବ ? କାଳେ ଗୁହମୂତରେ ପାଣ୍ଡି ହେବ—ଆଉ ଗୋଟାଏ ତା' ଅନ୍ତ ଭିତରୁ ଆସିଛି ବୋଲି ତାକୁ ସେଥିରେ ଘୋଷାରିବ ! ଅବେ ଯାଉନ୍ତୁ, ଏଇଟା ଯେତେ ଚଞ୍ଚଳ ମରିବ, ସେତିକି ନିସ୍ତାର !

ଅଗଣାରେ ଏପାଖ ସେପାଖ ହୋଇ ସେଦିନ ଖାଲି ଚିଟିଯାଉଥିଲି । ମା' ମୁହଁକୁ ନଚାହିଁ ସେମିତି ଅଖିଆ ଅପିଆ ମୁଁ ବାହାରିଯାଇଥିଲି । ମୋ ହାତ ଦେହମୁଣ୍ଡ ସବୁବେଳେ ମୁତଗନ୍ଧ ଦେଲା । ସବୁବେଳେ ଅଇ ଟେକିଲା । —ଇସ୍, କି ସାଂଘାତିକ ଅବସ୍ଥା ! ମୁଁ ଅହରହ ଚୁରୁଟ୍ ଟାଣିଲାଗିଥାଏ । ଘରେ ନଥାଏ; କିନ୍ତୁ ସେଇ ପାଖେ ପାଖେ ଚକ୍‌କର କାଟୁଥାଏ ।

ପାଣ୍ଡେ ହଲଓ୍ୱାଇ ଦୋକାନ ପାଖରେ ମୁଣ୍ଡ ବୁଲେଇଦେଲି । ଇଚ୍ଛାହେଲା କିଛି ଖାଇବାକୁ । ଭଲ ମିଠା ମିଳେ ସେଇଠି । ପଙ୍ଖା ଖଣଖଣ ଶବ୍ଦ କରୁଥାଏ । କିଛି ଧୂଆଁ ସେ ଦାନ୍ତେଯୋଦ୍ଧା ମନ୍ଦି ହେଉଥାଏ । ମୁହଁକୁ ଦୁଇହାତରେ ମୋଡ଼େଇ କିଛି ସମସ୍ତ ଗ୍ଲାଇରେ

ବର୍ଷିଯିବାରେ ଲାଗିଗଲା । ପାଦ ଖସ୍‌ଖସ୍ ଶୁଭିଲା । ଟେବୁଲରେ ପାଣି ଗିଲାସ ଥୁଆହେଲା ।

"କ'ଣ ଦେବ ?"

"ମିଠା କ'ଣ ଅଛି ତୁମର ?"

"ସବୁ ଅଛି···ରସଗୋଲା, ଚମ୍‌ଚମ୍, ଗୋଲାପଜାମୁନ୍, ସନ୍ଦେଶ, ଛେନାଗଜା, ରସମଲାଇ, କମଳାଭୋଗ···ଦୁଧପେଡ଼ା···"

ମୁଁ କ'ଣ କହିଲି କି ନାହିଁ କେଜାଣି ସେ ଚାଲିଗଲା ଆଣି ଯୋଗାଇଦେଲା ଗୋଟିଏ ପ୍ଲେଟରେ ଦୁଇଟି ମଣ୍ଡିଆର ଆକାରର ପେଡ଼ା ।

ପେଡ଼ା ଉପରେ ଟିପମାରବାରୁ ହସମାଡ଼ିଲା । ସେଇ ଟିପକୁ ନେଇ ଚାଟିଦେବ କି ?

ଆରେ ଏମିତ କାହିଁକ ଉତ୍କଣ୍ଠା ପଣ ହଉଚୁ ? ପେଡ଼ା ପର ପଦାର୍ଥ—ଚୋବେଇ ଖାଉନୁ । ପାଟିସାକ ଗୁଆଗିଅ ପର ବାହିବ । ଚୋବେଇଲେ ପାଟିସାକ ଭର୍ତ୍ତି ହୋଇଯିବ କ୍ଷୀର ଆଉ ଚାବଡ଼ା । ···ଦେଖି, ଦେଖି, ମତେ ଗୋଟେ ଦେଲୁ ! —ନାଇଁ, ବାପାଙ୍କୁ ଏ ଗୁଡ଼ାକ ସୁଖ ଲାଗେନାହିଁ । ତୁ ତ ମୋ ଓଳ ! ···ଆସିଲୁ ମୋ ଗୋଡ଼କୁ, ଯାଇହେଇ ଖାଇବା !

"କ'ଣ ହେଲା ସାର୍ ? ଖାଉନାହାନ୍ତି !"

ପେଡ଼ା ଉପରୁ ଟିପଟା ଠକ୍ କନା ଗୁଡ଼ାଇଗଲା । ଝାଲ ପାଣି ଗିଲେସେ ପିଇଦେଇ ଉଠିପଡ଼ିଲି ।

"ଏଥିରୁ କୋଡ଼ିଏଟା ଦୁଧପେଡ଼ା ବାନ୍ଧିଦେଲ !"

···ଦାନ୍ତ ନଥିବା ମାଢ଼ିରେ ଚାପିହୋଇ ପାଟିସାରା ଦୁଧ ଚାବଡ଼ାରେ ସଡକୁ ସଡ ଭର୍ତ୍ତି ହୋଇଯାଉଥାଏ । ପୁକ୍କିଟିଏ ପରି ମା' ମଝିରେ ମଝିରେ ଗୁଡ଼ୁଗୁଡ଼ୁ ହେଉଥାଏ । ଖୁସି ହୋଇଯାଉଥାଏ । ତା' ଆଖିରୁ ଧୁହାକୁ ଧୁହା ପାଣି ନଗିଡ଼ି ଯାଉଥାଏ ।

ତା' ମୁହଁଟାକୁ ସାଉଁଳିବାକୁ ମନହେଲା । ସେ ଭାରି ବଢ଼ିଆ ଦେଖାଗଲା । ଦୁଇହାତରେ ସେ ମୁହଁଟିକୁ ଧରି ଅନେକ ବେଳ ଚାହିଁରହିଲି । ପୋଥିପରି ହଜାରେ ପୃଷ୍ଠା ଫିଟିଗଲା ଫର୍ ଫର୍ ହୋଇ । ପଚାଶ ବର୍ଷର ଜନଗାତ, ସକାଳ ସଞ୍ଜ, ସୁଖ ଦୁଃଖ, କଥାବାର୍ତ୍ତା, ଭାବଭଙ୍ଗୀ —ସବୁ ପୃଷ୍ଠାରେ ଚଳନ୍ତ ଚିତ୍ର—ଅଳ୍ପ ଅଳ୍ପ ମଧୁର କଥା । ପାକୁଆ ପାଟିରୁ ସେଇ ଦୁଧପେଡ଼ାର କ୍ଷୀରସମୁଦ୍ରରୁ ଉଠିଆସୁଥାନ୍ତି ସେ କଥାଗୁଡ଼ିକ ଅସୁମାରି, ଚିତ୍ରଗୁଡ଼ିକ ।

ମୁଁ ମା'କୁ ଉଷୁମ ପାଣିରେ ଲାଭେଣ୍ଡର ପକେଇ ଗାଧୋଇଦେଲି । କ୍ଷୀରୋଦ୍ରାପଟାକୁ ପିନ୍ଧାଇ ନକାଣି ଗୁଡ଼େଇଦେଲି । ଲୁଗାପଟା ପରିଷ୍କାର କରିଦେଲି । ଘରସାରା ଫିନାଇଲରେ ପୋଛି ଲାଭେଣ୍ଡର ଛିଞ୍ଚିଦେଲି । ଧୂପକାଠି ଜାଳିଦେଲି ଖଟ ପାଖରେ । ନିଜେ କ୍ଷୌର ହୋଇ ଗାଧୋଇଲି । ଅନେକ ମଳ-ଧୂଳି ଉତ୍ତାପ ଧୋଇହୋଇଗଲା । ଲାଭେଣ୍ଡର

ଧୂପ ଧୂଆଁ ମୋ ଫୁସ୍‌ଫୁସ୍ ଭିତରେ ଭରିଗଲା । ମନେହେଲା ମୋ କଲିଜା, ମୋ ମୁଣ୍ଡ ଭିତର ଦେହ, ମୋ ଅନ୍ତ, ନାଡ଼ ସବୁ ସେ ବାସ୍ନାରେ ମହକିଗଲା ।

ତେଣିକି ସବୁ ଗୋଟାଏ ଛନ୍ଦରେ ପଡ଼ିଗଲା । ଲୋକେ ଆସିଲେ । ଔଷଧ ଆସିଲା । ରାନ୍ଧୁଣିଆ ଆସିଲା । ଧୋବଣୀ, ମେହେନ୍ତାଣୀ ସମସ୍ତେ ଯେ ଯାହା ଅଞ୍ଚଳ ଆବୋରିଗଲେ । ଟ୍ରେଟିଆ ମାଟିପଞ୍ଜୁରୀ ଭିତରୁ ମୁହଁ ଟେକିଥିବା ଶୁକପକ୍ଷୀଟିଏ ପରି ମା' ଅନେଇ-ଥାଏ । ତା' ଆଖିରେ ତୃପ୍ତି ।

ଧରାବନ୍ଧା ସମୟରେ ଧରାବନ୍ଧା ଅଭ୍ୟାସ ପଡ଼ିଆସିଲା । ମୁଁ ମନଖୁସି ସଞ୍ଜବେଳେ ଟିକିଏ ପିଇଲି, ଟିକିଏ ସଙ୍ଗୀତ ଶୁଣିଲି । ଡ଼'ଗୁରୁପଣ୍ଡା ପଚ୍ଛିଲି । ସାଙ୍ଗସୁଖ ବି ଆସିଲେ । ମା' ପାଖକୁ ନେଇ ସେମାନଙ୍କୁ ବୁଲେଇ ଆଣିଲି ।…ବଗ୍ରହ ଶାସ୍ତ୍ରୀ ଆସି ମୋତେ ଉସ୍‌କେଇ ଦେଲେ । ସଂସ୍କୃତ ପଢ଼ିବାକୁ ମୋର ଝୁଙ୍କ ଉଠିଲା । ସେ ମୋତେ ମେଘଦୂତ ପଢ଼ି ବୁଝେଇ ଦେଲେ । ଓଃ, ମୁଁ ତାକୁ ବାରମ୍ବାର ପଢ଼ିବାକୁ ଚାହିଁଲି । ମୋତେ ସବୁବେଳେ ମନ୍ଦାକ୍ରାନ୍ତାର ବିଲମ୍ବିତ ଛନ୍ଦ ଶୁଭିଲା । ମୋ ଭିତରେ କାହିଁ ଆସି ନୂଆ ମେଘ ଘୁମୁରିଲା । ପଥର ଦାଢ଼ରେ କୁଟଜ କୁସୁମ ଫୁଟିଗଲା । ଉଡ଼ି ଚାଲିଗଲା ମେଘ ଅସୀମ ଉତ୍ତରକୁ ବନ୍ଧୁପରି ମୋ ଆତ୍ମାର ସନ୍ଦେଶ ନେଇ । ମୋ ଭିତର ବାହାର ମେଘର ନିଃଶ୍ୱାସରେ ଓଦା ଓଦା । ମୁଁ ପ୍ରଥମ ଥର ପାଇଁ ଗୋଟାଏ ଅମୂର୍ତ୍ତ ଗୁଞ୍ଜରଣ ଶୁଣିଲି । ଖକ୍‌ବକ୍ ଲାଗିଲା । ପ୍ରଣୟୀଟିଏ ହେବା କେଡ଼େ ଅଦ୍ଭୁତ ଅନୁଭବ ସତେ ! ମୁଁ ଗୋଟାଏ ଉତଲା ଆବେଗରେ ଭାସିଗଲି… ଅଳକାପୁରୀ ଦିଶିଲା ।…ଲୁହରେ ଓଦା ହୋଇଥିବା ବୀଣା ତାରଗୁଡ଼ିକ ଦିଶିଲା; କିନ୍ତୁ ଝରକାବାଟେ ଘୁମୁ ଘୁମୁ ଡାକୁଥିବା ମେଘକୁ ଅନେଇ ବସିଥିବା, ସେ ମଳିନ ବସନା ବିରହିଣୀ ବଧୂଟି କିଏ ? ତା'ର କୌଣସି ସ୍ଥିର ରୂପ ଦିଶିଲାନାହିଁ । ମେଘ ଘୋଡ଼େଇ ହୋଇଗଲା । ଚନ୍ଦ ଉପରେ ପାଣିମଡ଼େଇ ହୋଇଗଲା । ରାତି ବାରଟାରେ ମୁଁ ଚୌକିରେ ବସି ବହିକୁ ଚାହିଁଲାବେଳକୁ ମୋ ଆଖିରେ ଲୁହ ଟଳମଳ ।…ବେକୁବ୍ କାହିଁ !

ତା'ପରେ ଶାସ୍ତ୍ରୀ ପଢ଼େଇଲେ ଶକୁନ୍ତଳା । ମୋର ସବୁ ବିଦ୍ୟା ବୁଦ୍ଧି ଉପରେ ଗୋଟିଏ ପାତଳ ରେଶମୀ-ଚାଦର ଘୋଡ଼େଇ ହୋଇଗଲା । ମୁଁ ସେଥିରୁ ନିଜକୁ ମିଶେଇ ମୋ ଅଜାଣତରେ ଅନେକ କଥା ଭାବିଗଲି । ନିଚ୍ଛୋଳା ସମୟରେ ଅନନ୍ୟ ନାରୀଟିଏ ମୋ ଭିତରେ ବାହାରେ ଦେଖାଦେଲା । ମନେହେଲା ସେ ମୋତେ ଏବଂ ମୋର ସେ ନିର୍ଜନ ଘରଟିକୁ ଆଚ୍ଛନ୍ନ କରିଗଲା, ଅଧିକାର କରିଗଲା । ମୁଁ ତାକୁ ସବୁବେଳେ ସବୁଠି ଅନୁଭବ କଲି । ସକାଳୁ ଚା' କଲାବେଳେ ଦୁଇଟି ସୁନାକଙ୍କଣ ପିନ୍ଧିଥିବା ସୁନ୍ଦର ହାତ ଦିଶିଗଲା । ମା'ର ଲୁଗା ବଦଳ ବେଳେ ପାଲଟା ଓଦାଟାକୁ ପଦ୍ମପାଖୁଡ଼ା ପରି ପାପୁଲିରେ କେହି ତୋଳି ନେଇଯିବାପରି ଲାଗିଲା । ଖୁଆଇଦେଲାବେଳେ ତା' ମୁଣ୍ଡ ପାଖକୁ ଝଲମଲ ରାଜ-ରାଣୀର ଆବକ୍ଷ ପ୍ରତିମା ନିମେଷେ ଦିଶି ମିଳେଇଗଲା ।

ମା' କୁଁ କୁଁ ହେଲା ।

ଦେଖିଲି ବେଳକୁ ତା' ପାଟିରେ ଖାଇବାକୁ ଦେବା ପରିବର୍ତ୍ତେ ମୁଁ ତା' ଗାଲ ଉପରେ ଲଗାଇଦେଇଛି । ମୁଁ ଭୁଲ୍ ପାଇଁ ଲାଜେଇଗଲି । ମା'ର ଆଖି କେମିତି ଗୋଟାଏ ସର୍ବଜାଣ ଦୃଷ୍ଟିରେ ସେ ଗହ୍ୱର ଭିତରୁ ମିଟ୍ ମିଟ୍ ଚାହିଁଲି । ···ସେ ତା' ପୁଅର ସବୁ କିଛି ଦେଖି-ପାରିଥିଲି, ଚିହ୍ନି ପାରିଥିଲି । ସେ ତା' ମନ ଭିତରର ସ୍ୱପ୍ନ ସୁଦ୍ଧା ବାରିଦେଇଥିଲି । ମା' ଅଦ୍ଭୁତ ଢଙ୍ଗରେ ହସୁଥିଲି—କାନ୍ଦୁରା କାନ୍ଦୁରା ହସ !···ଆଶ୍ଚର୍ଯ୍ୟ ! ସାମାନ୍ୟ ଚେହେରାରୁ, ଚାହାଣିରୁ, ଦେହର ଅଥବା ନିଃଶ୍ୱାସର ବାସ୍ନାରୁ ଏମିତି କ'ଣ ପୁରୁଷଟିକୁ ସେମାନେ ଜାଣି-ଯାଆନ୍ତି ! ନାଇଁ ବୋଧହୁଏ···ମା' ନହେବାଯାଏଁ ଏତେ ବୁଝାମଣା ଆସୁନଥିବ ପରା !

ଶକୁନ୍ତଳା ପଢ଼ାଚାଲିଥାଏ । ଚାରୀ ଚରିତ୍ରଗୁଡ଼ାକୁ ସାମୂହିକ ଭାବରେ ମୁଁ ଭାରତ-ଭୂମିରୁ ବହିଷ୍କାର କରୁଥାଏ । ମୂର୍ଖ ରାଜାଗୁଡ଼ାଙ୍କର ଅବୁଝାମଣା ବିଚାର ପାଇଁ ତାଙ୍କୁ ଫାଶୀ ହୁକୁମ ଦେଉଥାଏ ··ଏବଂ ଏ ସମସ୍ତ ଭିତରେ ସେ ଅପୂର୍ବ ନାରୀରୂପଟି ମୋତେ ଆହୁରି ନିବିଡ଼-ଭାବରେ ଆଚ୍ଛନ୍ନ କରିଚାଲିଥାଏ । ···ବେଳେବେଳେ ସେ ମିସେସ୍ ଦାସ, ଆଉ ବେଳେ ମିସେସ୍ ମାଲହୋତ୍ରା, ଆହୁରି ଆହୁରି କେତେ ସବୁ ସୁନ୍ଦର ମୁହଁପରି ଦିଶିଯାଉଥାଏ ।

ମୋର ଅନ୍ୟମନସ୍କତା ବୋଧହୁଏ ସେ ସମୟରେ ଅନେକ ବଢ଼ିଯାଇଥିଲି । କ୍ଲାସରେ ଅଭ୍ୟାସବଶତଃ କ'ଣ ଗୁଡ଼ାଏ ବକିଯାଉଥିଲି; କିନ୍ତୁ ଏଠି ସେଠି ବର୍ଷି ଗପିବା ବନ୍ଦ ହୋଇ-ଯାଇଥିଲି । ମୁଁ ମୋର ବିଚିତ୍ର ସ୍ୱପ୍ନରାଜ୍ୟକୁ ଯଥାଶୀଘ୍ର ଫେରି ଆସୁଥିଲି । କିଏ କହୁଥିଲି, "ସାର୍ଙ୍କ ମା' ରୋଗରେ ପଡ଼ିଛନ୍ତି ।" ଆଉ କିଏ କହୁଥିଲି, "ବୁଢ଼ାର ଏ ବୟସରେ ସଙ୍ଗୀତ ଶିଖିବାକୁ ଝୁଙ୍କ ଉଠୁଛି !—ସେଥିପାଇଁ··"

ନା, ମୋର ପୁଅ ଲୋଡ଼ାନାହିଁ···ସେଗୁଡ଼ାକ ମୋର ଭଳି ନିହାତି ଅଶ୍ଳୀଳ, ଅରଣା, ବାଳୁଙ୍ଗା ହେବେ । ବରଂ ଝିଅଗୁଡ଼ିକ ଭାରି ଭଲ ।··· ମାଲହୋତ୍ରାଙ୍କ ଝିଅ ପରି···ହସିଲେ ତା ମୁହଁଟି କେଡ଼େ ସୁନ୍ଦର ଦିଶେ । ତା' ଦାନ୍ତ, ଆଖି, ତା' ଗାଲରେ ସେ ଟୋଲି ଭଉଁରି ଭାରି ସୁନ୍ଦର । ଆରେ, ତୁମେ ଜମା ଚିନ୍ତା କରନାହିଁ, ମୋ ଝିଅ ଅବିକଳ ସେଇଭଳି । ··· ସେଇ ତ' ମୋ ଝିଅ । ସେ ତା ମା' ଭଳି ଦିଶୁଥାଇପାରେ । ସେ କିନ୍ତୁ ମୋ ଝିଅ । ସେ ବଡ଼ ହେଲେ ଅବିକଳ ତୁମ ଭଳି ହେବ—ମୋ' ମଝିଆଁ ଝିଅ ଭଳି ହେବ—ତା' ବଡ଼-ଭଉଣୀ ଭଳି ହେବ ।···ବଗିଚାରେ ଫୁଲ ଫୁଟିଲି ପରି ମୋର ଅସଂଖ୍ୟ ଝିଅ କେମିତି ଝଲମଲ ହେଉଛନ୍ତି । ତୁମର ହସ ତ କୃଷି ହୋଇଯାଇଛି ସମସ୍ତଙ୍କ ମୁହଁରେ ।

···ମୁଁ ଆଖିମିଟିକା ମାରି ଚାହିଁଦେଲି । ସ୍ୱର୍ଣ୍ଣାଭ ପକ୍ଷୀଗୁଡ଼ିକ ହୁସ୍‌କିନା ଉଭେଇଗଲେ । ରାତି ସେତେବେଳକୁ ସେଇ ବାରଟା । ଘର ଶୂନଶାନ; କିନ୍ତୁ ମୋ ଭିତରେ ବାହାରେ ମୋର ଅସୁମାରି ସୁକୁମାରୀ କନ୍ୟାଙ୍କର କଅଁଳିଆ ସ୍ପର୍ଶ ।

ସେତେବେଳକୁ ମା'ର ପରିସ୍ରା ଯିବାବେଳ ହୋଇଯାଇଥାଏ । ମୁଁ ଫିକ୍‌କିନା ହସିଦେଲି । ମୋତେ ସେ ଭିତରୁ ଶୁଭିଲି—ଝିଅଗୁଡ଼ାକ ସମସ୍ତେ ଖଟରେ ମୂତନ୍ତି । ଆଉ

ବଖରାରେ ମୋ ଝିଅ ଶୋଇଛି ଆରାମରେ । ଶେଯ ଓଦା ହେଇଗଲେ ଏଇନା ଚହିଁକ ଉଠିବ ।

···ମୂଲଚାନ୍ଦ ଦୋକାନରୁ ମୁଁ ଏ ମାସ ପହିଲାକୁ ଗୋଟାଏ ଫ୍ରକ୍ କିଣିବା କଥା କେମିତି ରାଷ୍ଟ୍ର ହୋଇଗଲା ? ସମସ୍ତଙ୍କୁ କଉତୁକ ଲାଗିଥିବ···ପାଗଳା ବୁଢ଼ା ଅବିବାହିତ ପ୍ରଫେସର କାହିଁକି ଫ୍ରକ୍‌ଟାଏ ସତେ କିଣିବ ? କାହାକୁ ଉପହାର ଦେବାକୁ ନେଉଥିବ ! ମିସେସ୍ ମାଲହୋତ୍ରାଙ୍କ ସାନଝିଅ ପାଇଁ ନେଉଥିବ ! ମିସେସ୍ ମାଲହୋତ୍ରାଙ୍କ ସହିତ ତ···ମୁଚୁକି ମାରୁଥିବା ବାକି କଥାଗୁଡ଼ାକ ରାସ୍ତାରେ ବାଣ୍ଟି ହୋଇଗଲେ ଏ ମୁହଁରୁ ସେ ମୁହଁକୁ ।

···"ଦେଖିଲୁ, ତୋ ପାଇଁ ମୁଁ କ'ଣ ଆଣିଚି । ସବୁବେଳେ ଧୋବ କପ୍ଡାଟାଏ ଗୁଡ଼େଇ-ହେଲେ କ'ଣ ଭଲଲାଗୁଛି ?"

ପାକୁଆପାଟି ମେଲାକରି, ସେ ସବଜାଣ ଦୃଷ୍ଟିରେ ଆଖି କୋରଡ଼ରୁ ଝିଲିମିଲି ଅନେଇଲା !···"ଅଭଲ ପୁଅଟାକୁ କେମିତି ଆଉ ବୁଝେଇବି ? ଫ୍ରକ୍‌ଟାଏ ପୁଣି ମତେ ପିନ୍ଧେଇବ ।···ତୋ' ଝିଅ ହେବାକୁ କ'ଣ ମୁଁ ନାହିଁ କରୁଚି ? ତୋର ଘରେ ତ ମୁଁ ଜନ୍ମହେବି । ତୁ ବସା ବାନ୍ଧଲେ ସିନା !"···ଏମିତି ସେ କେତେ ଥର ନ କହିଛି ଭଲା !

ମୁଁ ତା' କପ୍ଡା ଶାଢ଼ି କାଢ଼ିଦେଲି । ପର କଅଁଳା ନଥିବା ଲୁଡ଼ୁଥୁଡ଼ୁ ପକ୍ଷୀ ଶାବକଟିଏ ଶେଯ ଉପରେ ପଡ଼ି ମୋତେ ଚାହିଁଥାଏ । ତା' ଆଖିରୁ ସେମିତି ଧାର ଧାର ଲୁହ । ମୁହଁ-ସାରା ଓଦାକନା ଚପୁଡ଼ାଳପରି କୁଞ୍ଚ କୁଞ୍ଚ । —ବୁଢ଼ୀ କାନ୍ଦୁଣୀଟାଏ ଦେଖି···ଏ ଫ୍ରକ୍‌ଟା କେମିତି ହେବ···ହଁ···ଆଉ ହାତ ଗଳେଇ ଦେଲୁ···ମୋ ସୁନା ଝିଅଟା ପରି ! ବାଃ··· ପୃଥିବୀର ସବୁ ଝିଅ ସେଇ ଫ୍ରକ୍ ପିନ୍ଧି ସୁନ୍ଦର ଦିଶିଗଲେ । ସମସ୍ତେ ମୋ ଝିଅ ! ମିସେସ୍ ମାଲହୋତ୍ରା···ମିସେସ୍ ଦାସ, ମିସେସ୍ ମାଲହୋତ୍ରାଙ୍କ ସାନଝିଅ ମୋର ସାନଝିଅ ।··· ମୋର ସବା ସାନଝିଅ ପରି ତୁ !

···ଆଜି ସକାଳେ, ସର୍ବପ୍ରଥମେ ସେଇ ଫ୍ରକ୍‌ଟା ହୁଉ୍ହୁଉ୍ ହୋଇ ଜଳିଗଲା । ଚଡ଼ଚଡ଼ ହୋଇ ଚିତା ଜଳିଉଠିଲା । ଶୁଖିଲା ବାଲି ଉପରେ ପାଦ ପକେଇ ଚାଲିବା ଭାରି କଷ୍ଟ । ଖସ୍ ଖସ୍ ପାଦଶବ୍ଦ ଶୁଭୁଚି···ଇସ୍, ଶ୍ମଶାନରେ ଏତେ ବାଲି କାହିଁ ଆସେ ?

× × × କିଏ···ଆରେ ଅମର୍, ଦେବବ୍ରତ, ବଶ୍ଚି···ଆରେ ମିଷ୍ଟର ମାଲ୍‌ହୋତ୍ରା ···ଆପଣମାନେ ଅପେକ୍ଷା କରି ରହିଥିଲେ ମୁଁ କେତେବେଳେ ଆଖି ଖୋଲିବି ବୋଲି ? ଆଇ ସି ! ଠିକ୍ ଅଛି, ସବୁ ଠିକ୍ ଅଛି । କାହା ପାଖରେ ଦିଆସିଲି ଅଛି ଦେଲ ଟିକିଏ—ମୁଁ ଏ ଚୁରୁଟ୍‌ଟା ଲଗାଏ । ମୋ ଦିଆସିଲି ସମ୍ପୂର୍ଣ୍ଣ ଓଦା ।

# ବୁଧାଡ଼ାକୁ ଅନୁରୋଧ

"ଆପଣଙ୍କର ମଙ୍ଗଳ ହେଉ ! ଏ ପାଣି ମୁନ୍ଦାକ ମୋର ଏ ଯାତ୍ରା ପାଇଁ ଢେର୍ ! ଆପଣ ଭାରି ଭଲଲୋକ !···ନାଇଁ ନାଇଁ, ମୁଁ ସେମିତି ମୁଲ୍‌ଇଜା ରଖି କହୁନାହିଁ । ଆପଣ ସତରେ ଭଲଲୋକ; ଆଗକାଳିଆ ଲୋକଙ୍କ ଭଳି ! ଏବେ ତ କେହି କାହା କଥା ପଚାରିବାକୁ ତର ନାହିଁ । ସମସ୍ତେ ନିଜନିଜ ପାଇଁ ଧାଇଁଛନ୍ତି । ସେମାନଙ୍କୁ ସେମିତି ଧାଇଁବାର ଦେଖିଲେ ମୋତେ ଭାରି ଦୁଃଖ ଲାଗେ । ମୁଁ ବୁଝିପାରେନାହିଁ, କାହିଁକି ସେମାନେ ସେମିତି ଧାଆଁନ୍ତି !

"ମୋ ଗାଡ଼ି ତ ସହଜେ ବିଳମ୍ବ ! ଏ ଦକ୍ଷିଣ ଗାଡ଼ିଗୁଡ଼ାକ ସବୁବେଳେ ସେମିତି । ଆପଣଙ୍କ ଗାଡ଼ି ତ ମୋ ଗାଡ଼ି ପରେ ଆସି ଲାଗିବ । ଆପଣ ଏମିତି ଅଥୟ ନହୋଇ ଆସନ୍ତୁ । ଏଇ ସ୍ଥାନ ଉପରେ ବସନ୍ତୁ । ପାନ ଖାଇବେ ?—ଆଚ୍ଛା ! ଆପଣଙ୍କ ନନା ଏମିତି ବଟୁଆ ଧରୁଥିଲେ ? ତେବେ ତ ଆପଣ ଖାନ୍‌ଦାନ୍ ଘରର ପିଲା ! ନିଅନ୍ତୁ ଏଇ ପତରଟା । ନୂଆ ଚୂନ, ଦେଖି ଲଗେଇବେ; ନହେଲେ କଲା ଖାଇଯିବ !

"···ଏବେ କ'ଣ କି—ମଣିଷ ସବୁ ଗୁଡ଼ ଗୁଡ଼ ହୋଇଗଲେଣି; କାଠେଇ ଗଲେଣି । ନଈରେ ନଈ ମିଶିଲା ଭଳି ଆଉ ମିଶିପାରୁନାହାନ୍ତି । ଲୋକଙ୍କୁ ଏଣିକି ବେଶି ବେଶି ଅଭାବ ଗ୍ରାସିଗଲା । ଦ'ଓଳି ଦ'ମୁଠା ଖାଇ ବଞ୍ଚିବା ଦୁଷ୍କର ହୋଇଗଲା । ସେଥିପାଇଁ ସବୁ ଗଣ୍ଠିକଟା ଗୋଟିର ଭଳି ଅନାଗ୍ରହୀ ହୋଇଗଲେ । ଆମବେଳେ ସେମିତି ଗୁଡ଼ାଏ ପଇସାବନ୍ତ ଲୋକ ନଥିଲେ, ହେଲେ ଭଲ ଜିନିଷ ଉପଜାତ ହେଉଥିଲା । ବେଲ ଜାଣି ଇନ୍ଦ୍ର ପାଳକ କରୁଥିଲା । ଗାଁରେ ସମସ୍ତେ ଗୋଟେ-ମନ ହୋଇ ଚଳୁଥିଲେ । ଜାନଯାତ ହଉଥିଲା । ମୁଁ ଜାଣିବାରେ ସେକାଳ ଏକାଳ ଭିତରେ କେତେ ଗୁଡ଼ ଗୁଡ଼ ହୋଇଗଲାଣି ! ସେଥିପାଇଁ କହିଲି ପରା ଆପଣ ଭାରି ଭଲ ଲୋକ । ମୁଁ ଏବେ ସେମିତି ଅପାରଗ ହୋଇନାହିଁ । ନିଜେ ଯାଇ କଳରୁ ପାଣିଆଣି ପାରଥାନ୍ତି । ତଥାପି ଆପଣ ଏ ବୁଢ଼ାଟାକୁ ଦେଖି ପାର ପାଣି ମୁନ୍ଦେ ଆଣିଦେଲେ । ମୁଁ ଦେଖୁଛି ଏ ମୁସାଫିର୍‌ଖାନାରେ ସମସ୍ତେ ଟିକିଏ ବେଶି ଆପଣାର ଜଣାପଡ଼ନ୍ତି ! ଏ ଜାଗା ଗୁଡ଼ିଯିବାକୁ ସମସ୍ତେ ନିଜ ନିଜ ଗାଡ଼ି ପାଇଁ ଜଗିବସିଥାନ୍ତି । ସ୍ଥା ଆଗରୁ କେହି କାହାକୁ ଜାଣିନଥାନ୍ତି । ସ୍ଥା'ପରେ ପାରହୋଇ ଯାଆନ୍ତି କାହିଁ କୁଆଡ଼େ । ସେଥିପାଇଁ ଏଇଠି ପର ପିଲାଟିକୁ ଦେଖିଲେ କୋଳେଇବାକୁ ମନ ଡାକେ । ପରକୁ ଆପଣା କରିବାପାଇଁ ସମସ୍ତେ ନିଜନିଜ ଢେକପଣରୁ ନଇଁଆସନ୍ତି । ଭାରି ଭଲ ଜାଗା ଟଣ୍ଡେ ଏ ମୁସାଫିର୍‌ଖାନା ।

"କେଉଁଟା ବାଜିଲା ?···ବାରଟା ? ···ସେଥିପାଇଁ ସବୁ ନିର୍ଜୋଳା ହୋଇଗଲାଣି ! ···ନାଇଁ ମୋତେ ନିଦ ନାହିଁ । ମୋ ନିଦବେଳା ଗଡ଼ିଗଲେ ରାତିସାରା ଆଉ ନିଦ ହୁଏନାହିଁ । ···ବାହାରେ ଜହ୍ନ ଆଲୁଅକୁ ଯିବା ? ଚାଲୁନାହାନ୍ତି—ମୋର କିଛି ଅସୁବିଧା ନାହିଁ । ଏ ଜୀବନପାଇଁ କିଛି ଚିନ୍ତାନାହିଁ । ଏଠି ସମସ୍ତେ ମୋର ଚିହ୍ନା । ମୁଁ ସମସ୍ତଙ୍କୁ ତାଙ୍କ ପିଲାଦିନୁ ଜାଣେ ।···ମୁଁ ସେ ଟୋକା କୁଲି କହ୍ନେଇଆକୁ କହିଦେଉଚି ।···ଚାଲନ୍ତୁ···ମୋ ବାଡ଼ିଖଣ୍ଡ ଧରେ···ହୁଁ । ଓଃ···ହରି ହରି···

"ବାଃ, ସତେ ତ ! ରଣିଫୁଲ ପରି ଜହ୍ନଆଲୁଅ ପଡ଼ିଛି । ···ଏଇ ଯେଉଁ ଆରପଟକୁ ଯିବାପାଇଁ ଉଆଁବାଟ ହୋଇଛି, ସେଇଟା ଏକ ନୂଆ ଷ୍ଟେସନ ପାଖେ ଗଢ଼ାହେଲା । ହେଇ ବର୍ଷେ କୋଡ଼ିଏ କ ପଚିଶ ହେଲେ ହେବ ।···ଆଉ କ'ଣ !—ଏବକା କଥା ସିନା—ପୁରୁଣା ଷ୍ଟେସନ ହେଉଛି ଆରପଟେ । ସେଇଟା ମୋ ନନାଙ୍କ ଅମଳ କଥା । ଏ ରେଲପଟି ଯେତିକ ପୁରୁଣା, ସେ ଦି'ବଖରା ଘର ସେତିକ ପୁରୁଣା—କାହିଁ କୋଉ ଯୁଗର !

"ଏଇଠି ବସିବାକୁ କହୁଛନ୍ତି ? ହଉ, ମୋର ଆପତ୍ତି ନାହିଁ ! ବାଆସ୍ ବସନ୍ତୁ ଆପଣ ! କ'ଣ କହିଲେ···ମୋର ଅନୁଭବ !···ହେଁ ହେଁ···ମୁଁ ଗୋଟାଏ କ ଗ୍ରାମ ଲୋକ ! ଏ ଷ୍ଟେସନକୁ ପ୍ରତିଦିନ ହଜାର ଲୋକ ଆସନ୍ତି, ହଜାର ଲୋକ ଯାଆନ୍ତି । ଏମିତି ଏମିତି କେତେ ହଜାର ଷ୍ଟେସନ ରହିଛି ଏଇ ଆକାଶର ତାରା ଭଳି । ସବୁ କେମିତି ଗୁନ୍ଥି ହୋଇ ରହିଛନ୍ତି । ଏଇ କଳ୍ପାଦନ ତଳେ କ'ଣ ମନହେଲା, ମୁଁ ଏଇ ପଟି ହଳକୁ କୁଣ୍ଢେଇଧରି ବୁଝେଇ କାନ୍ଦିଲି । ଏଇ ହଳକ ଏମିତ ଲମ୍ବିଯାଇଛି ନା ଏଇଆଡ଼େ ହିମାଳୟ ଯାଏଁ ! ସେଇଆଡ଼େ ଶେଷ ସମୁଦ୍ର ଦାଢ଼ ପର୍ଯ୍ୟନ୍ତ ! ସବୁ ଷ୍ଟେସନକୁ ଏଇ ଯୋଡ଼ିଚ ନା ! ମୋତେ ଗୋଟାଏ ତତ୍ତ୍ୱ କ'ଣ ଦିଶିଗଲା—ମୁଁ ତାକୁ କୁଣ୍ଢେଇଲି । ଧାଇଁଆସିଲେ ସବୁ ! ମୋତେ ସେଇଠୁ ଭିଡ଼ିଆଣିଲେ । ଗୋଟାଏ ପୁଲିସ ବାବୁ କହିଲେ, କ'ଣ ହେଲା ମଉସା, ରେଲ ତଳେ କାହିଁକି ମରିବାକୁ ଯାଉଥିଲ ? ମୁଁ ସେଇଠୁ ଭାବିଲି—ସତେ ତ ! ସେଇଭଳି ପଟିକୁ କୁଣ୍ଢେଇ ଧରି ତ ଯେମାନେ ସବୁ ମରିଛନ୍ତି । ମୋ ଦିହକରେ ସେମିତି ପାଞ୍ଚ ଛ'ଟା ଦେଖିଛି ।—ଗୁଡ଼ । ମୁଁ କ'ଣ କହୁଚକି,ଏ ଷ୍ଟେସନରେ ମୋର ସାରା ଜୀବନ ଏପାଖ ସେପାଖ ହୋଇ ବିତିଗଲା । କହିଲେ, ତୁମକୁ ମୋ'ର କଥା ସିନା କହିବି—କିନ୍ତୁ ସ୍ତ୍ରୀ' କଥା କ'ଣ କହିବ ? ମୁଁ କ'ଣ ସ୍ତ୍ରୀକୁ ଏଯାଏଁ ବୁଝିଛିଲିଣି ?

"ହଉ ଶୁଣନ୍ତୁ···ଆଗେ ସେ ଆଡ଼କ ଅନାନ୍ତୁ । ସେ ଦୁଇ ବଖରା ହେଲା ରେଲଷ୍ଟେସନ ···ତାକୁ ଲାଗି ଡାହାଣ ଆଡ଼କ ଯେଉଁ ଦୁଇ ବଖରା ଦିଶୁଚି, ସେଇଟା ସାଇବମାନଙ୍କ ମୁଯାପଂଟ୍ଖାନା । ସେଇଠି ଆଗ ପଙ୍ଖାପଙ୍ଖା ଭିଡ଼ାହେଉଥିଲା । ତିନିହାଣ୍ଡିଆ ଜଳଯନ୍ତ୍ରରୁ ପାଣି ସେମାନେ ପଡ଼ୁଥିଲେ । ତା' ପଛକୁ ଷ୍ଟେସନ ବାହାରେ ସେ ବଟଗଛଟା ମୋଠଉଁ ଆହୁରି ପୁରୁଣା । ସେଇଠି ଗୋଟାଏ କରଞ୍ଜଗଛ ଥିଲା—ମରିଗଲାଣି । ତା'ର ଡାଳରେ ଦି'ପହର

ସାଗୁ ବସି ଜଳାକବାଟି ବାଟେ ସେ ଘର ଭିତରେ ସାଇବମାନଙ୍କୁ ଆମେ ଦେଖୁଥିଲୁ । ସେମାନେ ଅକାଳେ ସକାଳେ ଥରେ ଆସୁଥିଲେ । ସେମାନଙ୍କୁ ଦେଖିବାକୁ ଭିଡ଼ ହେଉଥିଲା । ଶ୍ୟାମା ବୋଲି ଗୋଟେ ଟୋକା ଥିଲା, ସେ ଥରେ ଗୋଟେ ସାଇବାଣୀ ଦେହରେ ବାଜି ହୋଇଗଲା । ସେ ନଇଁପଡ଼ି ତାଙ୍କୁ ଟିକଏ ଗେଲକଲା । ତା'ର ଚଲା ଚଲା ଆଖି, ହଳଦିଆ ଦାନ୍ତ, ରୁମୁରୁମିଆ ମୁହଁ ଦେଖିସାରି ଶ୍ୟାମା ଯୋଡ଼ ଗୋଡ଼ ପଳାଇ ଆସିଲା—ତାଙ୍କୁ ଅଇ ଟେକୁଥାଏ —ସେ ଓଟାରୁଥାଏ, ବାନ୍ତିକରିପକେଇଥାନ୍ତା । ତା ପିଠି ଆଉଁସିବାରୁ ସେ କହିଲା—ଓ୍ୱ, ସେଗୁଡ଼ାକ ଦେଖିବାକୁ ସଫା ସିନା; କିନ୍ତୁ କି ମଇଁଛିଆ, ଆଇଁଷିଆ, ଅସନା ଗନ୍ଧ ସେଗୁଡ଼ାଙ୍କର । କଥା ଗୋଟା ହେଇଗଲା । କେହି ଆଉ ସେମାନଙ୍କୁ ସେତେ ଶ୍ରଦ୍ଧା କଲେନାହିଁ···ଶ୍ୟାମା ଗାଁରେ ଗୃହବାସ ଦେଖୁଥିଲା । ବୁଢ଼ା ହେଇଯାଇଥିଲା, ମରିଯିବଣି ।

"···ମୁଁ ସର୍ବପ୍ରଥମେ କେବେ ଆସିଲି ?···ସେଇଟା ଗୋଟାଏ ହରେଲା ଘଟଣା । ତା' ଏପାଖେ ସେପାଖେ ଆଉ କିଛି ମନେନାହିଁ । ରେଲ ଭିତରେ ମିଟି ମିଟି ଆଲୁଅ, ବାହାରେ ହୁ-ହୁ ଜାକର ପବନ । ଅନ୍ଧାର ଅନ୍ଧାର । କ'ଣ ସବୁ ଠିକ୍ ମନେପଡ଼ୁନାହିଁ, ଗୋଟେ ରଡ଼ି ଶୁଭିଲା ବୋଉ ମୋତେ ପଛରୁ କୁଣ୍ଢେଇ ଭିଡ଼ିନେଲା । ପାଟିଗୋଳ ହେଲା । ବୋଉ ମୋତେ ଆଉଁସି କାନ୍ଦିବାକୁ ଲଗିଲା । ସେତେବେଳେ ମୁଁ କିଛି ଜାଣିପାରିନଥିଲି । ପରେ ବୁଝିଲି ଯେ, ବୋଉ କୋଳରୁ ଉଠି ମୁଁ ଦୁଆରମୁହଁ ଆଡ଼େ ଚାଲିଯାଇଥିଲି । ଚଳନ୍ତା ଟ୍ରେନ୍‌ର କବାଟ ମେଲା ଥିଲା । ରାତି ଶେଷଆଡ଼କୁ ସମସ୍ତେ ଢୁଲାଉଥିଲେ । ଆଉ ଦି'ପାଉଣ୍ଡ ଆଗେଇ ଯାଇଥିଲେ କଥା ସେଇଠି ସରିଯାଇଥାନ୍ତା । କ'ଣ ମନ୍ଦ ହେଇଥାନ୍ତା ? ଅଳ୍ପ ଅଳ୍ପ ପାହାନ୍ତିଆ ଅନ୍ଧାରରେ ଗାଡ଼ି ରହିଲା । ଆମେ ତରବରରେ ଓହ୍ଲାଉଥାଉ । ରେଲ କାହାରିପାଇଁ ରହିବନାହିଁ । ମୋ ପଛରେ ବୋଉ, ମୋ ଆଗରେ ଗୋଟାଏ ବଡ଼ ବୁଜୁଲା । ତା' ଆରପାଖେ ନନା । ଏମିତି ତଳମୁହାଁ ଓହ୍ଲେଇଲୁ । ଷ୍ଟେସନ ପିଣ୍ଡା ତେଣିକି । ରେଲ ତଳେ ଚକ । ଚକ ତଳେ ପଇ । ପଇ ତଳେ ଗେଟିପଥର । ତା' ତଳ ଭୂଇଁରେ ଆମେ ଠିଆ ହେଲୁ । ସେ ଅନ୍ଧାରରେ ରେଲ ଦିଶୁଥାଏ ଆକାଶକୁ ଛୁଇଁଲାପରି । ଷ୍ଟେସନ ପିଣ୍ଡା ଦିଶୁଥାଏ ନନାଙ୍କଠାରୁ ଆହୁରି ଉଚ୍ଚ । ରେଲ ଧାଙ୍କୁ ଧାଙ୍କୁ ହେଇ ଚାଲିଗଲା । ମୋତେ କାଖ କରି ପ୍ରଥମେ ସେପାଖ ଷ୍ଟେସନ ପିଣ୍ଡାପାଇଁ ନେଇ ଠିଆ କରେଇଦେଲେ ନନା । ବୋଉ କହୁଥାଏ ମୋତେ ସେତେବେଳକୁ ତିନିବର୍ଷ । —ବାହାରେ ଜାକର, ଅଳ୍ପ ଉଜ୍ଜ୍ୱଳ ଅଳ୍ପ ଅନ୍ଧାର । ପାଖରେ ବୋଉ, ନନା, ଆଉ ଦୁଇ ତିନିଟି ବୁଜୁଲା···ସେଇ ହେଲା ଆରମ୍ଭ ।

"ତା'ପରେ ମୋ ବୟସ ବଢ଼ୁଥାଏ । କରଞ୍ଜଗଛର ଡାଳ ବି ବଢ଼ୁଥାଏ । ଏଇଠୁ ତିନିକୋଶ ଦୂରରେ ଆମେ ରହୁଥାଉ । ଏଠି ଏମିତି ଗାଁଗଣ୍ଡା ଷ୍ଟେସନକୁ ଲାଗି କିଛି ନଥାଏ । ଆସ୍ତେ ଆସ୍ତେ ବଜାର ଦୋକାନ ହଉ ହଉ ଲୋକେ ଉଠିଆସନ୍ତି । ଗୋଷ୍ଠ ଗୋଷ୍ଠ ହୋଇ ଆମେ ସବୁ ପିଲାବେଳେ ଏ ରେଲ ପଟି ଧାର ହୋଇ ଏପାଖ ଅପନ୍ତରା ବଣରେ ପଶିଛୁ । ଏଠି ଏଡ଼େ ବଡ଼ ସହର ଯାହା ଦେଖୁଛ ତାକୁ ଉଖାରିଦେଲେ ତୁଚ୍ଛା ବଣ—

"କେଇଟା ବାଜିଲା ?···ବାରଟା ? ···ସେଥିପାଇଁ ସବୁ ନିରୋଳା ହୋଇଗଲଣି ! ··· ନାଇଁ ମୋତେ ନିଦ ନାହିଁ । ମୋ ନିଦବେଳା ଗଡ଼ିଗଲେ ରାତିସାରା ଆଉ ନିଦ ହୁଏନାହିଁ । ···ବାହାରେ ଜହ୍ନ ଆଲୁଅକୁ ଚିହିବା ? ଚାଲନ୍ତୁନାହାନ୍ତି—ମୋର କିଛି ଅସୁବିଧା ନାହିଁ । ଏ ଜାଗାପାଇଁ କିଛି ଚିନ୍ତାନାହିଁ । ଏଠି ସମସ୍ତେ ମୋର ଚିହ୍ନା । ମୁଁ ସମସ୍ତଙ୍କୁ ତାଙ୍କ ପିଲାଦିନୁ ଜାଣେ ।···ମୁଁ ସେ ଟୋକା କୁଲି କହ୍ନେଇଆକୁ କହିଦେଉଚି । ···ଚାଲନ୍ତୁ···ମୋ ବାଡ଼ିଖଣ୍ଡ ଧରେ··ହଁ। ଓଃ···ହରି ହରି···

"ବାଃ, ସତେ ତ ! ରଜନୀଫୁଲ ପରି ଜହ୍ନଆଲୁଅ ପଡ଼ିଚି । ···ଏଇ ଯେଉଁ ଆରପଟକୁ ଯିବାପାଇଁ ତଳିଆଁ ବାଟ ହୋଇଚି, ସେଇଟା ଏକ ନୂଆ ଷ୍ଟେସନ ପାଇଁ ଗଢ଼ାହେଲା । ହେଇ ବର୍ଷ କୋଡ଼ିଏ କ ପଚାଶ ହେଲେ ହେବ ।···ଆଉ କ'ଣ ! —ଏବକା କଥା ପରା— ପୁରୁଣା ଷ୍ଟେସନ ହେଉଚି ଆରପଟେ । ସେଇଟା ମୋ ନନାଙ୍କ ଅମଳ କଥା । ଏ ରେଲପଟି ଯେତକ ପୁରୁଣା, ସେ ଦ'ବଖରା ଘର ସେତକ ପୁରୁଣା—କାହିଁ କୋଉ ଯୁଗର !

"ଏଇଠି ବସିବାକୁ କହୁଛନ୍ତି ? ହଉ, ମୋର ଅପତ୍ତି ନାହିଁ ! ବାଆସ୍ ବସନ୍ତୁ ଆପଣ ! କ'ଣ କହିଲେ··ମୋର ଅନୁଭବ ! ···ହେଁ ହେଁ···ମୁଁ ଗୋଟାଏ କ ଗ୍ରାମ ଲୋକ ! ଏ ଷ୍ଟେସନକୁ ପ୍ରତିଦିନ ହଜାର ଲୋକ ଆସନ୍ତି, ହଜାର ଲୋକ ଯାଆନ୍ତି । ଏମିତି ଏମିତି କେତେ ହଜାର ଷ୍ଟେସନ ରହିଚି ଏଇ ଆକାଶର ତାରା ଭଳି । ସବୁ କେମିତି ଗୁନ୍ଥି ହୋଇ ରହିଛନ୍ତି । ଏଇ କିଛିଦିନ ତଳେ କ'ଣ ମନହେଲା, ମୁଁ ଏଇ ପଟି ହଳକୁ କୁଣ୍ଢେଇଧରି ବୁଝେ ଚାହିଁଲି । ଏଇ ହଳକ ଏମିତି ଲମ୍ବି ଯାଇଚି ନା ଏଇଆଡ଼େ ହିମାଳୟ ଯାଏଁ ! ସେଇଆଡ଼େ ଶେଷ ସମୁଦ୍ର ଦାଢ଼ ପର୍ଯ୍ୟନ୍ତ ! ସବୁ ଷ୍ଟେସନକୁ ଏଇ ଯୋଡ଼ିଚି ନା ! ମୋତେ ଗୋଟାଏ ତତ୍ତ୍ୱ କ'ଣ ଦିଶିଗଲା—ମୁଁ ତାକୁ କୁଣ୍ଢେଇଲି । ଧାଇଁଆସିଲେ ସବୁ ! ମୋତେ ସେଇଠୁ ଉଠାଇଆଣିଲେ । ଗୋଟାଏ ପୁଲିସ ବାବୁ କହିଲେ, କ'ଣ ହେଲା ମଉସା, ରେଲ ତଳେ କାହିଁକି ମରିବାକୁ ଯାଉଥିଲ ? ମୁଁ ସେଇଠୁ ଭାବିଲି—ସତେ ତ ! ସେଇଭଳି ପଟିକୁ କୁଣ୍ଢେଇ ଧରି ତ ଯେମାନେ ସବୁ ମରିଛନ୍ତି । ମୋ ଆଖିକରେ ସେମିତି ପାଞ୍ଚ ଛ'ଟା ଦେଖିଚି ।—ଗୁଡ଼ । ମୁ କ'ଣ କହୁଥିଲି,ଏ ଷ୍ଟେସନରେ ମୋର ସାରା ଜୀବନ ଏପାଖ ସେପାଖ ହୋଇ ବିତିଗଲା । କହିଲେ, ତୁମକୁ ମୋ'ର କଥା ସିନା କହିବି—କିନ୍ତୁ ସ୍ଥା' କଥା କ'ଣ କହିବି ? ମୁଁ କ'ଣ ସ୍ଥାକୁ ଏଯାଏଁ ବୁଝିଛିଲିଣି ?

"ହଉ ଶୁଣନ୍ତୁ···ଆଗେ ସେ ଆଡ଼କୁ ଅନାନ୍ତୁ । ସେ ଦୁଇ ଦଖରା କୋଠା ହେଲା ରେଲଷ୍ଟେସନ ···ତାକୁ ଲାଗି ଡାହାଣ ଆଡ଼କୁ ଯେଉଁ ଦୁଇ ବଖରା ଦିଶୁଚି, ସେଇଟା ଯାତ୍ରୀମାନଙ୍କ ମୁସାଫରଖାନା । ସେଇଠି ଆଗ ପଙ୍ଖାପଙ୍ଖା ଭିଡ଼ାହେଉଥିଲା । ଚିନାହାଣ୍ଡିଆ ଜଳଯନ୍ତ୍ରରୁ ପାଣି ଲୋକମାନେ ପିଉଥିଲେ । ତା' ପଛକୁ ଷ୍ଟେସନ ବାହାରେ ସେ ବଟଗଛଟା ମୋଠଉଁ ଆହୁରି ପୁରୁଣା । ସେଇଠି ଗୋଟାଏ କରଞ୍ଜଗଛ ଥିଲା—ମରିଗଲାଣି । ତା'ର ଡାଳରେ ଦ'ପହର

ସାଗୁ ବସି ଜଳାକବାଟି ବାଟେ ସେ ଘର ଭିତରେ ସାହେବମାନଙ୍କୁ ଆମେ ଦେଖୁଥିଲୁ । ସେମାନେ ଅକାଳେ ସକାଳେ ଥରେ ଆସୁଥିଲେ । ସେମାନଙ୍କୁ ଦେଖିବାକୁ ଭିଡ଼ ହେଉଥିଲା । ଖିମା ବୋଲି ଗୋଟେ ଟୋକା ଥିଲା, ସେ ଥରେ ଗୋଟେ ସାହେବାଣୀ ଦେହରେ ଘଷି ହେଇ-ଗଲା । ସେ ନଈଁପଡ଼ି ତାକୁ ଟିକଏ ଗେଲକଲା । ତା'ର ଚକ୍ ଚକ୍ ଆଖି, ହଳଦିଆ ଦାନ୍ତ, ରୁମୁରୁମିଆ ମୁହଁ ଦେଖିସାରି ଖିମା ଯୋଡ଼ ଗୁଡ଼ ପଳାଇ ଆସିଲା—ତାକୁ ଅଇ ଟେକୁଥାଏ —ସେ ଓଟାରୁଥାଏ, ବାନ୍ତିକରିପକେଇଥାନ୍ତା । ତା ପିଠି ଆଉଁସିବାରୁ ସେ କହିଲା—ଓଃ, ସେଗୁଡ଼ାକ ଦେଖିବାକୁ ସଫା ସିନା; କିନ୍ତୁ କି ମଇଁଷିଆ, ଆଇଁଷିଆ, ଅସନା ଗନ୍ଧ ସେଗୁଡ଼ାଙ୍କର । କଥା ଗପ୍ପ ହେଇଗଲା । କେହି ଆଉ ସେମାନଙ୍କୁ ସେତେ ଶ୍ରଦ୍ଧା କଲେନାହିଁ···ଖିମା ଗାଁରେ ଗୃହବାସ ଦେଖୁଥିଲା । ବୁଢ଼ା ହେଇଯାଇଥିଲା, ମରିଯିବନି ।

"···ମୁଁ ସର୍ବପ୍ରଥମେ କେବେ ଆସିଲି ?···ସେଇଟା ଗୋଟାଏ ନିଆରା ଘଟଣା । ତା' ଏପାଖେ ସେପାଖେ ଆଉ କିଛି ମନେନାହିଁ । ରେଳ ଭିତରେ ମିଟି ମିଟି ଆଲୁଅ, ବାହାରେ ହୁ-ହୁ କାକର ପବନ । ଅନ୍ଧାର ଅନ୍ଧାର । କ'ଣ ସବୁ ଠିକ୍ ମନେପଡ଼ୁନାହିଁ, ଗୋଟେ ରଡ଼ି ଗୁଡ଼ି ବୋଉ ମୋତେ ପଛରୁ କୁଣ୍ଢେଇ ଭିଡ଼ିନେଲା । ପାଟିତୁଣ୍ଡ ହେଲା । ବୋଉ ମୋତେ ଆଉଁସି କାନ୍ଦିବାକୁ ଲଗିଲା । ସେତେବେଳେ ମୁଁ କିଛି ଜାଣିପାରିନଥିଲି । ପରେ ବୁଝିଲି ଯେ, ବୋଉ କୋଳରୁ ଉଠି ମୁଁ ଦୁଆରମୁହଁ ଆଡ଼େ ଚାଲିଯାଇଥିଲି । ଚଳନ୍ତା ଟ୍ରେନ୍‌ର କବାଟ ମେଲା ଥିଲା । ରାତି ଶେଷଆଡ଼କୁ ସମସ୍ତେ ଢୁଳାଉଥିଲେ । ଆଉ ଦି'ପାହୁଣ୍ଡ ଆଗେଇ ଯାଇଥିଲେ କଥା ସେଇଠି ସରିଯାଇଥାନ୍ତା । କ'ଣ ମନ୍ଦ ହେଇଥାନ୍ତା ? ଅଳ୍ପ ଅଳ୍ପ ପାହାନ୍ତିଆ ଅନ୍ଧାରରେ ଗାଡ଼ି ରହିଲା । ଆମେ ତରବରରେ ଓହ୍ଲାଉଥାଉ । ରେଳ କାହାରିପାଇଁ ରହିବନାହିଁ । ମୋ ପଛରେ ବୋଉ, ମୋ ଆଗରେ ଗୋଟାଏ ବଡ଼ ବୁଜୁଲା । ତା' ଆରପାଖେ ନନା । ଏମିତି ତଳମୁହାଁ ଓହ୍ଲେଇଲୁ । ଷ୍ଟେସନ ପିଣ୍ଡା ଡେଙ୍ଗିକି । ରେଳ ତଳେ ଚକ । ଚକ ତଳେ ପଟି । ପଟି ତଳେ ଗେଟିପଥର ।·ତା' ତଳ ଭୂଇଁରେ ଆମେ ଠିଆ ହେଲୁ । ସେ ଅନ୍ଧାରରେ ରେଳ ଦିଶୁଥାଏ ଆକାଶକୁ ଛୁଇଁଲାପରି । ଷ୍ଟେସନ ପିଣ୍ଡା ଦିଶୁଥାଏ ନନାଙ୍କଠଉଁ ଆହୁରି ଉଚ୍ଚ । ରେଳ ଧାକୁ ଧାକୁ ହେଇ ଚାଲିଗଲା । ମୋତେ କାଖ କରି ପ୍ରଥମେ ସେପାଖ ଷ୍ଟେସନ ପିଣ୍ଡାଯାଏଁ ନେଇ ଠିଆ କରେଇଦେଲେ ନନା । ବୋଉ କହୁଥାଏ ମୋତେ ସେତେବେଳକୁ ତିନିବର୍ଷ ।—ବାହାରେ କାକର, ଅଳ୍ପ ଉଜ୍ଜ୍ୱଳ ଅଳ୍ପ ଅନ୍ଧାର । ପାଖରେ ବୋଉ, ନନା, ଆଉ ଦୁଇ ତିନିଟି ବୁଜୁଲା···ସେଇ ହେଲା ଆରମ୍ଭ ।

"ତା'ପରେ ମୋ ବୟସ ବଢ଼ୁଥାଏ । କରଞ୍ଜଗଛର ଡାଳ ବି ବଢ଼ୁଥାଏ । ଏଇଠୁ ତିନିକୋଶ ଦୂରରେ ଆମେ ରହୁଥାଉ । ଏଠି ଏମିତି ଗାଗଣ୍ଡା ଷ୍ଟେସନକୁ ଲାଗି କିଛି ନଥାଏ । ଆସ୍ତେ ଆସ୍ତେ ବଜାର ଦୋକାନ ହଉ ହଉ ଲୋକେ ଉଠିଆସନ୍ତି । ଗୋଛି ଗୋଛି ହୋଇ ଆମେ ସବୁ ପିଲ୍‌ବେଳେ ଏ ରେଳ ପଟି ପାର ହୋଇ ଏପାଖ ଅପନ୍ତରା ବଣରେ ପଶିଛୁ । ଏଠି ଏଡ଼େ ବଡ଼ ସହର ଯାହା ଦେଖୁଛ ତାକୁ ଉଖାରିଦେଲେ ତୁଚ୍ଛା ବଣ—

କଣ୍ଟେଇକୋଳି, ଗୁଞ୍ଜ ଲଇ ମଝିରେ ମଝିରେ ଗୁଳୁଞ୍ଚା ଗଛ ଭର୍ତ୍ତି । ଷ୍ଟେସନ ପାଖେ ସଞ୍ଜ ହେଲେ ଡକାଇତ ବୁଲୁଥିଲେ । ପୁରୁଣା ମନ୍ଦର ରାସ୍ତାକୁ ବାହାରିଗଲେ ସମସ୍ତଙ୍କୁ ଲଙ୍ଗଳା କରି ଲୁଟି ନେଉଥିଲେ । ଆମ ଗାଁର ଗେଣ୍ଡୁଆ ବରାଡ଼ ସେ ଦଳରେ ମିଶିଥିଲା ବୋଲି ଚୁପ୍‌ଚାପ୍ କଥା ଚାଲିଥିଲା ! ଗେଣ୍ଡୁଆ ହାଣ୍ଡି ଭଲ ଏଡ଼େ ମଣିଷ । ସେ ପ୍ରକୃତରେ ଏଇଠି କୁଲିକାମ କରୁଥିଲା । ହାଲିଆ ହେଇଗଲେ ମଦ ଟାଙ୍ଗି ରାତିରେ ସେଇ ଷ୍ଟେସନରେ ଶୋଇଯାଉଥିଲା । ତା କଟାପ ନାଟ, ରଙ୍ଗ ଟହଟହ ଆଖି ଦେଖି ତାକୁ ଡକାଇତ ବୋଲି ଲୋକେ ଚୁଟ୍ଟାରେ ଖବ କହୁଥିଲେ । ଗେଣ୍ଡୁଆକୁ ମୁଁ ଭାଇନା ମାନ୍ୟ କରୁଥିଲି । ଷ୍ଟେସନକୁ ଆସିଲେ ଗେଣ୍ଡୁଆ ଭାଇନା ପାଖେ ନିଧଡ଼କ ଲାଗୁଥିଲା । ମୋ ପିଠିରେ ଗେଲରେ ଗୋଟାଏ ପୋଲି ଚାପୁଡ଼ା ବସେଇଦେଲେ ମୋ ପଞ୍ଜରା ଦୁଲୁକିଯାଉଥିଲା । ଗେଣ୍ଡୁଆ ଭାଇନା ଅକାଳରେ ଚାଲିଗଲା । କିଏ କହିଲା ତାକୁ ମାରିଦେଲେ । କିଏ କହିଲା ନିଶା ଖାଇ ତା କଲିଜା ପାଣି ହେଇଗଲା—ଗୋଟାଏ ଦିନ ଦିଜଣ ମଣିଷ ତା' କୋକେଇ କାନ୍ଧେଇ ଏଇଠୁ ନେଇଗଲେ । ତା' ଆର ଦିନଠୁ ଷ୍ଟେସନରେ ଠିଆହେଲେ ଛନଛନ ଲାଗେ ।

"…ମୋ ଘରକଥା ପଚାରୁଛନ୍ତି ? —ମୋର ପିଠିରେ ଗୋଟାଏ ଭଉଣୀ । ଆହା ବିଚାରୀ ଭାରି ଦୁଃଖ ପାଇ ପାଇ ମରିଗଲା । ସେ ମୋଠୁ ତିନିବର୍ଷ ସାନ । 'ସୁଲି'କୁ ଯୋଉ ଦିନ—ସୁଲି ପରା ମୋ ଭଉଣୀ—ତା ନାଁ ସୁଲକ୍ଷଣା—ଆମେ ଡାକୁଥିଲୁ ସୁଲି—ଯୋଉ ଦିନ ଶାଶୁଘରକୁ ଛାଡ଼ିଲୁ, ଏଇ ଷ୍ଟେସନରେ ଆମ ଗାଁ ତା' ଶାଶୁଘର ଗାଁ ଲୋକ ସବୁ ଭର୍ତ୍ତିହେଇ ରହିଛନ୍ତି । ଷ୍ଟେସନମାଷ୍ଟରଟା ତେଲେଙ୍ଗା ସିନା ଭାରି ଭଲ ମଣିଷ । ଆମ ସମସ୍ତିଙ୍କୁ ନିଜର ବୋଲି ଜ୍ଞାନ କରୁଥିଲା । ସେ ସୁଲିକୁ ସେଦିନ ଖଣ୍ଡେ ମାଣିଆବନ୍ଧ ଘୋଡ଼େଇ ଦେଇଥିଲା । ସେଇଠି ସମସ୍ତଙ୍କ ଆଗରେ ଆଖି ମଳି କାନ୍ଦୁଥାଏ । ରେଳୁଆ ଟିକଟବାବୁମାନଙ୍କୁ ତା' ବୋଲିରେ କ'ଣ ସବୁ ବୁଝେଇଲା । ସେମାନେ ଖୁବ୍ ଭରସା ଦେଇ ନିଜେ ସବୁ ଜିନିଷର ତଦାରଖ କରି ଡବାରେ ଚଢ଼େଇଲେ । ଗୋଟିଏ ଗ୍ରେଟିଆ ଡବା ଖାଲି କରିଦେଲେ । ସମସ୍ତେ ଷ୍ଟେସନମାଷ୍ଟରଙ୍କୁ ଧନ୍ୟ ଧନ୍ୟ କରୁଥାନ୍ତି । କିଏ ଜଣେ ଗୁମର ବୁଝି ପ୍ରଚାର କଲା ଯେ, ତା' ଗାରେ ତା'ର ବଢ଼ିଲା ଝିଅ କ'ଣ ବାଧିକା ପଡ଼ି ମରି-ଯାଇଥିଲା । ତା' ପାଇଁ ବରଘର ଖୋଜା ସରିଥିଲା—ହେଲାନାହିଁ । ବିଧାତା ଆନ କରିଦେଲା । …ଛାଡ଼ିଲୁ—ହଁ, ସୁଲି ଗଲା ଶାଶୁଘର—ଜମିବାଡ଼ି, ଘର ବର ସବୁ ଭଲ । କିଛି ଖୁଣିଦେବାକୁ ନାହିଁ । ଦି'ବର୍ଷ ଭିତରେ ଯୋଡ଼ାଏ ପିଲା ହୋଇଗଲେ । ସେଇ ହେଲା ତା'ର କାଳ । ଦେହ ଶୋଷାପଡ଼ିଗଲା, ହାତଗୋଡ଼ ଫୁଲିଗଲା । କେତେ କ'ଣ ଓଷୁଧ ବିଷ ହେଲା । ତା' ଶାଶୁଘର ତା' ପାଇଁ ବହୁତ ଖର୍ଚ୍ଚ କଲା । ତା' ସ୍ୱାମୀ ତାକୁ ଟେକପାଲି କଲା ଦୁଇବର୍ଷକାଳ । ତା'ର ଉପରେ ତା'ର ସାନ ପିଲାଟା ମରିଗଲା ଅଣହେଫାଜତରେ । ତାରି ଭିତରେ ସୁଲି ଅଡ଼ିବସିଲା ମୋ ଘରଟରେ ଦେଖିବାକୁ । ତାଙ୍କର ଘରେ ପାଲଟ କନ୍ୟା ଦେଇ ତା' ନଣନ୍ଦକୁ ମୋ ପାଇଁ ଛନ୍ଦିଲା । ସୁଲିର ସେତେବେଳେ ଯାହା ଅବସ୍ଥା !

କଡ଼ବାଲାଗି ହେଇ ପଡ଼ିଥାଏ । କେହି ତା ମନ ଭାଙ୍ଗି ପାରିଲେ ନାହିଁ । ବିଭାପର ହେଲା । ନନା ଆମ ଦୁହିଁଙ୍କୁ ନେଇ ସ୍କୁଲ ଖଟପାଖେ ଠିଆକଲେ । ସ୍କୁଲ ହାତ ଧରି ପିଲାଙ୍କ ପରି କାନ୍ଦ ପକେଇଲା । ଏକା ଲୟରେ ଆମକୁ ଚାହିଁରହିଥାଏ । ଅଖିରୁ ଡବଡବ ପାଣି ଗଳିପଡ଼ି ଯାଉଥାଏ । ତା' ଭିତର ହାନ୍ଦୋଳ ହଉଥାଏ ଖୁସିରେ; ହେଲେ କଥା ପଦେ କହିବାକୁ ସକ୍ଷମ ନଥାଏ । ଓଃ···ହରି, ଯେପରି ଦୁଃଖ ଶତ୍ରୁକୁ ମୁଦ୍ଧା ନ ହେଉ···

···ଆମେ ଏଇ ଷ୍ଟେସନରେ ଆସି ଓହ୍ଲେଇଲୁ । ଆଉ ଗୋଟାଏ ଷ୍ଟେସନମାଷ୍ଟର ସେତେବେଳକୁ ଆସିଗଲାଣି । ସେଇଟା ହିଡ଼ମ୍ବାଟାଏ । ପୋ'ଛନା ପାଟିଟାଏ କରେ—ସେ ଆମକୁ ଘର ଛାଡ଼ିବାକଲା । କହିଲା, ଖାଲି ଟିକସ ପକେଇବ । ତାକୁ ଲୁହାବୋଲି କରି କୌଣସିମତେ ଗଲୁ ବାହାରି ଯେ, ଆଉ ମୁଁ ଏଣେ ଆସିଲିନାହିଁ !···

···ଆଉ ପଚାରନ୍ତୁ ନାହିଁ । ଏଣିକି ଏଣିକି ଖାଲି କଷ୍ଟର ଦିନ । ବୋଉ ଚାଲିଗଲା । ନନା ବାସ୍ତାପରି ବୁଲିଲେ । ସେଇ ଷ୍ଟେସନ ପିଣ୍ଡାରେ କରଞ୍ଜଗଛ ମୂଳେ ବସି ଏକୁଟିଆ କାନ୍ଦିଲେ ! ···ଯେଉଁଠୁ ବାଥିକା ପଡ଼ିଲେ ଯେ, ଉଠିଗଲେ ଏକାଥରକେ । ଘାର ଭିତରେ ତାଙ୍କ ଭଉଣୀ—ମୋ ପିଉସୀ—ଆସି ପହଞ୍ଚିଥିଲା । ନନା ସେତେବେଳକୁ ଥାଆନ୍ତି—ତା' ଦେହ ମଧ୍ୟ ସୁଖନଥାଏ । ସେ ଯେଉଁଦିନ ଜିଦ୍ କରି ଯିବ ବୋଲି ବସିଲା, ଜରରେ ଖାଲି ଫାଁଫାଁ ହେଉଥାଏ । ତାକୁ ଶଗଡ଼ରେ ଷ୍ଟେସନକୁ ଆଣିଲୁ । ଗୋଟାଏ ଖାଲି ତଳାରେ ସେ ଗୋଡ଼ ଲମ୍ବେଇ ବାଡ଼କୁ ଆଉଜି ବସିଲା । ମୁଁ ବାହାରେ ଠିଆହୋଇଥାଏ । ମୋତେ ପାଣି ମାଗିଲା । ଗୋଟେ ଗିନାରେ ପାଣି ଦେଲାବେଳକୁ ମୋ ହାତ ଯୋଡ଼ାକ ଧରି ପାଣିଯାକ ଏକା ନିଃଶ୍ୱାସରେ ପିଇଦେଲା । ଦୁଇଧାର ଲୁହ ଗଡ଼ିଗଲା । ମୋ ମୁହଁକୁ ଚାହିଁରହିଥାଏ । କହିଲା, "ତୋ ହାତରୁ ଏଇ ପାଣି ମୁନ୍ଦାକ ପିଇଯାଉଚରେ ଧନ, ଆଉ ପାଇବ ନାହିଁ । ପରବ୍ରାର କଣ ଶହେ ବର୍ଷ ଭୋଗ କର । ଯାଉଚି ମୁଁ !" ରେଳ ଛାଡ଼ିଦେଲା । ଆଉ ପିଉସୀକୁ ମୁଁ ଦେଖିନାହିଁ ।

ତା' ଉତ୍ତାରୁ ନନା ଚାଲିଗଲେ । ଘର ଉଜୁଡ଼ିଗଲା । ଭାଇ ଉଗାରି ହୋଇଗଲେ । ଯୋଡ଼ାଏ ପିଲାଙ୍କୁ ନେଇ ମୁଁ ଏଇ ରେଲପଥ ତେଣେ ଅପନ୍ତରେ ପଡ଼ିଲି । ଏଠି ପର୍ଣ୍ଣାଟିଏ ହଉଥାଏ । ସମସ୍ତେ କଥା ହେଉଥାନ୍ତି ଯେ, ଏଠି ସହର ହବ ! ଜାଆଣ୍ଡି ହୋଇ ବାହାରି ଆସିଲି । ପାନ ଦୋକାନଟିଏ ଦେବାପାଇଁ ଯେଉଁ କଷ୍ଟ, ଆଉ କହି ନୁହେଁ ।···କିଛି କୋଉଠି ନଥାଏ । ସେଇ ଠାକୁରେ ବଡ଼ଲୋକ ! କର୍ମ ଲଗାର ତେର ମଡ଼େଇଦେଲେ ! ···ଏଇ ଅଞ୍ଚଳରେ ଆସି ଚଉଦ ବର୍ଷ ହୋଇଗଲା ! ପିଲାଏ ପାଠ ପଢ଼ିଲେ । ଗୋଟାଏ ଏଇ ରେଲବାଇରେ କାମ କଲା । ଆରଟା ହାତରେ କିଛି ହେଲାନାହିଁ, ସେ ଦୋକାନରେ ବସିଲା । ଘରେ ଗୋଟିଏ ନାତନାତୁଣୀ—ଖାଇବା ଚାଲିଯାଉଚି, ହେଲେ ଆଉ କିଛି ସୁଖ ଲାଗୁନାହିଁ । ଅଧର୍ମ ବଢ଼ିବାରେ ଲଗିଛି । ଦିନୁଦିନ ଖେଟସିଛ, ବାଡ଼ଆପିଟା, ହଣାହଣି ଦେଖି ମୁଁ ଶଙ୍କିଗଲଣି । ଆଗଭଳି ଆଉ ଜଗାଜଗି ନାହିଁ—ରେଲର ଇଜ୍ଜତ ଗଲାଣି ।

ଗ୍ରାଡ୍‌ଲ୍‌ କ ଗ୍ରାର ଲୋକଠାରୁ ଅପଣ ଏତେ କଥା ଏତେ ସମସ୍ୟାର ଶୁଣିଲେ । ଆପଣ ଅଫିସର ବାବୁମାନେ ଜଣା ପଡ଼ୁଛନ୍ତି । କ'ଣ କହିଲେ ? ···ଆପଣ ଗଳ୍ପ ଲେଖନ୍ତି ? ସତେ ? ···କେଡ଼େ ପଣ୍ଡିତ ଲୋକ ଆପଣ !···ମୋର କଥା ଗଳ୍ପକରି ଲେଖିବେ ? କେଡ଼େ ଭାଗ୍ୟ ମୋର ! ହେଲେ ମହାଶୟ, ଏସବୁ କ'ଣ ଏମିତି କଞ୍ଚା, ଅଚଞ୍ଚା, ଅକଟା ଗଳ୍ପ ହବ ! ତାକୁ ଆପଣ ଟିକିଏ ମାଠିବେ ନା' ! କେତେ ମୋଡ଼ିବେ, ଯୋଡ଼ିବେ, ବାଗେଇବେ ! ଆପଣ ଜାଣି ଆଉଥରେ ମୋତେ ଜନ୍ମଦେବେ ! ତେବେ···ତେବେ···ମୋର ଅନୁରୋଧ ରଖିପାରିବେ ? ···ମୋ ନାଁ ଠ ମୁଁ କହୁନାହିଁ । ମୋ ବୋଉ ମୋତେ ଅପ୍ରଚଳିଆଣି ନାଁଟାଏ ଦେଇଥିଲା । ସେ ନାଁଟା·ମୋର ଭାରି ପ୍ରିୟ—'ପଠାଣି' ବୋଲି ଆଜିକାଲି ଆଉ ନାଁ ନାହିଁ । —ମୋ ବୋଉ ଡାକିଲାପରେ ବ ଆଉ କେହି ଡାକୁନାହାନ୍ତି !···ଆପଣ ତାକୁ ବଦଳେଇ ଦେବେ ! ଈଶ୍ୱରଙ୍କ ନାଁଟିଏ ଦେବେ !···ଆଉ ପାରିବେ ଯଦି, ମୋତେ ଏଇ ରେଳବାଇରେ ଗୃକିରି ଖଣ୍ଡିଏ କରେଇଦେବେ । ମୁଁ ଯେମିତି ସବୁବେଳେ ରେଳରେ ବୁଲୁଥିବି, ଦେଶ ଦେଶ । ମୋ ପିଲାଏ ଏଠି ରହନ୍ତୁ । କିଛି ଯାଏ ଆସେ ନାହିଁ । ମୁଁ ବୁଢ଼ାବେଳକୁ ମୋ ସ୍ତ୍ରୀକୁ ନେଇ ମରକାଖି ପାପ୍ ଧରି ତୀର୍ଥ କରି ଯିବି । ସେ ମରିଗଲା । ମରୁ । ମାତ୍ର ତା ପୂର୍ବରୁ ତାକୁ ଥରେ ଗୃରିଧାମ ବୁଲେଇ ଆଣିବାର ବ୍ୟବସ୍ଥା କରିଦେବେ ! ···ଆଉ, ଆଉ କଥାଏ କହିବି । 'ସୁଲ'ଟିକୁ ଏମିତି ଅଳ୍ପବୟସରେ ମାରିବେ ନାହିଁ ! ସେ କ'ଣ ଆପଣଙ୍କ ସୃଷ୍ଟିରେ ବଞ୍ଚିରହିଲେ ସେମିତି ଗୁଡ଼ାଏ ଅସୁବିଧା କରିବ ? ତା'ର ସେ କୋଡ଼ପିଲା ଯୋଡ଼ିକୁ ସେମିତି ମାରିବେନାହିଁ ! ତା ପିଲା ଯୋଡ଼ିକର ବଢ଼ିବା ଦେଖିଲେ ଆପଣଙ୍କର ଜୟ ହେବ ! ଗୋଟାଏ ସେଥିରୁ ପାଠ ପଢ଼ି କଲେକ୍ଟର ହଉ ! କାହିଁରେ କ'ଣ ଧନୀ ହେଇ କୋଠା କରୁ ! ଗାଡ଼ି ମଟରରେ ଚଢ଼ୁ ! ଏଇ ଷ୍ଟେସନରେ ତାକୁ ଗ୍ରହିବାକୁ ଶହେଲୋକ ଫୁଲମାଳ ଧରି ଠିଆହୁଅନ୍ତୁ । ମୁଁ ଯେମିତି ରେଳବାଇରେ କାମ କରୁଥାଏ । ସେ ମୋତେ ଦେଖି ମାମୁ ବୋଲି ଡାକୁ ! ଥରେ ପାଦ ଛୁଇଁ ନମସ୍କାର ହେଉ ! ସେଥିରେ ତାକୁ ସମସ୍ତେ ଧନ୍ୟ ଧନ୍ୟ କହନ୍ତୁ ! ··· ଆର ପିଲାଟାକୁ ମଧ୍ୟ ସେମିତି କ'ଣ ବଡ଼ ଲୋକଟାଏ କରିଦିଅନ୍ତୁ ! ସୁଲକୁ ମାରନ୍ତୁନାହିଁ । ···ଆଉ ପଦେ,···ଏଇ ଯେଉଁ ଆଜି ମୋତେ ଦେଖିଲେ ରେଳରେ ଯିବାକୁ ବସିଛୁ···ଦକ୍ଷିଣ ରେଳ ବିଳମ୍ବ ହେଉଚି···ଏଥିରେ ମୋତେ ଏକାଥରେ ହଜେଇ ଦିଅନ୍ତୁ । ଯିବି ତ···ଯିବି···, ଆଉ ଫେରିବନାହିଁ !—ଦକ୍ଷିଣରୁ କୋଉଠୁ ଆସିଥିଲି ମନେନାହିଁ । ସେଇ ଦକ୍ଷିଣକୁ ଗ୍ରଲିଯିବି । ଆପଣଙ୍କ ଭଳି ସେ ଏଇ ମୂଳ ଗଳ୍ପଟିକୁ ଲେଖିଦେଲା । ସେଇଟା କିଛି ବାଗ ହେଲାନାହିଁ । ଲଭି ଆସିଲାଣି ! ତାକୁ ଅପଣ ସୁଧାରି ଆଉଥରେ ଲେଖି ପାରିବେନାହିଁ ? ନିଶ୍ଚୟ ପାରିବେ । ଆପଣ ଭରି ଭଲଲୋକ, ମୁଁ ଜାଣେ ! ଆପଣଙ୍କ ପାଣିମୁନ୍ଦାକରେ ମୋର ଏ ଯାତ୍ରା ସରିଯିବ ।

---

# ଅନ୍ୟ ଏକ ସକାଳ

ସେ ଅଞ୍ଚଳଟା ଯେତେବେଳେ ଦେଖ ଅନ୍ଧାର ! କାହାର ଅପନ୍ଥା ବୋମି ଖାଲୁଆ ଅଞ୍ଚଳ । ସେଥିରେ ପୁଣି ବାଁ ପଟେ ଏମିତ ପଥୁରିଆ ଗହ୍ୱର ଖଣା ଯେ, ଗଳି ପଡ଼ିଲେ ଛତ୍ର ହୋଇଯିବ ମଣିଷ । ଯେ କେହି ହେଲେ ଚଡ଼ିଯିବା କଥା । ସେ ତ ସହଜେ ର୍ଗୱେଲ ସାହେବ, ଏକ୍‌ଜିକ୍ୟୁଟିଭ ଇଞ୍ଜିନିଅର ।

ରବିବାର ବଣଭୋଜିରୁ ସେ ଫେରିଥାନ୍ତି ମୁହଁ ସଞ୍ଜବେଳେ । ଦେଖିଲେ ଦୁଆରେ ତାଲି ପଡ଼ିଛି । ପିଣ୍ଡାରେ ପହଜ କାଟୁଛି ଘର ମାଲିକ ।

"କିଓ ମହାଜନେ, ଅବେଳରେ କୁଆଡ଼େ ?"

"ନାହିଁ ସାରେ, ଆପଣ ତ ଜାଣନ୍ତେ ଏମିତକ ଡକେଇ ଥାଆନ୍ତେ । ଆପଣଙ୍କୁ ମନ ଲାଖି କ'ଣ ଏ ଘର ? ମୁଁ ପର୍ବ ମୂଳରୁ ଜାଣେ, ଆପଣ ଏଠି ମାସେ ବି ରହିପାରିବେ ନାହିଁ !"

ତାଲି ଫିଟୋଉ ଫିଟୋଉ ଧନେଶ୍ୱର ର୍ଗଉଲ ଓରଫ୍ ର୍ଗୱେଲ ସାହେବ ପଛକୁ ବୁଲିପଡ଼ି ପଚାରିଲେ, "ମାନେ ?"—ଗାଡ଼ିରୁ କଲରବ କରି ଓହ୍ଲେଇ ଆସୁଥିବା ନିଜର ପରିବାରକୁ ଶୁଣେଇଲାପରି କହିଲେ, "ତମେ କ'ଣ ଆମକୁ ଏ ଘରୁ ତଡ଼ିଦେବ ନା' କ'ଣ ?"

ମାଲିକ ସଚି ସାହୁ, ମୁହଁ ସଞ୍ଜବେଳେ ଅନ୍ଧାରୁଆ ପିଣ୍ଡାରେ କେମିତ ଖୋସାମତ କଲାପରି ହସିଲା, "ହିହି, ହି"—

କବାଟ ଧଡ଼୍‌ଧାଡ଼୍ ଫିଟିଗଲା । ର୍ଗୱେଲ ସାହେବ ଲାଇଟ୍ ଲଗେଇ ଘରକୁ ପଶିପାରିଲେ ନାହିଁ । ଥ' ହେଇ ଠିଆହୋଇଗଲେ ।

ସଚି ସାହୁ ସେମିତ ହାତ ମଣ୍ଡିଲି ଭଳି ଚକ୍‌କଣ ନରମ ସ୍ୱରରେ କହିଲା, "ଭାରି ଭଲ ଲୋକଗୁଡ଼ାଏ ସାରେ । ଆପଣଙ୍କ ଲୋକ ଯେତେହେଲେ ! ସବୁ ଘର ଓଳେଇ ପାଣି ପକେଇ ଧୂଆଧୋଇ କରି ଦେଇଚନ୍ତି ।···ଭାରି ହିପାଜତରେ ଜିନିଷ ଟ୍ରକରେ ରଖିଚନ୍ତି ସାରେ । କାନ୍ଥରୁ କାଲେଣ୍ଡର ନଗାଣ୍ଡ୍ ନେଇ ଯାଇଚନ୍ତି ! ଅପଣଙ୍କୁ ଆଉ କିଛି ଖୋଜିବାକୁ ହବନାହିଁ ସାରେ ।"

ର୍ଗୱେଲ ସାହେବ ଶୂନ୍‌ମାରି ଦେଲାପରି ବିହ୍ୱଳହୋଇ ଚାହିଁଥାନ୍ତି । ତାଙ୍କ ପିଲାଏ ଏଘରୁ ସେ ଘର ବୁଲି ଆସି ସେଇଠି ଆସି ଠିଆହେଲେ । ସେମାନେ କେହି ଏ ଘରର ନୁହଁନ୍ତି; ଏ ଖାଲି କାନ୍ଥ, ଧୂଆଧୋଇ ଚଟାଣ, ତାଙ୍କର ନୁହେଁ—ଏଇ ଗାଡ଼ିରେ ବସି ତାଙ୍କ ଘରକୁ ସେମାନେ ଏଇଲାଗେ ଚାଲିଯିବେ—ଏହିପରି ଢଙ୍ଗ ସେମାନଙ୍କର ।

ଝିଅ ବାଲୁ ବାଲୁ ଚାହିଁ କହିଲା, "ଡାଡି, ଆମ ଜିନିଷ ସବୁ କାହିଁ ? ତମ ଆଲମାରି, ଆମ ଆଲମାରି, ମମ୍ମିର ଗଡ଼ରେଜ୍, ଡାଇନିଂ ଟେବୁଲ···ସୋଫା, କାର୍ପେଟ ରେଡ଼ିଓଗ୍ରାମ ??"

ସଚ୍ଚି ସାହୁ ପିଣ୍ଡାରୁ ପାକୁଳେଇ କହିଲା, ସାରେ, ପିଲାଙ୍କୁ ସୁଧା କହିନାହାନ୍ତି ପରା ! ଦି'ପହରେ ତମ ଲୋକ ସବୁ ଆସି ଟ୍ରକରେ ଜିନିଷ ନେଇଗଲେ ନୂଆ ଘରକୁ ! ସାରେ ଘର୍ କଣ୍ଟି ଫେରେଇବାକୁ ଆସିଛନ୍ତି ! ସେମାନେ କହିଲେ, "ସଞ୍ଜବେଳକୁ ତମେ ଆସିଥିବ, ସାହେବ ନିଜେ ଆସି କଣ୍ଟି ଫେରେଇବେ ! ଖରା ପକ୍କା ଲୋକ, ଆଉ କାହା ହାତରେ ଦେବେନାହିଁ । ହେ ହେ ହେ । ହେ ହେ ହେ ।"

ରଓ୍ୱଲ ସାହେବ ଆଖିବୁଜି କାନ୍ଥଟାକୁ ଦରାଣ୍ଡି ଧରିନେଲେ । ସେଇଠି ଲେଥ୍ କୋଥ୍ ହୋଇ ବସିପଡ଼ିଲେ । ପିଲାଏ ଚହିଁକଲେ । ତାଙ୍କ ମମି ରଡ଼ି ଛାଡ଼ିଲେ । ମୁହଁରେ ମୁନ୍ଦେ ପାଣି ଛିଞ୍ଚିବାକୁ ଘରେ କିଛି ନାହିଁ । ସାଇ ପଡ଼ିଶା ରୁଣ୍ଡ ହୋଇଗଲେ । ପୋଲିସ ଆସିଲେ । କାଳିଆ କସରି କୁକୁର ଆସିଲେ । ଡାକ୍ତର ଆସିଲେ । ସାମ୍ବାଦିକ ଆସିଲେ । ଦିନ ଦି'ପହରେ ଅଦ୍ଭୁତ ଚୋରି । ଇଞ୍ଜିନିୟରର ସର୍ବସ୍ୱାନ୍ତ ! ଘମାଘୋଟ ତଦନ୍ତ ଚାଲିଛି ।

ଏହିପରି ଏହିପରି ସେ ଖଣ୍ଡମଣ୍ଡଳ ହୁଲୁକଲ କିଛିଦିନ । ତା' ଉତ୍ତାରୁ ଥଣ୍ଡା ପଡ଼ିଗଲା ସବୁ । ରାଓ୍ୱଲ ସାହେବ ଝିଙ୍କିରି ଗଲେ । ଫେରି ଆସିଲେ ଠୋକା ଓଭରସିଅର ସମୟର ଶସ୍ତା ବେତ ଚୌକି, ପଟା ଖଟ ଅମଳକୁ !

× × × ×

ସଚ୍ଚି ସାହୁକୁ ଏବେ 'ସାହୁ ବାବୁ' ବୋଲି ସେ ଡାକୁଛନ୍ତି । ପ୍ରତିଦିନ ସଞ୍ଜବେଳେ ସେ ଆସି ପିଣ୍ଡାରେ ଘଡ଼ିଏ ବସି ଭଲ ମନ୍ଦ ବୁଝିଦେଇଯାଉଛି ।

ଘରେ, ବାହାରେ, ଅଫିସରେ, କାଠ ଗୁଣ୍ଡିଥିବା ନହକା ଗୋଖରପରି ରାଓ୍ୱଲ ସାହେବ କଥାକଥାକେ ଫାଉଁକିନା ଚଢ଼ିଯାଉଛନ୍ତି । ଶୋଧିଦେଇ ଯାଉଛନ୍ତି ଏକପଟିଆ ଯାହାକୁ ମନ ତା'କୁ । ସେଦିନ ଗୋଡ଼େଇଗଲେ ତାକୁ ରାସ୍ତା ଯାଏଁ । "ନିକଲ ଯା ବେ, ଶାଲା, ସୁଅର କା ବଚ୍ଚା ! ଭଗବତ ନାଁ ଘୋଡ଼ାଉଚୁ ! କଏ ପଢ଼ିବ ବୋଲି ମୁଁ କାହିଁକି ଚାନ୍ଦାଦେବି ! କୋଉ ଦେବତା ମୋତେ ରଖିନାହିଁ । ମୋ ଦୁଆରେ ଦିଅଁ ନା ନେଇଚ ଶଳେ, ଜୋତା କାଢ଼ି ବାଡ଼େଇବି, ଯାହା ହବାର ହବ ।"

ଅଗଣାରୁ କଳା ମଚମଚ ତୁଳସୀ ଗଛଟାକୁ ଉପାଡ଼ି ଫୋପାଡ଼ି ଦେଲେ । ଦିଅଁ ଘରୁ ସବୁ ଫଟୋ କାଗଜ ଚିରି ଦିଆସିଲି ଲଗେଇଦେଲେ । ସ୍ତ୍ରୀ'ଭିତରେ ଚଢ଼ିଯାଇ ସ୍ତ୍ରୀଙ୍କୁ ବାଡ଼େଇଲେ ଦିନେ ଗୋଟାଏ କାଠ ଫାଳିଆରେ । ପିଲାଏ ଭୟରେ ତାଙ୍କ ପାଖ ପଶୁ-ନାହାନ୍ତି । ସମସ୍ତେ ଚାଲି ଚାଲି ଯୁଆଡ଼େ ଯିବାର ଯାଉଛନ୍ତି—ରିକ୍ସା ଖର୍ଚ୍ଚ ମାଗିବାକୁ କାହାର ସାହସ ନାହିଁ । ସେ ନିଜେ ଚାଲି ଚାଲି ଅଫିସ ଯାଉଛନ୍ତି । ଦୁଇ ଦିନରେ ଥରେ

ଦାଢ଼ି କାଟୁଛନ୍ତି ! ମହୁ ମରେ ନିଆଁ ହୁଳା ଲଗେଇଦେଲା ପରେ ବାଉଁଆ ମହୁମାଛି ଯେମିତି ପ୍ପାଇଁ ପ୍ପାଇଁ ଲାହୁଡ଼ ଲାଟୁଥିଏ ସେଇଭଳି ତାଙ୍କ କଥା ।

ରାଓ୍ୱଲ ସାହେବ ଅଧେ ଝଡ଼ିଗଲେଣି । ଦିନକୁ ଦିନ ବେଶ୍ ଶୁଖିଲା ଦେଖାଯାଉଛନ୍ତି । ଏବିକ ରାତିରେ କୋଉଠି ବୁଲି ବୁଲି ଫେରୁଛନ୍ତି । ଗତ ଶୁକ୍ରବାରଦିନ ରାତିରେ ଜମା ଆସିଲେ ନାହିଁ । ଶନିବାର ଛୁଟି । ଆସି ଦିନ ଦଶଟାରେ ପହଞ୍ଚିଲେ । ଆଖି ଚାରିଆଡ଼େ କଳା ଦାଗ । ମୁହଁରେ ଦୁଇଦିନର ରୁଢ଼ । ଓଠ ଶୁଖିଲା । ସ୍ତ୍ରୀ ଆଖି ଥନ ଥନ କରି ଆସି ଆଗରେ ଠିଆ ହେଲେ । ନିଆଁ ଉଡ଼ ପରି ଆଖିରେ ଗାରଡ଼େଇଁ ଚାହିଁ ଦାନ୍ତ ଘୋବେଇବାରୁ ଘୁଞ୍ଚିଗଲେ । ଲୁଗାକାନିରେ ଲୁହ ପୋଛି ପୋଛି ଶୋଇବା ଘରକୁ ଯାଇ ପଲଙ୍କ ଉପରେ କାନ୍ଥକୁ ଆଉଜି ବସିଥାନ୍ତି । ଆଖିରୁ ଲୁହ ବୋହି ଯାଉଥାଏ । ଝିଅ ପୁଅ, ଦାଣ୍ଡ ପିଣ୍ଡାକୁ ଟିପେଇ ଟିପେଇ ଯାଇ ବାପାଙ୍କୁ ଦେଖି ଜିଭ କାମୁଡ଼ି ଫେରିଆସିଲେ । ଝିଅଟାକୁ ବୟସ ହେଲାଣି । ସେ ବୁଝିଲାଣି ସବୁ । ତା' ମୁହଟି ଶୁଖି ଆଖି ଥନ ଥନ ହୋଇଗଲା । ସେ ମନ ବାଆଁରେଇ-ବାକୁ ଖଇର ଫିଟିଯାଉଥିବା ବ୍ଲାଉଜ୍ର ବୋତାମଟାକୁ ଲଗେଇ ଦଉଥାଏ···

କଏ ବୋଧେ ଆସିଲା । ସେମାନେ ଭୂସ୍ କିନା ଉଠି ଝରକା ପାଖକୁ ଅନେଇଲେ । ଚାରିଜଣ ଲମ୍ବା ଲମ୍ବା ଟୋକା । କଲେଜ ପିଲା ହେଇପାରନ୍ତି । ଦେଖୁ ଦେଖୁ ସେମାନେ ଜାଣିଦେଲେ ଯେ ଚାନ୍ଦା ମାଗି ଆସିଛନ୍ତି । ଜଣକ ହାତରେ ରସିଦ ବହି । ପରଦା ଆଢୁଆଳରେ ଧୂନା ଆଉ ବବ୍ଲି ଜିଭ କାମୁଡ଼ି ଏଡ଼େ ଏଡ଼େ ଆଖିରେ ପରସ୍ପର ଚାହୁଁଥାନ୍ତି । ଏଇଲଗେ ବୋଧହୁଏ ପ୍ରଳୟ ହୋଇଯିବ ।

"ନମସ୍କାର ସାର୍ !"

ନିଃଶ୍ୱାସ ବନ୍ଦ କରିଦେଲେ । ସ୍ତା'ପରେ ବାଘ ଗର୍ଜିବ ! ଏକ୍, ଦୁଇ, ତିନ···କିନ୍ତୁ କିଛି ନାହିଁ ତ !

"ଆମ ସାଇରେ ବିଶ୍ୱକର୍ମା ପୂଜା ପାଇଁ ଚାନ୍ଦା ମାଗିବାକୁ ଆସିଛୁ !"

'ଡୋ' କିନା ତୋପ ଫୁଟିଗଲା । ଡେଇଁ ପଡ଼ିଲେ ଚକେ ଲେଖାଁ ଧୂନା ଆଉ ବବ୍ଲି "ନିକଲ୍ ଯା ମୋ ଦୁଆରୁ । ଲଫଙ୍ଗାଙ୍କର ଧନ୍ଦା ଚାଲିଛି ! ମୁଁ ଚାନ୍ଦାଫାନ୍ଦା କିଛି ଦେବିନାହିଁ ।"

"ଆ, ସେଇ କଥା ତ କହିବେ । ଏମିତି ତାପିନ ଦେଖଉଛନ୍ତି କାହାକୁ ?"

"ଗେଟ୍ ଆଉଟ୍ !! ···ମୋ ସାମ୍ନାରୁ ଯାଉଚ ନା ଦେଖିବ ଏଇନେ ! ଇଡିଅଟ୍ସ !"

ସେମାନେ ଗେଟ୍ ପାଖକୁ ବୁଲି ପଡ଼ିଲେ । ସବୁଠୁ ଡେଙ୍ଗାଟୋକା ଖିଙ୍କାରି ଉଠିଲା, "ସଟ୍ ଅପ୍ ! କାହାକୁ ଇଡିଏଟସ୍ କହୁଚୁ ବେ !"

ତା' ହାତକୁ ପଛକୁ ଟାଣି ଧରି ଜଣେ କହିଲା, "ଛାଡ଼ ବେ ! ଏଇଟା ଗ୍ରେଟଟେ ! ଯାହା ସବୁ ଲାଞ୍ଚ ଖାଇ ଖାଇ ଜମେଇଥିଲା ସବୁ ଏକାଦିନକେ ସଫା ହୋଇଗଲା । ଶଳା ବୁଢ଼ା ଚୋର ।"

ଏଇଟା ବୋଧେ ବାପା କଦାପି ସହିବେ ନାହିଁ । କିଛି ଅନର୍ଥ ମଧ୍ୟ ଘଟିଯିବ । କିନ୍ତୁ ଟୁଁ ଶବ୍ଦ ବି ଶୁଭିଲା ନାହିଁ । ବିଲ୍ଟୁ ବାହାଣପଟୁ ହୁଏତ ସେ ଟୋକାଙ୍କ ମୁକାବିଲା କରି ପକେଇଥାନ୍ତା—ଠିକଣା ଜବାବ୍ ଦେଇଥାନ୍ତା—

ସେମାନେ କୌଣସି ପ୍ରତିବାଦ ନଶୁଣି ଗେଟ୍ ଫିଟେଇ ବାହାରକୁ ଚାଲିଗଲେ । ଗେଟ୍ ବନ୍ଦ କଲାବେଳେ ତାଙ୍କ ନେତା କହିଲା, "ବୁଝିଲେ ଇଞ୍ଜିନିୟର ସାହେବ ! ଏଇଟା ମଫସଲ ନୁହେଁ ଯେ ଏମିତି ଧମକେଇ ଦେଇ ପାର ହୋଇଯିବେ । ଏଠିକି ଆସିଛନ୍ତି ଯଦି ଟିକିଏ ବ୍ୟବହାର ଶିଖିନିଅନ୍ତୁ !"

"କି ସାହସ !···ଲଫଙ୍ଗା, ବଜାଖି, ବାରବୁଲା ଟୋକାଙ୍କର !" ଗରଗର ହୋଇ ବୋଉ ବୁଲି ପଡ଼ିବାର ଦେଖି ବିଲ୍ଟୁ ତାଙ୍କ ପଛେ ପଛେ ଶୋଇବା ଘରୁ ପିଣ୍ଡା ପର୍ଯ୍ୟନ୍ତ ଚାଲିଆସିଲା । ଧୂଳି ବୈଠକପରି ଯାଏଁ ଆସି ଅପେକ୍ଷା କଲା ।

ବାପାଙ୍କ ପାଖରୁ ରାସ୍ତାକୁ ଚାହିଁ ବୋଉ କହିଲେ, "ଚୋରଙ୍କ ମୁହଁ ଟାଣ କେତେ ! କହାତ ଅଭଦ୍ର ବଜାଖି ଘରର ପିଲା ! ଭିକ ମାଗି ଆସିଛନ୍ତି; ବ୍ୟବହାର ଶିଖାଉଚନ୍ତି କେତେ !"

ବିଲ୍ଟୁ ତବତବ ଆଖିରେ ଦୂରେଇ ଯାଉଥିବା ଟୋକାଙ୍କୁ ଆଶଙ୍କାରେ ଅନେଇଥାଏ । ଶୁଣି ଦେଲେ କି ? ଲେଉଟି ପଡ଼ିବେ କି ? ଦେଖାଯିବ ସେ ଲଢ଼ିବାକୁ ତିଆର ହୋଇଗଲା । ସେମାନେ କିନ୍ତୁ ଅନେକ ଦୂର ଆଗେଇଗଲେ ।

ବାପା ସେମିତି ଗୁମ୍ ଖାଇ ତଳକୁ ଚାହିଁ ବସିଥାନ୍ତି । ତାଙ୍କ ମୁହଁ ବିଲ୍ଟୁକୁ କାନ୍ଦ କାନ୍ଦ ଦିଶୁଥାଏ ।

ଏତିକିବେଳେ ସାଇକଲ ପଛରେ ଡାଲା ବାନ୍ଧି ମାଛବାଲା ଡାକ ଡାକ ବାଁପଟୁ ବୁଲି ଆସିଲା । "ଆରେ, କି ମାଛ ଆଣିଛୁ ?" ବୋଉ ପଚାରିଲେ ।

"ରୋହି, ଭାକୁର, ମିରକାଲି ।"

"କେତେ ଦର ?"

"କିଲେ ଚଉଦ ଟଙ୍କା ।"

"ଚଉଦ ଟଙ୍କା ନା' ଆଉ କ'ଣ ବା !"

"ଆଉ କେତେ ? "

"ଦଶ ଟଙ୍କାରେ ଦେବୁ ?"

ଫଡ଼୍ କିନା ଯେ ବୁଲିପଡ଼ିଲା । ପେଡାଲରେ ଗୋଡ଼ ରଖି ଖଡେଇ ହେଲାପରି କହିଲା, "ଦଶଟଙ୍କା !—କେବେ ମାଛ ଖାଇଥିଲ ନା, ଆଜି ଖାଇବାକୁ ମନ କରୁଚ ବା ।"

ଫାଇଁ କିନା ରାଗିଗଲେ ବୋଉ । ରାଗିଗଲା ବିଲ୍ଟୁ । ସେମାନେ ରାଗ ସମ୍ଭାଳି କଥା କହିଲାବେଳକୁ ସାଇକଲି ସେଇ ଟୋକାଙ୍କ ଆଡ଼କୁ ଦୂରେଇ ଯାଇଥିଲା ।

"ଆରେ, ଆମେ ଖାଇନାହୁଁ ମାଛ ?—ଆରେ···ପରି ଚୋଡ଼ଏ କଲେଇବୁ ଉଣା ଆମ ଘରକୁ ଆସେନାହିଁ, ଜାଣିଚୁ ?" ପାଟି କଲେ ବୋଉ ।

"ଗ୍ରେପ୍ ବେ, ମାଛ ଖରାପ ନୁହଁ । ଗ୍ରେଟ୍ ଲୋକ···ବଦମାସ୍ ।" ପାଟିକଲା ବଲ୍ଟୁ । ଏତେବେଳେ ଗ୍ରେଟ୍ ହସଟିଏ କେଉଁଠୁ ଶୁଭିଲା ।

ପଡ଼ଶା ଘର ଛତରଖାଇ ଘର···ତା' ପୁଅଗୁଡ଼ାକ ବାଳୁଙ୍ଗା, ଝିଅ ଅସୁନ୍ଦରୀ···ସେଇ ହସିଲା କି ? ହଠାତ୍ ସେ ଆଶ୍ଚର୍ଯ୍ୟ ହୋଇଗଲେ । ବଲ୍ଟୁ ଆଶ୍ଚର୍ଯ୍ୟ ହୋଇଗଲା । ବାପା ସେମିତ ହସିଲେ । ସେ ପୁଣି ହସିଲେ ଖିଲ୍ ଖିଲ୍ । ସେ ଯେମିତ ଦାବଲା ପରି ହସନ୍ତି— 'ହୋ-ହୋ' ହସିବା ଅଭଦ୍ରତା ।

ତା'ପରେ ସେ ମୁହଁ ଘୋଡ଼େଇ ପକେଇଲେ । ତାଙ୍କ ପେଟ ବୁକୁ ହୁଡ଼ା ହୁଡ଼ା ହେଉଥାଏ । ସେ ଚୌକି ଉପରେ ଲଇଁଲାପରି ବସିଥାନ୍ତି । ତାଙ୍କ ଚାରିପାଖେ ତାଙ୍କ ପରିବାର । ସମସ୍ତେ କାବା ହୋଇ ଚାହିଁଥାନ୍ତି ବାପାଙ୍କୁ···ଏମିତ କାହିଁକି ପାଗଳ ପରି ବାପା ହସୁଛନ୍ତି ।

ହଠାତ୍ ସେମାନେ ବାରିଦେଲେ ଯେ ସେ କାନ୍ଦୁଛନ୍ତି । କୋହ ଉଠିଲା ପରି କଇଁ କଇଁ ହୋଇ କାନ୍ଦୁଛନ୍ତି । ସେମାନେ ଆହୁରି କାତର ହୋଇଗଲେ । କ'ଣ କରିବେ ! ବୋଉ ସମ୍ଭାଳି ପାରିଲେନାହିଁ । ଆସ୍ତେ ତାଙ୍କ ପିଠିରେ ହାତ ରଖିଲେ । ତା'ପରେ ଧୁନି, ବଲ୍ଟୁ ସାହସ କରି ପାଖେଇଲେ । ବାପାଙ୍କ ଦେହ ସାଉଁଳି ଦେଲେ, ଅନେକ ବେଳ ଅପେକ୍ଷା କଲେ । କାହାରି ତୁଣ୍ଡରେ କଥା ନାହିଁ । ସମସ୍ତେ ବାପାଙ୍କୁ ଚାହିଁରହିଥାନ୍ତି ।

ଦାଣ୍ଡ ପିଣ୍ଡାଟା । ରାସ୍ତାରେ ଚାଲିଗଲା ଲୋକ ହୁଏତ ଚାହିଁବେ । କ'ଣ ଭାବିବେ ! ବଲ୍ଟୁ ବୋଧହୁଏ କହିପକେଇଲା 'ବାପା, ଚାଲ ଘରକୁ ଯିବା !'

ସେ ମୁହଁକୁ ଦୁଇଥର ପୋଛି ଆଣି ଉଠିଲେ । କାହାକୁ ନ ଚାହିଁ ଘରକୁ ପଶିଗଲେ । ଖଟ ଉପରେ ଚୁପ୍ ହୋଇ ବସିଲେ ଅନେକ ବେଳ । ତାଙ୍କୁ ବୋଧେଇଲା ପରି ଏମାନେ କ'ଣ ସବୁ ନିଜ ନିଜ ଭିତରେ କହୁଥିଲେ । ସେଇଟା ସେ ଶୁଣିନାହାନ୍ତି ହୁଏତ ।

'ଧୁନି, ମୋ ଝିଅର ସଜଟା ଦେଲୁ ମା !'

ଇସ୍, ବାପା ଆଗଭଳି ହୋଇଗଲେ ! ସମସ୍ତେ ଖୁସି ହୋଇଗଲେ କାହିଁରେ କ'ଣ । ସେଦିନ ଖିଆ ପିଆ ଭାରି ସ୍ୱାଭାବିକ ଢଙ୍ଗରେ ହେଲା । ତିଅଣ ଭିତରେ ଶାଗ ଆଉ ସନ୍ତୁଳା··· ଭାରି ସୁଆଦ ଲାଗିଲା କାହିଁ !

ସେଦିନ ସନ୍ଧ୍ୟାରେ ସଚ ସାହୁ ଆସି ପିଣ୍ଡାରେ ବସିଥାଏ କାଛକୁ ଆଉଜି । ରାଉଳ ସାହେବ ପଟି ପକେଇ ବସିଥାନ୍ତି ।

'ଆରେ ବଲ୍ଟୁ ଦ୍'କପ୍ ଚା' ଆଣିବୁ !'

'ନାହିଁ ସାରେ, ଆପଣ ପିଅନ୍ତୁ ମୋର ଆଜି ଓପାସ ।'

'କି ଓପାସ କି···ଆରେ କପେ ଆଣ; ସାହୁ ବାବୁ ଖାଇବେ ନାହିଁ ।'

'ଆଉ ସାରେ, କ'ଣ କିଛି ଖବର ମିଳିଲା ?'

'ନାଃ ମିଳିନାହିଁ କି ମିଳିବ ନାହିଁ ।'

'ଇସ୍, କେଡ଼େ ଚୁଟ୍ ଟ୍ରେରଙ୍କର ହୋଇଗଲା ଦେଖିଲେ ! ଗାଡ଼ି ନଗେଇ ଜିନଷ ପାର କରଦେଲେ । ଲକ୍ଷେ ଟଙ୍କାର ସମ୍ପତ୍ତି ବୋଲି ଲୋକ ସବୁ କହୁଚନ୍ତି ।'

'ହଁ ଗୁଡ଼ ! ଯାହାକୁ ଭୋଗ ହେବାକୁ ଥିଲା ହୋଇଗଲା—ଆମର ତ ଏଠି କେହି ନାହାନ୍ତି, କାହାକୁ କହିବା ? ଏଠି ଯେ ମନ ସେ ଚକଟି ଚାଲିଗଲେ ମଧ୍ୟ ସହିବାକୁ ହେବ ।'

"ଇଏ କି କଥା ସାରେ—ଆପଣଙ୍କ ଭୂଣ୍ଡରେ ଏଗୁଡ଼ାକ ଜମା ଶୋଭା ପାଉନାହିଁ ।"

"କିନ୍ତୁ କଥା ସତ ! ତା' ବାହାରେ ମୁଁ ଭାବୁଛି ଗୋଟାଏ ପ୍ରକାର ଭଲ ହୋଇ-ଯାଇଚି । ମୁଁ ପୁଣି ଭାବୁଚି ଯେ, ଗାଡ଼ିକ ଜୁଟିଲେ ମୋ ଗାଡ଼ିଖଣ୍ଡ ବିକ୍ରି କରି ଦେବି । ଆମର ସେଇଟା ପ୍ରୟୋଜନ ନାହିଁ ।"

"କାହିଁକି ସାରେ ? ଆପଣ ଆଜି ଏଇଠି ଅଛନ୍ତି, କାଲିକି ପୁଣି ଗସ୍ତରେ ବାହାରିବେ । ଏଡ଼େ ବଡ଼ ଇଞ୍ଜିନିୟର; ଗାଡ଼ି ନହେଲେ ଚଳିବେ କେମିତି ?"

"ହଅଅ—କିଛି ଅସୁବିଧା ହେବ ନାହିଁ । ହଉ ଗୁଡ଼, ପାରିବ ତ ଜଣେ ଗାଡ଼ିକ ଯୋଗାଡ଼ କରି ଦେଖି !"

ସଚ ସାହୁ କିଛି ସମୟ ପରେ ଅଟେଇଲା ପରି କହିଲା, "ଆପଣଙ୍କ ସରକାରୀ ବଡ଼ଘର କଥା କ'ଣ ହେଲା ସାରେ ! ଏମାସ ଶେଷକୁ ହୋଇଯିବ ତ ? ସେମାନେ ଏତେ ବଡ଼ ଅଫିସରକୁ ନଦେଇ ଯିବେ କୁଆଡ଼େ ?"

"ଏଠି ସେକଥା କିଛି ନାହିଁ । ଦେଲେ ଦେବେ ନଦେଲେ ନାହିଁ । ଏ ଘରେ ଆମର କ'ଣ ଅସୁବିଧା ଅଛି ?"

ଆଙ୍ଗୁଠି ଛିଟ ବାହାରଆଡ଼େ ଚାହିଁ ସଚ ସାହୁ କହିଲା, "କିଛି ନାହିଁ ଯେ ସାରେ, ଆଉ ଜଣକୁ ଦେବ ବୋଲି ତା'ଠୁ ଟଙ୍କା କିଛି ନେଇଯାଇଚି । ସେ ଗୋଟାଏ ବଡ଼ ଠିକାଦାର୍ । ଏଇ ଆସୁଚି ପହିଲାଠୁ ରହିବ ବୋଲି ଖବର ଦେଇଚି ।"

ଚା'ରେ ମୁହଁ ଦେଇ ରାଓ୍ୱେଲ ସାହେବ ତଳକୁ ଚାହିଁଥାନ୍ତି—"ଓ, ତା'ହେଲେ ଏଠି ରହିବା ମଧ୍ୟ ସମ୍ଭବ ନୁହେଁ । ବାଃ ମନ୍ଦ କ'ଣ ! କେତେ ଟଙ୍କା ନେଇଛି ତାଙ୍କଠୁ ?"

"ଆଜ୍ଞା ତିନି ହଜାର ଟଙ୍କା । ହେଇ ଚାରିମାସର ଭଡ଼ା ଆଗତୁରା ମାଗିଲାରୁ ଦେଇଦେଲା ।"

"ମାନେ ? ଏ ଘର ମାସକୁ ଏଣିକି ସାତଶ ପଚାଶ ଟଙ୍କା ଭଡ଼ା !"

ଅଳ୍ପ ଲାଜେଇଲା ପରି ହସିଲା ସଚ ସାହୁ । "ଗରିବ କୁଡ଼ିଆ ଖଣ୍ଡେ ସାରେ ! ଦି'ପଇସା ମିଳିଲେ ଚଳିଯିବା କଥା !"

"ହଉ ଦେଖିବା । ତୁମେ ଆଠ ଦଶ ଦିନ ଆମକୁ ସମୟ ଦିଅ—ଯାହାହେଲେ କରିବା ।" ସଚ ସାହୁ କୃତକୃତ୍ୟ ହୋଇ ବେକରେ ଗାମୁଛା ଦେଇ ନଇଁ ନଇଁ ପାର ହୋଇଗଲେ ରାସ୍ତାକୁ ।

ଅଧା ଚା' ହାତରେ ଧରି ରାଓ୍ୱଲ ସାହେବ ପରିହାସ ଭଙ୍ଗୀରେ ହସି ହସି ଯାଇ ପିଲାଙ୍କୁ କହିଲେ, "ଦୁର୍ଯୋଗ ଆଉରି ସରିନାହିଁ—ବୁଝିଲ ? ସଚ ସାହୁ ଆସି ନୋଟିସ୍ ଦେଇ ଚାଲିଗଲା । ରହିବାକୁ ମନ ଥିଲେ ଆସନ୍ତା ମାସରୁ ଘରଭଡ଼ା ଚାରିଶ ପଚିଶରୁ ସାତଶ ପଚାଶ । ତା' ପୁଣି ଚାରିମାସର ଆଗତୁରା ତିନିହଜାର ଟଙ୍କା ଦେଲେ ଯାଇ ରହିବ !"

"କ'ଣ କହୁଚ ମ ? ମୋ ପିଲେ ଆଉ ଖାଇବେ କ'ଣ ?" ଶୁଣିଆ ହେଲାପରି କାନ୍ଦକାନ୍ଦ ସ୍ୱରରେ ମିସେସ୍ ରାଓ୍ୱଲ କହିଲେ ।

"କିଛି ଅସୁବିଧା ନାହିଁ । ଆଉଥରେ ଶସ୍ତା ଘର ଖୋଜିବା । ଲୋକେ କ'ଣ ସମସ୍ତେ ସାତଶ ପଚାଶ ଦେଇ ରହୁଛନ୍ତି ? ଯେତିକ ପାରିବା ସେତିକରେ ଚଳିବା ।"

ତାଙ୍କ ପତ୍ନୀ ଧନେଶ୍ୱରୀ ରାଓ୍ୱଲଙ୍କ କଥା ଶୁଣି ଅବାକ୍ । ଏଇ ଲୋକ ସୁଙ୍କାଧାରୀ ଚନ୍ଦ୍ରକୋଣ୍ଡାରେ ଚାଲିଗଲେ ଲୋକେ ଆଡ଼େଇ ହୋଇ ଯାଉଥିଲେ । ସବୁଠୁ ଦାମୀ, ସବୁଠୁ ବଡ଼ ଜିନିଷ ଆସିଲେ ଦୋକାନୀ ସ୍ୱାମୀଙ୍କ ପାଇଁ ସାଇତି ରଖି ଖବର ଦେଉଥିଲେ । ତାଙ୍କ ଆଖିରେ ଦିଶିଗଲା ଯେତେ ସବୁ କାଞ୍ଜିଭରମ୍, ବନାରସି, କାଶ୍ମୀରୀ, ନାଇଲନ୍‌ର ଥାକଥାକ ମୋଲାଏମ୍ ଶାଢ଼ି । ଦିଶିଗଲା ଗଜବନ୍ଧ, ବାଜୁବନ୍ଧ, ଝାଉଁବସା ଚୁଡ଼ି, ମୁଦମାଳି ବାକ୍ସ ! ଦିଶିଗଲା ମହାର୍ଘ ଆଉ ଅନେକ ଜିନିଷ ।—ବୋନ୍ ଚାଇନାର କପ୍‌ପିଆଲା ସେଟ୍‌କୁ ପାଞ୍ଚଶ ଟଙ୍କାରେ କିଣା ହୋଇଥିଲା । ସ୍ୱାମୀଙ୍କର ମରକ୍କୋ ଜୋତା ପାଞ୍ଚ ଯୋର ! ଯେ ଦେଖୁଥିଲା ସେ ପଚାରୁଥିଲା । ଏକାଥରକେ ସବୁ ପୋଛି ହୋଇଗଲା ।

ଏମିତି ଥୁଣ୍ଟା ବେତନର ଧ୍ରୁବ ଉପରେ ଏକଗୋଡ଼ିକିଆ ବକପରି ନିର୍ନିମେଷ ବଞ୍ଚିବା ସେ ଜାଣିନଥିଲେ । ତାଙ୍କ ନିଜ ବାପ ଚଫ୍ ଇଞ୍ଜିନିୟର । ଏ ଗୁଣବନ୍ତ ମୂଳରୁ ଏମିତି ଖପରିଡ଼ିଆଁ ହେଲେ ଯେ, କାହାପାଖରୁ ପାନଟିଏ ସୁଦ୍ଧା ଖାଇଲେ ନାହିଁ । ଭାରି କଡ଼ାକଡ଼ି ନିୟମ ଦେଖି ସମସ୍ତେ ନାକରେ ହାତଦେଇ ହସିଲେ । ବାପା ନିଜେ ପାଖରେ ବସି ଆସ୍ତେ ଆସ୍ତେ ଏ ବଇରାଗୀ ଯୋଗିଙ୍କ ରୋଗ ଛଡ଼େଇଲେ । ତାଙ୍କ ମନ ସଂସାରରେ ଲାଗିଗଲା ।

ଆଜି ହଠାତ୍ ସେଇ ପୁରୁଣା ଢଙ୍ଗ ତାଙ୍କ ହାବଭାବ ଆଉ କଥାରେ ଦେଖି ସେ ଶଙ୍କିଗଲେ । ଏମିତି ହାରିଗଲେ ମରଦପଣରେ ସିନା ଦୁଇଗୁଣ ଜିଦ୍‌ରେ ଲାଗିଯାନ୍ତି ! ଗୋରହେବା ପରେ ତାଙ୍କ ରାଗିବା, ଦାନ୍ତ ଘୋଟେଇବା, ଏମିତିକି ତାଙ୍କୁ ସେଦିନ ବାଡ଼େଇବାକୁ ସେ ଅତି ଆତୁର ହୋଇ ମନେପକେଇଲେ । ସେପରି ହେଲେ ହିଁ ପୁଣି ହରେଇଥିବା ଧନର ଦୁଇଗୁଣ ଅର୍ଜନ କରିପାରିବେ । ନହେଲେ ଏମିତି କେତେଦିନ ଗଲେ ତ ସରିଗଲା !...

ସେ ଅବାକ୍ ହୋଇ ଗ୍ଣହିଁଲେ । ଧନେଶ୍ୱର ବାବୁ ତଳେ ବସି ଚ୍ଚ ପିଉଛନ୍ତି ଶନ୍ତା କପ୍‌ଟିରେ ଏବଂ ମୃଦୁ ମୃଦୁ ହସୁଛନ୍ତି ।

"ତମେ ଏଇଠୁ ବଦଳି ମାଗିଲ । ଏ ଅଲକ୍ଷଣିଆ ମାଙ୍କଡ଼ାପଥର ଜାଗାରେ ଯେ ରହିବ ରହୁଥାଉ ! ଚ୍ଚଲ ଆମେ ପୁଣି ଆମର ମଫସଲ ଅଞ୍ଚଳକୁ ଚ୍ଚଲିଯିବା···ଆମର ଏବେ ସହରରେ ରହିବା ନୋହିଲ !"

"କିଓ ଏମିତି କାହିଁକି ଏ ମୁଲକଟାକୁ ନାଲିଏକ କରି ଥୋଇଦଉଚ ? ଆମକୁ ଅଣ୍ଟିଲ ନାହିଁ ବୋଲି କ'ଣ ଜାଗାଟା ଖରାପ ? ଶୁଣ, ମୁଁ ଭାବୁଛି ସେ ତଳ ଆଡ଼କୁ ଗୋଟେ ଘର ଅଛି । ପଲସ୍ତରା ହୋଇନାହିଁ, ହେଲେ ଘରଭିତର ଭାରି ପରିଷ୍କାର । ଟିକିଏ ନାଳୁଟିଆ ହବ—ହଉ, ଆମ ପାଇଁ ବଢ଼ିଆ । ଆମର ତ ଆଉ ଡରିବାକୁ କିଛି ନାହିଁ । ଆମ ଘରକୁ ଚ୍ଚୋର ଆଉ ଆସିବେ ନାହିଁ । ମୁଁ ବି ଭାବୁଛି ଗାଡ଼ିଟାକୁ ବିକିଦେବି ।"

"ଜ୍ୱଳନପଡ଼ ! ଆଉ ଯେମିତି ଅଲକ୍ଷଣା କଥା କହିବ ତ ମୁଁ ବିଷ ଖାଇଦେବି । ମୋ ସିଲେ କ'ଣ ଏମିତି ବାରବୁଲିଙ୍କପରି ସବୁବେଳେ ଚଳିବେ ? ଏଇଆ ମନରେ ଯଦି ଥିଲା, ତେବେ କାହିଁକି ଆଗରୁ ତାଙ୍କୁ ତଳେ ଟଲେଇ ଦେଇ ନଥିଲ ?"—ସେ ସକ୍ ସକ୍ କାନ୍ଦିଲେ ।

ବଡ଼ ଝେଲସାର ଆସିଥାଏ । ତା'ର ଯେଉଁ ଖଣ୍ଡେ ଜାମା ସିଧା ଯେ ପିକ୍‌ନିକ୍ ଯାଇଥିଲା, ଆଉ କଣା ହୋଇନାହିଁ—ଦୁଇ ଦିନମାସ ହୋଇଗଲାଣି ।—ତାକୁ ଦେଖି ମିସେସ୍ ରାଓ୍ୱଲ ଆହୁରି କାନ୍ଦିଲେ ।

ଧନେଶ୍ୱର ରାଓ୍ୱଲ ସାମାନ୍ୟ ଗମ୍ଭୀର ହୋଇ ସେଇଠୁ ଉଠି ଚ୍ଚଲିଗଲେ ।

ରାତିରେ ଶୋଇବା ପର୍ଯ୍ୟନ୍ତ ସ୍ୱାମୀଙ୍କର ହାଣ୍ଡିପରି ମୁହଁ । ପିଲାଏ କେମିତି ଟିକିଏ ଆଡ଼େଇ ହେଲାପରି ଏବଂ ଧନେଶ୍ୱର ରାଓ୍ୱଲ ନିଜେ ଖୁବ୍ ଅନ୍ୟମନସ୍କ ।

ରାତସାରା ତାଙ୍କୁ ନିଦ ନାହିଁ । ତାଙ୍କୁ କେହି ଜଣେ ଗାମୁଛାଟିଏ ମୋଡ଼େଇ ହୋଇ ବାଟ ଚଢ଼େଇ ନେଲାପରି ଲାଗୁଛି । ସେ ଜଳାର୍ଣ୍ଣବ ଭିତରେ ମଣିଷଗୁଡ଼ାଏ ଉବେଇ ଚୁବେଇ ହୋଇ ମରଯାଉଛନ୍ତି । କଲବଲ ହେଉଛନ୍ତି ପିଲାଗୁଡ଼ାଏ ଭାସିଯାଉଥିବା ଡାଳଟାକୁ ଧରି । ଦିନବର୍ଷ ତଳେ ପାଞ୍ଚ ବନ୍ଧା ଚ୍ଚଲିଥିବାବେଳେ ଏଇ ମଣିଷମାନଙ୍କ ଗାଁରେ ସେ କେତେଥର ଜିପ୍ ରଖି ଚ୍ଚ ଖାଇଛନ୍ତି । ତାଙ୍କ ଉପରେ ସେମାନେ ବିଶ୍ୱାସ କରିଥିଲେ । ସେ ବିଶ୍ୱାସ କରିଥିଲେ ଚନ୍ଦ୍ରଭାନୁ ପାଠୋର୍ ଉପରେ, ଦିବ୍ୟସିଂହ ଚୌଧୁରୀ ଉପରେ । ସେମାନେ ତାଙ୍କୁ ଚୁକୁଡା ଚୁକୁଡା ଫଳ, ଗୋଟାଗୋଟା ଦଶକେଜିଆ ପୋହ୍, ଝ୍ୱାବସା ମୁଦ୍ର ଦେଇଛନ୍ତି । ଗୋଟାଏ ବର୍ଷାରେ ପାଞ୍ଚ ଭାସିଗଲା । କୋଡ଼ିଏ ଖଣ୍ଡ ଗାଁ ଭାସିଗଲା । କାହା ଦସ୍ତଖତରେ ପାଞ୍ଚ ବିଲ୍ ପାସ ହୋଇଥିଲା ? ଗୋଟିଏ ଦସ୍ତଖତ ମୁଦ୍ରପିନ୍ଧା ହାତ । ସନ୍ଧ୍ୟାରେ ସେ ଦେଖୁଥାନ୍ତି ଏଇ ପାଣିରେ ଭାସିଯାଉଥିବା ଦାତର ମଣିଷଗୁଡ଼ିକୁ !···ଭାରି ଅସୁସ୍ଥ ଲାଗୁଥାଏ । ନିଦରେ ସେ ଖୁସ୍‌ମୁସ୍ ହୋଇ କଡ଼ ଲେଉଟାଉଥାନ୍ତି ।

···ସେ ରାସ୍ତା ଉପରୁ ଯୋଡ଼ାଏ ଗାଡ଼ି ଗଡ଼ଗଡ଼ାଣି ଖାଇ ଢାଲୁପଟକୁ ତଳକୁ ଗଡ଼ି ଯାଉଛନ୍ତି । କଣ୍ଟାମାଟି କାମରେ ରାସ୍ତା ଧସିଯାଉଛି । ସେ ଯୋଡ଼ିଏ ଗଡ଼ରେଜ୍ ଆଲମାରି ପଛପଟୁ ସେ ଗାଡ଼ିତଳେ ଲେସିହୋଇ ମରିଯାଇଥିବା ମଣିଷଙ୍କର ଖଣ୍ଡ ଖଣ୍ଡ ଦେହ ଦେଖୁଛନ୍ତି । ହାତରେ ଧରିଛନ୍ତି ମଖମଲ ଅଲଙ୍କାର ବାକ୍‌ସଟିଏ । ଛଅଟ୍ରକ୍ ପଥରକୁ ନେଇ ଷାଠିଏ ଟ୍ରକ୍‌ର ବିଲ୍ କଲାବେଳେ ସେ ଆଲମାରିର ଦର୍ପଣରେ ଆଖି ମାରିଦେଇ ଦସ୍ତଖତ କରିଦେଇଛନ୍ତି···ସେ ଡାଇନିଂ ସେଟ୍···ସେ ସୋଫା ପଲଙ୍କ, ଫ୍ରିଜ୍···ସେ କାର୍···ସବୁ, ସବୁ କିଛି ସେମିତି ।

ସେ ଆଉଥରେ ଯେସବୁ ତାଙ୍କ ପାଖକୁ ଫେରିଆସିବାର ଅନୁଭବ କଲେ । ତାଙ୍କୁ ଅନୁଭବ ହେଲା ଯେ, ପାହାଡ଼ଟାଏ ତାଙ୍କ ଉପରେ ମଡ଼େଇ ହୋଇ ପଡ଼ୁଛି । ସେ ଚେଷ୍ଟା କରୁଛନ୍ତି ଖସି ପଳେଇବାକୁ—ହଉନାହିଁ । ସେ ଗାମୁଛା ଘୋଡ଼େଇ ହୋଇଥିବା ମଣିଷଟି ତାଙ୍କ ସାମ୍ନାରେ ଠିଆହୋଇ ଚାହିଁରହିଛି । ବୁଢ଼ିଆ ଶୀର୍ଣ୍ଣ ଉଦାସ ମୁହଁଟିଏ । ତାଙ୍କ ବାପାଙ୍କପରି ଦିଶୁଚି ! ସେମିତି ଠିଆ ନାକ, କହରା ଆଖି । ଚାହିଁ ରହିଛନ୍ତି ନୀରବରେ । ଅନେକ ଦୂରରୁ ଶୁଭୁଛି—"ତୁ ପାଠ ପଢ଼ିବୁ, ବଡ଼ ଲୋକହେବୁ । ସାତପୁରୁଷ ଉଦ୍ଧାର ହେବେ । କୁଳ ଉଜ୍ଜ୍ୱଳ ହେବ !"

ସେ ଛାଟ ମାରିଲା ପରି ଉଠିପଡ଼ିଲେ । ସେତେବେଳକୁ ସକାଳ ପାହି ଆସିଲାଣି । ମୁଣ୍ଡ ଟିକ୍ ଟିକ୍ ବଥଉଥାଏ । କେମିତି ଦୁର୍ବଳ ହାଲିଆ ଲାଗୁଥାଏ । ସେ ଚାରିଆଡ଼େ ଆଖି ପକେଇ ଗଲେ । ଖାଲି ଖାଲି ଘରଟାକୁ ଦେଖି ତାଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା । ସ୍ୱପ୍ନଟା ସତ୍ୟପରି ମନେପଡ଼ୁଥାଏ । ଦୁଇମାସ ତଳର ଭୈରବଟା ସ୍ୱପ୍ନ ପରି ମନେପଡ଼ୁଥାଏ । ସେ କେମିତି ଗୋଟାଏ ଅଦୃଶ୍ୟ ଅଠାଳିଆ ଜାଲରୁ ମୁକୁଳିଗଲାପରି ହାଲୁକା ବୋଧକରୁଥାନ୍ତି ।

ସେ ଗାଧୁଆପାଧୁଆସାରି ପୁରୁଣା ଆଲବମ୍‌ଟିରୁ ତାଙ୍କ ବାପାଙ୍କ ଫଟଟିକୁ ଧରି ଦାଣ୍ଡଘରେ ଦେଖୁଥାନ୍ତି । ସ୍ତ୍ରୀ ଟାଳ ରହିଥାନ୍ତି କେତେବେଳେ ସୁଯୋଗପାଇ ସ୍ୱାମୀଙ୍କୁ ତାଙ୍କ ଦାୟିତ୍ୱ ବିଷୟରେ ସୂଚେଇ ଦେବେ । ଧୁନ୍ନ ବିଭୁ ପାଠପଢ଼ି ବସିଥାନ୍ତି ।

ରାସ୍ତାରେ ଗୋଟାଏ ଧଳା ଗାଡ଼ି ଆସି ରହିଲା । ଧଳା ଫର୍‌ଫର୍ ଟୋୟୋଟା ଜାପାନୀଗାଡ଼ି । ତାଙ୍କ ଆମ୍ବାସେଡ଼ୋରଠାରୁ ଢେର୍ ଭଲ । ପିଲାଏ ଚାହିଁରହିଥାନ୍ତି ଝରକାବାଟେ । ମିସେସ୍ ରାଓ୍ୱଲ ଦେଖିଲେ ଯେ, ଦିବ୍ୟସିଂହ ଚୌଧୁରୀ ଓହ୍ଲେଇ ଆସୁଛନ୍ତି । ସେ ତବତବ ହୋଇ ବୈଠକ ଘରୁ ଚାହିଁରହିଲେ । ସେମାନଙ୍କ ସହିତ ମିସେସ୍‌ଙ୍କର ଭାରି ଖୋଲା ବ୍ୟବହାର । ନହେଲେ ଏ ଯେମିତି ଲାଜକୁରା ଯେ, ଭଲ ମନ୍ଦଟିଏ ଧରି କେହି ଯଦି ଆସୁଥିବ, ସ୍ୱାଙ୍କୁ ଦେଖି ହୁରୁଡ଼ି ଚାଲିଯିବ ।

"ରାଓ୍ୱଲ ସାହେବ ! ମାଇ ବାପ୍ ! ଆପଣ ଏଠି ଆସି ଏମିତି ହଇରାଣ ହେଇଗଲେ ! ଆମକୁ ଖବର ଟିକିଏ ଦେଲେନାହିଁ । ଆମେ କ'ଣ ମରିଗଲୁଣି ? ଏ ଚୌକି, ଏ ଟେବୁଲ, ମା'ଙ୍କର ଏ ଶାଢ଼ି କ'ଣ ମୋତେ ଦେଖିବାକୁ ଯୋଗ ଥିଲା !" ସେ ଗୋଟାଏ ଭାବାବେଗରେ ଆଖିରୁ ଲୁହ ପୋଛିଦେଲେ ।

ଧନେଶ୍ୱର ରାଓ୍ୱଲ କିଛି କହୁନଥାନ୍ତି । ମିସେସ୍ ରାଓ୍ୱଲ ସତକୁ ସତ କାନ୍ଦ ପକାଇଲେ ।
"ଆରେ ଦିବ୍ୟସିଂହ ବାବୁ, ଆପଣ କେମିତି ଆମକୁ ମନେ ପକେଇଲେ ? ଆମର ତ ସବୁ ଏକାଥରକେ ସରିଗଲା ।...ଶୁଣନ୍ତୁ ମୁଁ ଆପଣଙ୍କ ପାଇଁ କଫି ଟିକିଏ ଆଣିଦିଏ ।"

"ନା ନା, ଆଦୌ କଷ୍ଟ କରନ୍ତୁନାହିଁ । ମୁଁ ଏ ଘରେ କ'ଣ ନଖାଇଚି ! ଏବେ ଶୁଣନ୍ତୁ । ମୁଁ ମୋର ଗୋଟାଏ ଆସିଷ୍ଟେଣ୍ଟ ମେନେଜର ପାଇଁ ଏ ଘରକୁ ଭଡ଼ା ନେଇଥିଲି । ଆସନ୍ତା ମାସକୁ ଏମିତି ଛ'ଜଣ ଛ'ଟା ଅଫିସ୍ କରି ରହିବେ । ଏଠି ଦେଢ଼କୋଟି ଟଙ୍କାର କାମ ଲାଗିଯିବ । କାଲି ଶୁଣିଲି ରାଓ୍ୱଲ ସାହେବ ସେ ସବୁ ତଦାରଖ୍‌ରେ ରହିବେ । ମୁଁ ଠାକୁରଙ୍କୁ କୃତଜ୍ଞତା ଜଣାଇଲି । ଓଃ, ନହେଲେ ଆଉ ଯେଉଁ ଲୁଙ୍ଗୁରା ଅଫିସର ସବୁ ଅଛନ୍ତି—ମାଛ ବେପାରୀ ପରି ଲକ୍ଷ ମିଛପାଇଁ ଦର କରୁଥିବେ । ହଉ, ଯାହାହେବାର ଦେଖାଯିବ । ଆଗେ ଆପଣ ଟିକେ ସୁସ୍ଥ ହେଇଯାଆନ୍ତୁ । ଏ ଘରେ ଆପଣ ରହିଲାଭଳି ଆଗ ବନ୍ଦୋବସ୍ତ କରିଦିଏ । ଆପଣ ବିନା କାର୍ପେଟରେ, ବିନା ଫ୍ରିଜ୍‌ରେ କେମିତି ଚଳିବେ ! ସୋଫା ନାହିଁ, ପଲଙ୍କ ନାହିଁ !! କିଛି ଚିନ୍ତା କରିବେନାହିଁ । ଆଜି ସନ୍ଧ୍ୟା ସୁଦ୍ଧା ସବୁ ଆସିଯିବ । ଆଉ ଏ ଘର ଆପଣଙ୍କର ବୋଲି ଧରିନଅନ୍ତୁ ! ଦରକାର ହେଲେ ଏ ଘରଟାକୁ କିଣି ନଆସିବ...।"

ଧନେଶ୍ୱର ରାଓ୍ୱଲ ଗଳା ସଫା କରିବାରୁ ସେ ଚୁପ୍‌ହୋଇଗଲେ । ଖୁସିରେ କୁରୁଳି ଉଠୁଥିବା ଅଫିସର ପତ୍ନୀ ଏବଂ ପିଲାଙ୍କୁ ଦେଖି ସେ କହିଲେ, "ପାଣିଗ୍ଲାସେ ଦେଲେ ଦେଖି, ମୁଁ ପିଏ ! ହେଃ, ରାଓ୍ୱଲ ସାହେବ ପୁଣି ଏମିତି ରହିବେ ।"

ସେ ତାଙ୍କ ବାପାଙ୍କ ଫଟୋଟିକୁ ଦେଖୁଥାନ୍ତି । ବିଲ୍ଟୁ ପଛରୁ ଆସି ଓହଳି ପଡ଼ିଲା, କହିଲା, "ହେଇ ଜେଜେଙ୍କ ଫଟ !"—ସେ ଜେଜେଙ୍କ ଫଟୋକୁ ଅସମ୍ଭବ ଭଲପାଏ । ସେ ଭାବେ ଯେ, ଜେଜେ କୁଆଡ଼େ ଯାଇଛନ୍ତି—ନିଶ୍ଚେ ଦିନେ ଆସିବେ ।

ଧନେଶ୍ୱର ରାଓ୍ୱଲ ଅପେକ୍ଷା କଲେ ଦିବ୍ୟସିଂହ ଚୌଧୁରୀ ପାଣିପିଇବା ପର୍ଯ୍ୟନ୍ତ । କହିଲେ, "ଚୌଧୁରୀବାବୁ ! ଆପଣ ମୋ ପାଇଁ ବ୍ୟସ୍ତ ହେବା କୌଣସି ପ୍ରୟୋଜନ ନାହିଁ । ମୁଁ ବର୍ତ୍ତମାନ ଖୁବ୍ ଆନନ୍ଦରେ ଅଛି !"

ଚୌଧୁରୀ ଗୋଟାଏ ନିଷ୍ପତ୍ତି କଲା ଢଙ୍ଗରେ ଉଠିପଡ଼ି କହିଲେ, "ବ୍ୟସ୍ତ ହେବା ନହେବା ମୋର ବ୍ୟକ୍ତିଗତ କଥା । ଏ ପରିବାରର ଟେକ, ଆଭିଜାତ୍ୟ କ'ଣ ମୋର ଦାୟିତ୍ୱ ନୁହେଁ ? ଆପଣ ଏମିତି ଗୋଟିଏ କାମ-ସରକାର୍ ଭଳି ଚଳିବେ; ଅଥଚ ମୁଁ ଆପଣଙ୍କ ପାଖରୁ ଦେଢ଼କୋଟି ଟଙ୍କାର ବିଲ୍ ଦସ୍ତଖତ କରିବାପାଇଁ ଆଣି ଯୋଇବି । ଅସମ୍ଭବ ? ନମସ୍କାର ଆଜ୍ଞା, ମୁଁ ଆସୁଛି !"

"ଶୁଣନ୍ତୁ ଚୌଧୁରୀ ବାବୁ ! ଚୌଧୁରୀ ବାବୁ !"

ତାଙ୍କ ସ୍ତ୍ରୀ ଆଗକୁ ଚାଲିଆସି ଅତ୍ୟନ୍ତ ଆପ୍ୟାୟିତ ଢଙ୍ଗରେ କହିଲେ, "ତୁମେ କାହିଁକି ଏମିତି ହଉଚ ! ତୁମେ ଚୁପ୍‌ହଉ ନ କାହିଁକି ! ସେ ତ ତା'ର କ'ଣ କରିବ କହୁଛି—ପୁଣି ଏମିତି କାହିଁକି ହଉଚ ?"

"ମାଛ କଣିବ, ମାଛ ।"

ଚୌଧୁରି ଗେଟ୍ ପାଖରେ ତାକୁ ଅଟକାଇଦେଲେ । ସେ ସାଇକଲ୍‌ରୁ ଓହ୍ଲେଇ ମୁଣ୍ଡ ନୁଆଁଇ ଓଳଗି ହେଲା । "କିରେ ପଞ୍ଚୁଆ, କି ମାଛ ରଖିଛୁ ।"

"ଅନ୍ୟ ମାଛ ନା, ଏ ଖଣ୍ଡ ରଜା ମୋ ସାଆନ୍ତେ । ଗୁରକେଜିଆ ଖଣ୍ଡେ ହେବ । ଏଇ ଗୁଣି ଆଣିଚ ତମଲାଗି !"

"କେତେ କହୁଚୁ ?"

"ତମକୁ ଆଉ କ'ଣ ଦର କରିବ ? ଷାଠିଏଟା ଟଙ୍କା ଦେଇପକାଅ !"

"ନେ ଧ । ମାଛ ନେଇ ସେ ମା'ଙ୍କୁ ଦେଇଦେ !"

ଟଙ୍କା ଧରେଇଦେଇ ଗାଡ଼ି ଗୁଡ଼ ଚାଲିଗଲେ ଚୌଧୁରି । ମାଛ ନେଇ ପଞ୍ଚୁଆ କାବା ହେଇ ଅନେଇଲା । ପିଣ୍ଡାରେ ମାଛଟିକୁ ଶୁଆଇଦେଲା । ମାଛ ଲାଞ୍ଜ ଟେକୁଥାଏ । ତଳକୁ ମୁଣ୍ଡ ପୋତି କହିଲା, "ଚୌଧୁରି ସାଆନ୍ତେ ଷାଠିଏ ଟଙ୍କା ଦେଇସାରିଲେଣି ।"

"କିରେ, ଆମେ ତ ମାଛ ଖାଇ ଶିଖି ନାହୁଁ, ଆମକୁ ମାଛ କେମିତି ଦେଲୁ ?" ନକହି ଗୁଡ଼ିଲେ ନାହିଁ ମିସେସ୍ ରାଓ୍ୱଲ । ସେ ମୁଣ୍ଡ ପୋତି ଚାଲିଗଲା । ମା', ପୁଅ, ଝିଅ ମାଛଟିକୁ ନେଇ ଚାଲିଗଲେ ଭିତରକୁ । ଧନେଶ୍ୱର ରାଓ୍ୱଲ ସତେ ବା ଆଲବମ୍‌ର ଚରିତ୍ରଟିଏ । ତାଙ୍କୁ ଦେଖିବାକୁ ଭଲଲାଗେ । ତଥାପି ତାଙ୍କୁ ଗୁଡ଼ାଏ ଖାତିର୍ କଲେ ଚଳିବନାହିଁ ।

ଦିବ୍ୟସିଂହ ତାଙ୍କୁ ମାଛଟାଏ ଦେବା ଆଦୌ କୌଣସି ଉଲ୍ଲେଖନୀୟ ଘଟଣା ନୁହେଁ । ସେ କ'ଣ ନଦେଇଚ ! କିନ୍ତୁ...

ଧନେଶ୍ୱର ଥରେ ବାପାଙ୍କ ଫଟୋକୁ ଚାହିଁ ଆଲବମ୍‌ଟିକୁ ବନ୍ଦ କରିଦେଲେ । ଦାଣ୍ଡ ପିଣ୍ଡାକୁ ଯାଇ ପଛରେ ହାତ ଛନ୍ଦିରଖି ଆଗକୁ ପଛକୁ ଅନେକ ଥର ବୁଲୁଥାନ୍ତି । ତାଙ୍କୁ ବିଶୁଆଏ ସନ୍ଧ୍ୟା ସୁଦ୍ଧା ସେ ଘରେ ମୋଟା କାର୍ପେଟ ପଡ଼ିଯିବ । ଗଡ଼ରେଜ୍ ସୋଫାସେଟ୍ ଥୁଆହେଇଯିବ । ଆଲମାରି ଫ୍ରିଜ୍ ଆଦି ଆସି ଭରି ହେଇଯିବ । ଆହୁରି ଆହୁରି ଅନେକ କିଛି...

ସେ ଅପନ୍ତରା ଠିଆହେଇଗଲେ । ତାଙ୍କୁ ଦିଶିଲା ଗୁଡ଼ାଏ କୋଠାଘର ଭୁସୁଡ଼ି ପଡ଼ୁଛି । ତା' ତଳେ ଚିତ୍କାର କରୁଛନ୍ତି ଗ୍ରେଟ ଗ୍ରେଟ ପିଲା । କେହି ଜଣେ ଇଟାଟାଏ ଟେକି ଧରି କହୁଛି—ଦେଖନ୍ତୁ, ଏଇଟା କଞ୍ଚା ଇଟା—ଦେଖନ୍ତୁ, ଏ ଯୋଡ଼େଇରେ ଚୂନ ଛୁଆ ବାଲି—ଦେଖନ୍ତୁ, ଏ ଲୁହା ଛଡ଼ ଜାଗାରେ କଣି କାଉଁଶ । ଦାୟୀ କିଏ ? କିଏ ?—ଉପରକୁ ଉପରକୁ ଆଖି ପାଇଲାଯାଏଁ ସମସ୍ତେ ଏମିତି ବୋହୁଷିଆ ଚକ୍‌କଣ ମୁହଁ ଦେଖେଇ ଚାହିଁ ରହିଛନ୍ତି । ତଳକୁ ତଳକୁ ସମସ୍ତେ ଆଖି ମିଟିକା ମାରି ଚାହିଁଛନ୍ତି । ରେଜା ମୁଣ୍ଡକୁ କୁଲି ମସଲା ଟେକିଲାବେଳେ କହୁଛି—ଏ ଘର ନିଶ୍ଚେ ଭୁସୁଡ଼ି ପଡ଼ିବ ! ଏ କାମ ସବୁ ଠକେଇ । ଆମ ମୂଲ ଏଠୁ ନେଲେ ଆମକୁ ଧର୍ମ ସହିବନାହିଁ । କାଲି ଏଠୁ ପଳେଇବା । ଜଙ୍ଗଲରୁ କାଠ ଦି'ଗୋଛା ଆଣି ବିକିଲେ ପେଟ ପୋଷିହେଇଯିବ ।

ଗାମୁଗ୍ର ଘୋଡ଼େଇ ହୋଇଥିବା ସେ ମଣିଷଟି ସ୍ୱପ୍ନରୁ ଲଭିନାହିଁ । ସେ ସେମିତ ତାଙ୍କୁ ଗ୍ୱହିଁରହିଛି । ସେମିତ ଝାଦାସ ମୁହଁ, ତାଙ୍କ ବାପାଙ୍କ ମୁହଁ ପରି । ତାଙ୍କୁ ସେ ସିଧାସଳଖ ଗ୍ୱହିଁ ପଗ୍ୱରଲେ, "ମୁଁ ତ ପୁଣି ପିଲାପିଲି ନେଇ ଚଳିବି—କେମିତି ଚଳିବି ? କେବଳ ଦରମାରେ ? ଦରମାରେ କ'ଣ ଚଳିହୁଏ ?"

ସେ ତାଙ୍କୁ ଉତ୍ତର ନଦେଇ ସେମିତ ଗ୍ୱହିଁରହିଲା । କେବଳ ବହୁ ଦୂରରୁ ଶୁଭିଲା 'ରୁ ପାଠ ପଢ଼ିବୁ' ବଡ଼ଲୋକ ହେବୁ । ସାତ ପୁରୁଷ ଉଦ୍ଧାର ହେବେ—କୁଳ ଉଜ୍ଜ୍ୱଳ ହେବ । ...ସାତ ପୁରୁଷ ଉଦ୍ଧାର ହେବେ—କୁଳ ଉଜ୍ଜ୍ୱଳ ହେବ । କୁଳ ଉଜ୍ଜ୍ୱଳ ହେବ !'

ଇସ୍ ! ତାଙ୍କ ଦେହ ବାରମ୍ବାର ଶୀତେଇଗଲା । ସ୍ୱପ୍ନରେ ପାହାଡ଼ ମଡ଼େଇ ହେଲା ପରି ପୁଣି ସେ ବୋଧକଲେ । ହାତ ମୁଠା ମୁଠା କରି ସେ କଟମଟ କରି ଗ୍ୱହିଁଲେ ଏବଂ ବୁକୁ ଭିତରୁ ଗୋଟାଏ ମସ୍ତ ବଡ଼ ପବନ ଓହ୍ଲେଇଗଲା । ...ସେ ଅନେକ ଉଶ୍ୱାସ ବୋଧକଲେ ।

ଟେବୁଲ ଉପରକୁ ଫେରିଯାଇ ସେ ଖଣ୍ଡିଏ ଚିଠି ଲେଖିଲେ ।

ଚୌଧୁରୀ ସାହେବ—

ଆପଣଙ୍କ ସ୍ନେହ ପାଇଁ ଧନ୍ୟବାଦ । ମାଛ ବାବଦକୁ ଷାଠିଏ ଟଙ୍କାର ଚେକ୍ ଏଥିରେ ଦେଲି । କିଛି ମନେ କରିବେ ନାହିଁ ।

ଆପଣ ଶୁଣି ଖୁସି ହେବେ ଯେ ମୁଁ ଅସୁସ୍ଥ ବୋଧକରୁଥିବାରୁ ସେନାପତି ବାବୁଙ୍କୁ ଏ କାମ ସବୁ ଦେଇଦେବାପାଇଁ ସ୍ଥିର କରିଛି । ଆପଣ ଏଣିକି ସେନାପତି ବାବୁଙ୍କୁ ଦେଖାକରିବେ । ଆହୁରି ଶୁଣି ଖୁସିହେବେ ଯେ, ମୁଁ ଏ ମାସ ଭିତରେ ଅନ୍ୟ ଘରକୁ ଗ୍ୱଲିଯାଉଛି । ଆପଣଙ୍କର ଆସିଷ୍ଟେଣ୍ଟ ମେନେଜରଙ୍କୁ କୌଣସି ଅସୁବିଧା ହେବନାହିଁ । ଆପଣ ଦୟାକରି ମୋ ପାଖକୁ ଆସିବା କଷ୍ଟ କରିବେନାହିଁ । ପ୍ରୟୋଜନ ହେଲେ ମୁଁ ଆପଣଙ୍କୁ ଦେଖା କରିବି ।

ଇତି
ଆପଣଙ୍କର ସ୍ନେହାନୁଗତ
ଧନେଶ୍ୱର

ଚେକ୍‌ଟି ତା' ସହିତ ଖଣ୍ଡିଏ ଲଫାପାରେ ରଖି ଠିକଣା ଲେଖିଲେ । ଖୁବ୍ ହାଲୁକା ଅକ୍ଷର । ତାକୁ ଥୋଇଦେଇ ସେ ଅଗଣାଆଡ଼େ ଗଲେ । ଖୁବ୍ ହାଲୁକା ହାଲୁକା ହସ ଏବଂ ଗ୍ୱଲି । ମାଛକଟା ପାଖରୁ ପତ୍ନୀ ତାଙ୍କୁ ଦେଖି ଖୁବ୍ ଆଶ୍ୱସ୍ତ ଜଣାଗଲେ । ଓଃ, ତା'ହେଲେ ମେଘ ଗ୍ୱହିଁଗଲା !

ଧନେଶ୍ୱର ବାବୁଙ୍କ ମୁହଁରେ ଏତେ ପରିଷ୍କାର ହସ ସେ ଅନେକ ଦିନରୁ ଦେଖିନଥିଲେ ।



# ପାତାଳ ଗଙ୍ଗା

ସେଠିକା ଖରା ବିଷୟରେ କଥାରେ କହି କିଛି ଲାଭନାହିଁ ! କମାରଶାଳର ଧାସ ଭଳି ସେ ଝାଞ୍ଜି ଖରାରେ ଥରେ ଭାଜ ନହେଲେ କେହି ବିଶ୍ୱାସ କରିବେ ନାହିଁ । କେମିତ ଏକାବେଳେ ଆକାଶ ପବନ ପୃଥିବୀରେ ନିଆଁ ଲାଗିଯାଏ । ଶୁଷ ଜମିଉପରୁ ଧୂଳି ଉଠିଯାଏ । ପୋଖରୀ ଫାଟି ଫଡ଼ା ଫଡ଼ା ହୋଇଯାଏ । ପତ୍ର ଝାଡ଼ି ଦେଇ ଗଛସବୁ ଠିଆରେ ଜଳଯାନ୍ତି ! ଶହ ଶହ ଶୋଷିଲା ପକ୍ଷୀ ଖସିପଡ଼ନ୍ତି । ଗାଈ ଗୋରୁ ଧକୋଉଥା'ନ୍ତି ସକାଳୁ ସଞ୍ଜଯାଏ । ମୁହାଏ ପାଣିପାଇଁ ମଣିଷ ପାଟି ପାକୁ ପାକୁ କରି ପଡ଼ିଥାଏ ବେଳେବେଳେ ସେମିତ ମରି ବି ଯାଏ ।

ସେ ଅଞ୍ଚଳରେ ଯେଥିପାଇଁ ଯେତେ ସବୁ ଥିଲା ବାଲି ଖର୍ଚ୍ଚ କରି ଜଳକାରିି ରଖିଯାଇଛନ୍ତି । ଏବେ ଠାଏ ଠାଏ ନୂଆ ମାଟି-ଘୁମୁମାନଙ୍କରେ ନାଲି କନା ଘୋଡ଼େଇ, ମଲ୍ଲୀକଢ଼ ବେଢ଼େଇ ପାଣିଛତ୍ର ଦିଆହୁଏ । ଗୋରୁଙ୍କପାଇଁ ପାଣି କୁଣ୍ଡ ଭରି କରି ରଖନ୍ତି ଦାତାମାନେ ! ପାଣି ମୁହାକରେ ଉଡ଼ିଯାଉଥିବା ହଂସା ଲେଉଟି ଆସେ । ପ୍ରାଣ ଝୁଲି ରହିଥାଏ ଢୋକେ ପାଣି ଉପରେ !

ସେ ନୂଆ ସାହିଟା ଆସି ଦୁଇ ପୁରୁଷ ହେବ, ସହର ଲଗ୍ଗରେ ବସିଗଲାଣି । ଟୋକା ବୟସରେ ଯେଉଁମାନେ ଆସିଥିଲେ ସେଇଠି ଘରଭଲ ଢୋଲ ରହିବା ପାଇଁ, ସେମାନେ ଏବେ ବୁଢ଼ା ହେଇଗଲେଣି ! ସେମାନଙ୍କ ପିଲମାନେ ଅଧାଡ଼ିଆ ଖସିଲା ବୟସର ବାପ ମା' ହେଇଗଲେଣି । ନାତି ନାତୁଣୀ ବଢ଼ି ଆସିଲେଣି ଭେଣ୍ଡିଆ ଗଜା ଟୋକାଟୋକୀ ହେଇ । ସେଇମାନେ ଏଣିକ ଅଂବୋଉସିବେ ସେ ସାହିଟାକୁ । ସମସ୍ତେ କହନ୍ତି ଗୋଟାଏ ଖରା ରିତୁ ପାରହେଲେ ନୂଆ ଜନ୍ମଟାଏ ପାଇଲପରି ମଣନ୍ତି । ଖରାଟା ଦଉଡ଼ିବା ଜଳନ୍ତା ଅଗ୍ନି-କୁଣ୍ଡଟାଏ !

ଦୋଳପୂର୍ଣ୍ଣିମୀ ବେଳକୁ ଖରାତେଜ ସେଇଠି ଅସହ୍ୟ ହୋଇଯାଏ । ଫଗୁ ଖେଳକୁ ସକାଳ ଓଳି ଫେରିଲାବେଳକୁ ଓଠ ଶୁଖିଯାଏ । ଟାଳୁ ଫଟା ଖରାରେ ମୁଣ୍ଡ ଝାଇଁ ଝାଇଁ ହେଇଯାଏ । ଜିଭ ଭଡ଼ିନଏ । ସେତକବେଳକୁ ପାଣି ନିଅଣ୍ଟ ହୋଇଆସେ ! କେତେ ମାତବ୍ବର ଲୋକେ ପାଣିକୁଣ୍ଡରେ ରଙ୍ଗ ଗୋଳି ପିଚକାରି ଖେଳନ୍ତି । ନୋହିଲେ, ସାଧାରଣ ଲୋକଙ୍କର ସେଇ ଢାଳେ ଦୁଇଢାଳ ପାଣିର ଖେଳ । ସେତକ ସାରଦେଇ ସେମାନେ ଅନ୍ୟମାନଙ୍କ ରଙ୍ଗରେ ଓଳନ୍ତିବାକୁ ଠେଲାପେଲା ହେଉଥାନ୍ତି ।

ସେଦିନ ରଙ୍ଗ ଖେଳ ବେରେ ନାଥ ସ୍ୱାଇଁ, ମାଧବ ବେହେରା, ଗଜ ରଥ ପରୁ ଭେଣ୍ଡିଆ ପୁଅମାନେ ଆସି ସାହିର କୂଅ ମୂଳେ ରଙ୍ଗ ଛଡ଼େଇ ହେଲେ । ପାଣି ବୋହିଯାଇ ନୂଆସାହି ଆରପାଖ କ୍ଷେତରେ ମାଡ଼ିଗଲା । ଝଣ୍ଡେ ବାସ୍ନା ସାବୁନକୁ ଦେହସାରା ଫେଣ ଗଜଗଜ କରି ଜନହେଁ ଅତି ଉତ୍ପାତ ହୋଇ ଗାଧୋଉଥାନ୍ତି । ହସି ହସି ଗଡ଼ିଯାଉଥାନ୍ତି । ଘୃଣ ଉହୁଙ୍କାରେ କୂଅରୁ ପାଣି ଝିଙ୍କି ଆଣୁଥାନ୍ତି ଅନାୟାସ ! ଭୁସ୍ ଭୁସ୍ ଢାଳ ହେଉଥାନ୍ତି ବାଲ୍ଟି ବାଲ୍ଟି ପାଣି ! ଜନଜଣଯାକ ବଳୁଆ, ଷଣ୍ଡାମାର୍କା ଟୋକା; ଯାହାଙ୍କ ଉପରେ ସେ ସାହିଆଡ଼େ କେହି ମୁହଁ ଟେକି ଚାହିଁପାରେ ନାହିଁ । ରାତିରେ ଚୋର ସାହସ କରେନାହିଁ ସେ ପାଖ ପଶିବାକୁ । କୋଡ଼ିଏ ଘର ସାହିଭିତରୁ ସେଭଳି ଚୋରପୁଷ୍ଟା ଟୋକା ବଢ଼ି ଆସିଲେଣି । ହେଲେ ଏ ଜନଜଣଙ୍କୁ ଏକାଠି ମୁକାବିଲା କରିବାପାଇଁ କାହାରି ସାହସ ନାହିଁ ।

ସେ କୂଅଟି ନୂଆ ସାହିର ଜୀବନନଳୀ । ସେଥିରୁ ପାଣି ନେଇ ସାରା କାମ ଚଳେ । କୂଅ ଅକ୍ଷିପରି ନିର୍ମଳପାଣି ଯେମିତି କାକର ସେମିତି ସୁଆଦ । ବେଶି ସେମିତି ଗହୀର ନୁହେଁ; କାରଣ ବାର ହାତ ତଳକୁ ଅକର୍ମାଣିଲା ଟାଏ ହାବୁଡ଼ିଗଲା । ଆଉ ତଳକୁ କାଙ୍କ ଗଲାନି ନାହିଁ; କିନ୍ତୁ କେମିତି କେଜାଣି ଗୋଟାଏ ଝର ମଧ୍ୟ ପଶ୍ଚିମପଟରୁ ଫିଟିଗଲା ସେଇଠି । ହେଇପାରେ ଉପରମୁଣ୍ଡା ପୋଖରୀରୁ ମାଇଲଏ ଦୂରରେ ପୂର୍ବପାଖ ପୋଖରୀକୁ ମାଟିତଳେ ସୁଅ ପଡ଼ିଛି । କୂଅଟା ସେଇ ଶିର ଉପରେ ଆସିଗଲା । ହୋଇପାରେ ସେଇଟା ସେ ନୂଆ ସାହିବାଲାଙ୍କ ଭାଗ୍ୟ । ସେ ସୁଅ ବର୍ଷସାରା ଝରୁଥାଏ । ଖାଲି ଝରା ଜନମାସ ପାଣି ନିଅଣ୍ଟିଆ ହୋଇଯାଏ । ପିଇଲା ଗରା ବୁଡ଼େନାହିଁ । ଦେଖୁ ଦେଖୁ ଢାଳ ମଧ୍ୟ ବୁଡ଼େନାହିଁ । ଗୋଟିଏ ଗ୍ରେଟିଆ ଖୋପରେ ଝିର୍ ଝିର୍ ଯେଉଁ ମୁନ୍ଦାଏ ପାଣି ରାତିଯାକ ଭିତରେ ଜମିଥାଏ, ତାକୁ ପିଇବାପାଇଁ ନେବାକୁ କୂଅମୂଳେ ବାଦ ହୁଏ । କଳିଗୋଳ ମଧ୍ୟ ହୁଏ । ବୁଢ଼ାମାନେ ତ ଦେଖି ଆସିଛନ୍ତି ବହୁକାଳ । ସବୁ ଝରାରେ ସେମିତି । ସେମାନେ ଯାଇ ସମାଧାନ କରନ୍ତି ।

ଦୋଳପୂର୍ଣ୍ଣିମୀରେ ସେ ଜନଟା ଟୋକା କୂଅ ପାଣିକୁ ସେମିତି ଫିଙ୍ଗା ଫୋପଡ଼ା କରି ଢାଳିବା ଦେଖି କାହା ଦେହ ସହିଲାନାହିଁ । ମାଇକିନିଆମାନେ ଚୁପ୍ ଚାପ୍ ହେଲେ । ରବେଇ ଝବେଇ ହେଲେ । ସ୍ୱାଙ୍କୁ କିଏ ରୋଧିବ ? ପାଣି ହେଲା ପ୍ରାଣ । ସ୍ୱାଙ୍କ ଅଗୁଆଁର ପଣ ପାଇଁ ସାହିଯାକ ଚୁଡ଼ୁ ବୁଡ଼ୁ ହୋଇ ମରିଯିବେ !

ମନ୍ଦିରରୁ ଫେରୁଥିଲେ ଦନା କକେଇ । ସେ ସେଇଠି ଠିଆହୋଇ ସେମାନଙ୍କୁ ଚାହିଁଲେ, କହିଲେ—"କରେ ଇଏ କ'ଣ କରୁଛ ?—ଗାଧୋଇବାକୁ ନଈକୁ ଗଲନାହିଁ ? ଜନକୋଣି ବାଟ କ'ଣ ତମକୁ ବଳେଇଗଲା ଯେ, ଏଇ ପାଣି ମୁନ୍ଦାକ ଏମିତି ସାରିଦେଉଛ ? କେମିତି ନିଅଣ୍ଟିଆ ଦିନ ଆସିଲାଣି ତୁମକୁ ଦିଶୁନାହିଁ ?"

ସେମାନେ ଥମିଗଲେ, ଜଣେ କହିଲା—"ଆମେ ଯିବାକୁ ବସିଥିଲୁ ଯେ କେଉଁ ଆଜି ସବୁ, ଶୁଣିଲୁ ନଈରେ ତ ଧାର ନଥିଲା ! ଯେଉଁ ଚଦକାଏ ପାଣି ଅଟଡ଼ାଖିଆ ଆଡ଼କୁ ଥିଲା, ସେଇଟା କୁଆଡ଼େ ଗୋରୁଗୋଠ ପଡ଼ି ପିଇଗଲେଣି ।"

"କରେ, କରେ ତେବେ ଏ ପାଣିମୁନ୍ଦାକୁ ଏମିତ ଫିଙ୍ଗନାହିଁ, ଏତକ ଆମ ପ୍ରାଣ !"

ଦନା କେଉଁ କଥାରେ ଅଜ୍ଞାତ ଭୟଟାଏ ଗୃହିଁ ଗୃହିଁ ଭେଦିଗଲା—ଝଗି ତେଜ ଆଉ ସହିହେଲା ନାହିଁ । ସେମାନେ ଢଳକୁ ମୁହଁ ପୋଡ ଗାମୁଚ୍ଛା ଚପୁଡ଼ିଲେ—

ଦେଖୁ ଦେଖୁ ଚୈତ୍ର ମାସ ମାଡ଼ି ଆସିଲା । ତା' ସାଙ୍ଗେ ମାଡ଼ିଆସିଲା ରକ୍ତମୁହାଁ ବାଘ ପରି ଖରା ! ସାନ ବାରହାତିଆ କୂଅଟି ଦେଖାଗଲା, ମେଲା ହୋଇ ଧକଉଥିବା ପାକୁଆ ପାଟିପରି । କୂଅ ତଳେ ଆଉ ପାଣି ନାହିଁ । ଶୁଖିଲା, ଅକର୍ମଣିଲା କଉଁଚ ପିଠିପରି ନିଶ୍ଚଳ ଆବୋରି ରହିଛି । ପଶ୍ଚିମପଟୁ ସେ ସୋରିକପାଣି ଦ୍ୱିତୀୟା ଜହ୍ନଟିଏ !

କିଛିଦିନ ହେଲା ମାଇକିନିଆମାନେ ଖୁମ୍ପୁରି ଖୁମ୍ପୁରି ହେଲେଣି । ପାହାନ୍ତିଆ ପହରକୁ କୂଅ ଏକାଥରେ ଚଟାଚଟି ହୋଇଯାଉଛି । ସମସ୍ତଙ୍କ ମନରେ ସନ୍ଦେହ । ଜଣେ ଭାବୁଛି ଯେ, ଆଉ ଜଣେ ରାତି ଅଧରୁ ପାଣିରେ ଡଙ୍କି ପକେଇ ସାରି ନେଉଛି । ବୋହୂ ଭୁଆସୁଣୀ ଝାଲ ଗରି କାଟେଇ ଫେରିଆସୁଛନ୍ତି । ଟୁପି ଦେଉଛନ୍ତି ଶାଶୁମାନଙ୍କୁ । ସେଇ ଝଣ୍ଡାଖାଇ ଶାଶୁମାନେ ଲଗିଯାଉଛନ୍ତି ଚଟିଆ ଯୁଦ୍ଧ । ସାନ ପିଲାମାନେ ସେ କଳିରେ ରମ୍ପାଝମ୍ପା ହୋଇଯାଉଛନ୍ତି । ସମସ୍ତେ ଗୃହିଁ ଦେଉଛନ୍ତି କୂଅ ଭିତରକୁ । ଯେଉଁଠି ସମସ୍ତଙ୍କର ଭାଗ୍ୟ ସତେ ବା ଲୁଚିରହି ଚକ୍ ଚକ୍ କରୁଛି ।

ସେଦିନ ପ୍ରଚଣ୍ଡ ଖରା । ସନ୍ଧ୍ୟବେଳକୁ ପାଖ ପାହାଡ଼ରୁ ନିଆଁ ଧାସ ସାଙ୍ଗକୁ ଗୋଟାଏ ତାତିଲା ଧୂଳିଝଡ଼ ମାଡ଼ିଆସିଲା । ସେତିକିବେଳେ କିଏ ଆସି କହିଦେଲା ଯେ, କୂଅ ସମ୍ପୂର୍ଣ୍ଣ ଶୁଖିଗଲା । ଆଉ ଜମା ପାଣି ନାହିଁ । ସମସ୍ତେ ଚମକିପଡ଼ିଲେ । ଧାଇଁଗଲେ ଗୃରିଆଡ଼ୁ କୂଅମୂଳକୁ । ଟିଣ ଡବାଟାକୁ କୂଅ ଗର୍ଭର ଶୁଖିଲା ପଥର ଉପରେ ସମସ୍ତେ ଥରେ ଲେଖା ଗଡ଼େଇଲେ । ପାଣିର କଳକଳ ଶୀତଳ ଓଦା ଶବ୍ଦ କାହାକୁ ଶୁଭିଲା ନାହିଁ । ଶୁଖିଲା ଟିଣ, ଶୁଖିଲା ପଥର ଉପରେ ଦୋପାଶବାର ନିର୍ମମ ଟଣର ଟଣେର ଶବ୍ଦ ଶୁଣି ସମସ୍ତଙ୍କର ଦୀର୍ଘଶ୍ୱାସ ବାହାରିଆସିଲା । ସମସ୍ତେ ଜାଣିଗଲେ ଯେ, କୂଅ ସତକୁ ସତ ଶୁଖିଗଲା । ତନ୍ନ ଝୁରୁଝୁ ହେଲା ଅନବରତ ବୋହୁଥିବା ଝରଟି ଶୁଖିଗଲା ।

ତେବେ କ'ଣ କରିବା ? ଭେଣ୍ଡିଆ ପିଲାଙ୍କ ପାଟି ବେଶି ଶୁଭିଲା—"ଆମେ ସେ ପଥର ଫଟେଇ କୂଅକୁ ଆଉ ଦଶହାତ ଗହୀର କରିଦେଲେ ହୁଅନ୍ତାନାହିଁ ?" ପୁରୁଣା ଲୋକେ କହିଲେ, ସେ ପଥର ଅକର୍ମଣିଲା । ସେ ଜମା କାନେଇବ ନାହିଁ ତୁମ ନିହାଣ ମୁଗୁରକୁ ! ପୁଣି କହିଲେ, "ପଥର ଫଟାଳିଙ୍କ ମୂଲ ଅସମ୍ଭବ ବଢ଼ିଗଲାଣି । ସେମାନେ ହାତେ କାଟିବାକୁ ଶହେ ଟଙ୍କା ମାଗିବେ । କୋଉଠୁ ଦବ ଏତେ ପଇସା ?"

''ପଥର ଫଟେଇଲେ ପାଣି ପଡ଼ିବ ବୋଲି କ'ଣ ଭରସା ? ଏଇଟା ଯଦି ଭୂଗର୍ଭର ପାହାଡ଼ଶିଖ ହୋଇଥାଏ, କେତେ କାଟିବ ପଥର ? କୋଉଯାଏ କାଟିବ ?"

ସନ୍ଧ୍ୟା ଅନ୍ଧାର ଭିତରୁ ଅନ୍ୟାନ୍ୟ ସ୍ୱର ଶୁଭିଲା, "ଆରେ ଅନ୍ୟାୟ ଅନାଚାର ବଢ଼ିଗଲା ! ଗଙ୍ଗା ରୁଷ୍ଟ ହୋଇଯାଇଛନ୍ତି । କାଲି ତାଙ୍କୁ ସନ୍ତୁଷ୍ଟ କରିବାକୁ ପୂଜାଟାଏ କରିଦିଅ । ସେ ପୁଣି ଝରିଆସିବେ ।"

ପିଡେଇ ନାନା ସ୍ୱର ପରେ ଚନ୍ଦ୍ରିକା ସ୍ୱରଟାଏ ଶୁଭିଲା, "ସେଇ ଅଲକ୍ଷଣୀ ପିଶାଚୁଣୀ କାଲି ସବୁ ଶୋଷିଦେଲା ! ସେଇ ଥିବାଯାକେ ଏ ସାହିର ମଙ୍ଗଳ ନାହିଁ ! ସେଇ ଡଣେଇ ବୁଢ଼ୀ, ପୁତଖାଇ ସମସ୍ତଙ୍କ ରକ୍ତ ଶୋଷୁଛି ।"

ଆଉ ଜଣେ ସେମିତି କଥା ଛନ୍ଦେଇଲେ, "ହଇ, ହଇ, ସେଇ ବୁଢ଼ୀ ରାତିସାରା ହଗୁର-ପଦାରେ ଚରି ଚରି ପେଟ ପୂରଉଚି । ଅଣ୍ଟୁନାହିଁ ବୋଲି ଆମର ରକ୍ତ ମାଉଁସ ଖାଇ-ଗଲାଣି ।"

ଦେଖୁ ଦେଖୁ ଅଣ୍ଡିରା କିଏ ଜଣେ ପାଳି ଧରିଲା "ସେ ମିସ୍ତାଣିବୁଢ଼ୀ କାଲ୍ଟେ ଏ କୂଅ ଭିତରେ ମୁହଁ ବୁଡ଼େଇ ଶୋଷି ନେଇଛି । ଡଣେଇ ପାଇଁ କିଛି ବଚନ ନୁହେଁ ।"

..."କାଲି ସେ କୂଅମୂଳେ ବସି ମନକୁମନ ଗାରେଡ଼ି ଜପୁଥିଲା, ମନକୁମନ ହସୁଥିଲା, ଆଖି ଉପ୍ଟି ହାତକୁ ତନ୍ତ୍ରୀ କଣ୍ଠାପର ଗୁଣ୍ଟୁଥିଲା ।"

..."ମୁଁ ଦେଖିଛି, ସେ ଶୋଷରେ ଓଠ ଚାଟି ବୁଲୁଥିଲା । ଆଜି ଦ'ପହରେ ସେ କୂଅମୂଳେ ଘେଉ କାଟୁଥିଲା—"

...''ଆରେ, କଥା ଏଇଠି । କ'ଣନା ବାରଅଡ଼େ ଆମେ ଭୁଛାରେ ଦରାଣ୍ଡି ହେଉଚେ । ସେଇ ଡଣେଇ ବୁଢ଼ୀ ତ' ଚାହିଁଦେଲେ ପାଣି ଶୋଷି ନେବ । ମୁହଁ ମାଣିବା ଦରକାର କ'ଣ ?"

ମିସ୍ତାଣିବୁଢ଼ୀ, ଡଣେଇ ! ମିସ୍ତାଣୀ ପୁତଖାଇ ! ମିସ୍ତାଣୀ ସାଇର ଅଶାନ୍ତି । ସେଇ ଶୋଷି ନେଇଛି ଜୀବନନଳୀ ପରି କୂଅର ପାଣି ଧାରକୁ ।

ସାଇଁ ସାଇଁ ଧୂଳିଝଡ଼ ପିଟିଯାଉଥାଏ । ଛୁଞ୍ଚିପରି ଫୋଡ଼ି ହୋଇଯାଉଥାଏ ବାଲି । ସନ୍ଧ୍ୟା ଅନ୍ଧାର ପାର ହୋଇଯାଉଥାଏ ।

ସାଇସାକ ମାଇକନିଆ ମନ୍ଦା ମନ୍ଦା, ଅଣ୍ଡିରା ଗୋଷ୍ଠ ଗୋଷ୍ଠ, ପିଲାଏ ଭେଲା ଭେଲା । ସମସ୍ତେ ଶୋଷିଲା । ସବୁଠି ଟୁପୁର ଟାପର ଚାଲିଛି । ଗୋଟିଏ କଥା ସମସ୍ତେ ଫୁସ୍‌ଫାସ୍ ହଉଛନ୍ତି । ସାରା ସାଇ ପାଖେ । କଥାଟା ଆରପାଖେ । ସେଇ ସମସ୍ତଙ୍କୁ ଖାଉଛି । ତାକୁ ସମସ୍ତେ ନମିଶିଲେ ପାରିବେ ନାହିଁ ।

ଦଶମୀ ଜହ୍ନ ନର୍ମିତ ଆକାଶରୁ ରାଉରାଉ ଉଜଳ ଉଠିଲା । ରାତି ଦୁଇପହରଯାଏ ମନ୍ତ୍ରଣା ଚାଲିଥାଏ । ପବନ ଟିକିଏ କାକର ପଡ଼ି ଆସିଥାଏ । ସ୍ଥିର ହେଲା ସେ ଡଣେଇର ମୁକାବିଲା କରାଯିବ ।

ସତ ହେଇଗଲେ ତା'ର ବଳ ଚଢ଼ିଯାଏ ଦଶଗୁଣ । ତଣ୍ଟେଇ ତା'ର ଅଢ଼େଇ ପଦକୁ ଲେଉଟିଆ ବୋଲିଦେଲେ ତା' ଦାନ୍ତର ଦାଢ଼ ଭେଙ୍ଗିଯାଏ । ସେ ଯେତେବେଳେ ଗୋଟାଏ ପାଇଲେ ରେକେଟି ଦେଇପାରେ । ପୁଞ୍ଜାଏ ଭେଣ୍ଡାଙ୍କୁ ଚୁଟିଧରି ଶୂନ୍ୟରେ ଟେକି ନେଇପାରେ ।

ସମସ୍ତେ ପାଖେଇ ଆସିଲେ । ମନ୍ଦାଗୁଡ଼ିକ ନବଡ଼ ହୋଇଗଲା । ସମସ୍ତେ ଆସ୍ତେଇ ଆସ୍ତେ ଫିସ୍‌ଫିସ୍ କଥା କହିଲେ । ଖଡ୍ କରି କ'ଣଟାଏ ହୋଇଗଲେ ହାତେ ଲେଖା ଡେଇଁ ପଡ଼ୁଥାନ୍ତି । ଚମକିଲେ ବୁକୁରେ ଛେପ ପକଉଥାନ୍ତି ।

ଏଡ଼ିକ ଟିକିଏ ବୁଢ଼ୀ । ପାଚିଲା ହାଡ଼ର ପକ୍ଷୀପରି ହାଲୁକା ଦେଣା । ମୁଣ୍ଡରେ ଫୁଲୁଫୁଲୁ ଧଳାବାଳ । ଆଲୁରୁ ବାଲୁରୁ ପିନ୍ଧା । ବାଘୁଣୀ ପରି ହାତରେ ବେକରେ ଗୋଡ଼ରେ କରଗଡ଼, ବବୁଲ ଫଳ ଯୋଡ଼ି ଯୋଡ଼ି ପିନ୍ଧିଥାଏ । ମନକୁ ମନ ବଡ଼ ବଡ଼ ହେଉଥାଏ । ସେ ପୁଣି ଏମିତ ? ଏଡ଼ିକ ପୁଣି ଶକ୍ତ ତା'ର ଯେ ପୁଞ୍ଜାଏ ଭେଣ୍ଡିଆଙ୍କୁ ଶୂନ୍ୟରେ ଟେକି ନେଇଯିବ ?

ଧନା କକେଇ କହିଲେ, "ଆରେ, ମୁଁ ପିଲାବେଳୁ ତାକୁ ଯେମିତ ଦେଖି ଆସିଛି ପରା । ତାକୁ ଆଜି ପାନେ ଦବାକୁ ହବ ! ମୁଁ ଗାୟତ୍ରୀ ଜପିଦେଲେ ସେ ମୋତେ ଛୁଇଁ ପାରିବ ନାହିଁ । ତାକୁ ଆଗ ଧରି ତା' ବଦ୍ୟା ମାରି କରିଦେବାକୁ ହବ । ତାକୁ ଦୁଇଜଣ ଧରି ତା' ପାଟି ମେଲା କରିଦେଲେ, ମୁଁ ତା' ବ୍ୟବସ୍ଥା କରିଦେବି । ଏବଠୁ ଘଣ୍ଟାଏ ଯାଏ ମୁଁ କଡ଼ା ପାନ ପାଟିରେ ଜାକିଧରି ମନ୍ତ୍ର ଜପିବି । ସେଇ ମନ୍ତ୍ରରୀ ପିକ ପାଟି ଭର୍ତ୍ତି ହୋଇଗଲେ ତାକୁ ତା' ପାଟିରେ ପୁଚୁକି ଦେବି । ସେଥିରେ ତ ବ୍ରହ୍ମ ରାକ୍ଷସ ଗୁଡ଼ିଯିବ । ଏଇଟା ତ କଞ୍ଚାଖାଇ ତଣ୍ଟେଇଟାଏ ।"

ହରିଆ ମଲ୍ଲ କହିଲା, "ଖାଲି କ'ଣ ସେତିକି କକେଇ । କାଉଁରୀ କାମଚଣ୍ଡୀ ଦେଶରେ ଗୁଣିଆଙ୍କୁ ମୁଁ ଦେଖିଛି । ଗୋଟାଏ ଡେନ୍ଗୁଳି କାଠର ପୋଡ଼ାଖୁଣ୍ଟା ଆଉ ଢାଳେ ଅଣ୍ଡିରି ମୂତ । ତାକୁ ସେଇ ପାଟି ମେଲାକରି ମୂତଯାକ ପିଆଇଦେବ ଜଣେ । ଆଉ ଜଣେ ପୋଡ଼ା ଖୁଣ୍ଟାରେ ଲଛି ନେଇଯିବ ଦେହସାରା—। ଠକ୍‌କନା ତଣ୍ଟେଇ ଓହ୍ଲେଇଯିବ । ସବୁଦିନକୁ ତା' ବଣଦାନ୍ତ ଝଡ଼ିଯିବ ।"

ଭେଣ୍ଡିଆମାନେ ଉନ୍ମତ୍ତ ପ୍ରାୟ । ମାଇକିନିଏ ଗ୍ରୁନଅାଁ ଗ୍ରୁନଅାଁ ତରଲା ତରଲା ପରି ଆଉଜି ଯାଉଥାନ୍ତି ଏପାଖ ସେପାଖ । ଆୟୋଜନ ଗ୍ଳଲା । ଧନା କକେଇ ଏ କଳରେ ଖଣ୍ଡେ ସେ କଳରେ ଖଣ୍ଡେ ଅପଲ କଡ଼ା ପାନ ଜାକି ବସିଗଲେ । ହରିଆ ମଲ୍ଲ ଡନ୍ଗୁଳି କାଠ ଖଣ୍ଡେ ଚୁଲିରେ ମାଡ଼ିଦେଇ ବାହାରି ଆସିଲା ।

କାହାକୁ ନିଦ ନାହିଁ, କାହାକୁ ଭୋକ ନାହିଁ । ସାରି ସାହି ଛନ୍‌ଛନ୍ । ଠୋକରୀ ଶୁଖିଲା ଳୂଅମୂଳ ନଗ୍ରୁଟିଆ, ଅଲକ୍ଷଣିଆ ! ପାଣି ଶୁଖିଯାଇଛି ସାହିଟାରୁ ।

ଧନା କକେଇ ଗୁଁ ଗୁଁ ହୋଇ ହାତରେ ଠାରଲେ । ଅନ୍ୟମାନେ ବୁଝିଗଲେ ଯେ, ପାନ ପିକ ମନ୍ଦୁର ହେଇଗଲା । ହରି ମଣ୍ଡ ଜଳନ୍ତା ପୋଡ଼ ଖୁଣ୍ଟାଟାଏ ହାତରେ ଧରି ଆସି ଠିଆ ହେଲା । ସମସ୍ତେ ଆଡ଼େଇ ହୋଇଗଲେ । ବାଁ ହାତରେ ରସ ଡାଲଟାଏ ଧରିଥାଏ ସେ । ଦେଉଣ୍ଡିଆ ଟୋକାମାନେ ମାଲକଚ୍ଛ ମାରି ଅଣ୍ଟାରେ ଗାମୁଛା ଭିଡ଼ିନେଲେ । ମାଇକିନିଆମାନେ ଛେପ ଢୋକି ଦୁଆରବନ୍ଧକୁ ଧରି ଚାହିଁ ରହିଲେ । କାହାରି ପାଟିରୁ କଥା ବାହାରୁନଥାଏ । ତଶ୍ୱେଇ ମାରଣ ହେବ । କ'ଣ ହବ କିଏ କହିବ ? ନିଜ ନିଜ ପୁଅ ଘଇତାଙ୍କୁ ଓଟାରେଇ ନେବାକୁ ସେମାନଙ୍କର ମନ ଖଳଖଳ ହଉଥାଏ । କିନ୍ତୁ ସାଇ କଥା, କେମିତି ଅଲଗା ହେଇଯିବେ ?

ଘରଆଡ଼କୁ ଚାହିଁ, ଅଳ୍ପ ଡକାହକା ହେଇ ସମସ୍ତେ ଆଗେଇଲେ ପୂର୍ବମୁହାଁ । ସେଇଆଡ଼େ ସାଇଠାରୁ ଅଲଗା, ଖଣ୍ଡେ ଖପରଲ ଘାଁଟି ଘରେ ମିସ୍ତାଣୀ ରହେ । ତା' ଘରେ ଏବେ ତା' ନାତୁଣୀ ନାତୁଣୀଜୋଇଁ ରହୁଛନ୍ତି । ବୁଢ଼ୀ ପିଣ୍ଡାରେ ଖଟିଆ ପକେଇ ଶୋଇଥାଏ ଧନଯାତ୍ରୀ । ସିଡ଼ରେ ସେଇଠୁ ଉଠି ଚରି ବୁଲିଯିବାକୁ ସଜହୁଏ । ବାଘ ଖେଦାକୁ ଗଲାଭଳି, ନିଃଶବ୍ଦ ପାଦ ଟିପି ଟିପି ସମସ୍ତେ ଚାଲିଥାନ୍ତି । ଚାଲିକୁ ଚାଲି ଲାଗିରହିଥିବା ସାଇର ଘର ଗୋଟିକ ପରେ ଗୋଟିଏ ପାରହୋଇ ଯାଉଥାଏ । ସବୁ ଘର ଆଗରେ ସାଇ ଦାଣ୍ଡରେ ପଡ଼ିଥିବା ଧଉଡ଼ିଆ ଖଟିଆ ପାରି ହେଇ ଯାଉଥାଏ । ଆକାଶରେ ଦଶମୀ ଜହ୍ନ ଖସି ଆସିଥାଏ ଅଧେ ବାଟ ।

ବାରେ କୁଅ ! ଡାହାଣେ ଧନା କକେଇ ଘର !

ସେଇ ନିଃଶବ୍ଦ ପଲ୍ଟଆର ଆଡ଼େଇ ହେଇ ଚାଲିଗଲାବେଳକୁ ଉଶ୍ୱାସ ଖାସଟିଏ ଶୁଭିଲା ଖୁଁ ଖୁଁ ! ଧନା କକେଇଙ୍କ ନନାକୁ ଅଶୀ ବର୍ଷ । ସେ ସାଇ ଭିତରେ ବୟସରେ ସବୁଠୁ ବଡ଼ । ସେ ହିଁ ସାଇ ବସେଇଛନ୍ତି, କୂଅ ଖୋଳେଇଛନ୍ତି ! ଏ ସମସ୍ତଙ୍କୁ ଉପକାତ ହେବାର ଦେଖିଛନ୍ତି···

ସଦାନନ୍ଦ ସାମ୍ଭଗୁରୁ ଡାକଲେ, "କରେ ଧନୁ !"

ସାରା ସାଇର କାନ ଡେରି ହେଇଗଲା । ସାମ୍ଭଗୁରୁ ଉଠି ବସିଲେ ଖଟିଆରେ । ପଲ୍ଟଆର ଥମିଗଲା ।

"କରେ ଧନୁ, କୁଆଡ଼େ ସବୁ ଯାଉଚ ?"

ଧନା କକେଇଙ୍କ ଆଖି କରଣ୍ଡା କୋଳ ପରି ଯୋପିପଡ଼ିଲା । ତାଙ୍କ ପାଟିରେ ମନ୍ଦୁର ପାନପିକ ଭର୍ତ୍ତି ହୋଇ ରହିଥାଏ । କଥା କହିବା ସମ୍ଭବ ନୁହେଁ । ସେ ଗୋଲୁଟିଏ ପରି ଇଆଡ଼କୁ ସିଆଡ଼ ଚାହୁଁଥାନ୍ତି ।

ଗଜ ରଥଙ୍କ ପୁଅ ବଳିଆ, ସମସ୍ତଙ୍କ ଆଗକୁ କହିଣେଇ ପଶିଆସିଲା । "ଶୁଣ ଗୋସେଇଁବାପା, ଆମେ ଗୋଟେ ଅନୁକୂଳରେ ବାହାରିଛୁ । ତମେ କାହିଁକି ପଛରେ ଡାକୁଛ ? ଆଜି ସବୁଦିନକୁ ଗୋଟାଏ ଦଫା ରଫା ହେଇଯିବ । ସେ ତଶ୍ୱେଇ ବୁଢ଼ୀ

ମିସ୍ତ୍ରାଣୀ; ତାକୁ ଆଜ ଡେଙ୍କେ ଦେଇ ତା ତଣ୍ଟିଇପଣିଆ ଭଣ୍ଡୁର କରିବାକୁ ହେବ । ନହେଲେ ଏ ଗାଁରେ ବଞ୍ଚିବା କଷ୍ଟ ।"

ବୁଢ଼ା ଗସ୍ତଗୁରୁ ପୁଣି ଥରେ କାଶି ବଙ୍କାବାଡ଼ି ଉପରେ ଭର ଦେଇ ଲଡ଼ ଥଡ଼ ହୋଇ ଠିଆହେଲେ । ବଳିଆ ମୁହଁକୁ ଦୃଷ୍ଟି ପଚାରିଲେ, "କରେ ସେ କ'ଣ କଲା ତମର ?"

ଘର ପାଞ୍ଚଜଣ ଏକାଠି କହିଲେ, "ଆଉ କ'ଣ କରିଥାନ୍ତା ? କିଭ ଲଗେଇ ତୁମ କୂଅଟାର ଚକ ଘୁଞ୍ଚି ଦେଇଛି । ଚଡ଼ା ପେନିବାକୁ ଟୋପେ ପାଣି ନାହିଁ ।"

"ଏ କୂଅ ଦିନେ ଏମିତ ଶୁଖିଯିବ ବୋଲି ମୁଁ ଜାଣିଚ ରେ । ଏଥିରେ ସେ ବୁଢ଼ୀଟାର କ'ଣ ଦୋଷ ?"

"ଦୋଷ ନାହିଁ ?—ତମର ବଅସିଆ ହେବ ବୋଲି ତା' ପାଇଁ ତୁମ ହୃଦ ତରଳିଯାଉଚ ?—ତମେ ଥିର ହେଇ ଶୋଇଲ ! ଅମେ ତା' କଥା ହାଟଟେଇ ଦେଇ ଆସୁଛୁ ।

"ଆରେ ସେ ହାଆଣ୍ଡୀ ବୁଢ଼ୀଟା ପଛରେ ତମେ ଗାଁସାରା ଲାଗିଛ କେତେ ବର୍ଷ ହେଲା ! ଯେ ତ ସବୁ ହାର ଯାଉଚ । ତାକୁ କ'ଣ ପ୍ରାଣରେ ମାରଦେଲେ ଯାଇ ତମ ପେଟ ପୁରିବ ?"

"ସ୍ୱାଙ୍କର ଯୋଗୁ ସେ ତଣ୍ଟିଇ ମୁହଁ ପାଇ ଯାଇଚ । ଯାଇରେ କଅଁଳା ପିଲାଙ୍କ ତଣ୍ଟି ଚପି ଖାଇଗଲେ ସୁଦ୍ଧା ବୁଢ଼ାଙ୍କର ବଣ୍ଟାପ ହଉନାହିଁ ।"

"ସେ ବୁଢ଼ୀ ପିଲ-ରକ୍ଷଣୀ । ତା'ର ଗୋଟିଏ ବୋଲି ପୁଅ, ମରିଗଲାଣି ଆଜକୁ ସାତବର୍ଷ ତଳେ । ତା' ଝିଅ ବୁଢ଼ୀ ହେଇ ଆର ପୁରକୁ ଗଲାଣି । ସେ ତୁମ ଗାଇ ସାଙ୍ଗରେ ଗୁହ୍ଣି ହେଇ ରହିଛି ସେଇ କାଳରୁ । କ'ଣ ନା ଏବେ ବୁଢ଼ୀ ହେଇ ଆଡ଼ବାସ୍ତ୍ରାଣୀ ହେଇଗଲା; କଷ୍ଟ ସହି ସହି ବୋଲି ତଣ୍ଟିଇ ହୋଇଗଲା ? ସେ ପରା ଏଇ ଦିନାକୁ ଏନ୍ଦୁରୁଶାଳରୁ ତେଲ ଲଗେଇ ବଡ଼ କରିଛି ।"

ଲୁପ୍‌କନା ଦିନା କକେଇ ବେଳଏ ହେବ ମନୁଗ ପାନପିକ ପୁଚୁକ ଦେଲେ ।

"ଯାଃ, ଗଲା ଏଡ଼େ ବଡ଼ ଉଦଘ୍ରଟା ଭ୍ରଷ୍ଟ ହୋଇଗଲା ।" କହିଲା କେହି ଜଣେ । ସେଇଟା ବୋଧହୁଏ ତେନ୍ତୁଳ ପୋଡ଼ଖୁଣ୍ଟା ଧରିଥିବା ହରିଆ ମଣ୍ଡି ।

ଗସ୍ତଗୁରୁ ବୁଢ଼ା କହିଲେ, "ସେ ବୁଢ଼ୀର ମୁଣ୍ଡ ଥିସ୍ତ ନାହିଁ । ହେଲେ, ସେ ଏ ଗାଇ ଛାଡ଼ି ଯାଇ ପାରିବ ନାହିଁ । ଏ କୂଅଟାକୁ ଛାଡ଼ି ଯାଇ ପାରିବ ନାହିଁ ।"

"କେମିତ କେମିତ ?—ଶୁମର ତା'ହେଲେ ଏଇଠି ।"

"ଏଇ କୂଅରେ ତା' ପ୍ରାଣପେଢ଼ିକି ସମ୍ପାଦ ରଖିଛି କେଉଁଠି । ତା'ହେଲେ ତ ସେଇ ପାଣିତକ ପିଇଦେଇଛି । ପେଢ଼ି କାଢ଼ି ନେଇଯାଇଛି !"

ଜହ୍ନ-ଆଲୁଅରେ ବୁଢ଼ାଙ୍କୁ ବେଢ଼ି କଲର କଲର ହେଲେ, ବାଉଳ ସାଇବାଲ ।

ଗସ୍ତଗୁରୁ କହିଲେ, "ଆରେ ଏମିତ କ'ଣ ଅଜ୍ଞାନ କଥାଗୁଡ଼ାଏ କହୁଛ ? ଏ ବଳିଆ ହେଉକା ପରା କ'ଣ ପାଠଶାଠ ପଢ଼ିଲେଣି । ହଁ ପାଠ ସବୁ ପଢ଼ୁଛନ୍ତି ? ହନୁଟା ବପି ଏତେ

ଶାସ୍ତ୍ର ସାଧିଲା । କର୍ମକାଣ୍ଡି ପାକ ମୁଖସ୍ଥ କଲା; ମାତ୍ର ଯୋଉ ମୂର୍ଖକୁ ସେଇ ମୂର୍ଖ ହୋଇ ରହିଗଲା !”

ଶୋଧା ଖାଇ ସମସ୍ତେ ତଳକୁ ମୁହଁ ପୋତିଲେ । ହରିଆ ମଞ୍ଜି ତେନ୍ତୁଳି କାଠର ପୋଡ଼ ଖୁଣ୍ଟାଟାକୁ ଫୋପାଡ଼ି ଦେଇ ପାଖେଇ ଆସିଲା । ବୁଢ଼ା ବଞ୍ଚିବେଦି ଉପରେ ସଂସ୍କୃତ ଶ୍ଳୋକ ବୁଝେଇଲା ପରି କହୁଥାନ୍ତି—

—“ତଣ୍ଟେଇ ଡାକିନୀ, ପିଶାଚୁଣୀ, ମୁଁ ଦେଖିନାହିଁ; କ’ଣ ତମେ ଦେଖିଚ ? ସେମାନେ ସବୁ ତାଙ୍କ ରାଜ୍ୟରେ ଭ୍ରମୁଛନ୍ତି । ସେ କ’ଣ ଆସି ତମ ସାଙ୍ଗେ ଷାଠିଏ ଷାଠିଏ ବର୍ଷକାଳ ସାଇପଡ଼ଶା ହୋଇ ରହିବେ ? ଯେଉଁ ଜଳ ଆଶ୍ରୟରେ ଏ ସାଇ ଏଯାଏଁ ବଞ୍ଚିଚ, ସେ କୂଅକୁ କିଏ ଗଢ଼ିଛି ଜାଣିଚ ? ହଜେ ଗୋଟି ଗୋଟି କରି ଇଟା ଖଞ୍ଜିଛି, ଜଣେ ମାତ୍ର ମିସ୍ତ୍ରି । ତା ନାଁ ଭଗୀରଥ ମିସ୍ତ୍ରି ! ଏଇ ବୁଢ଼ୀ ମିସ୍ତ୍ରାଣୀର ଗେରସ୍ତ । ଲୁହା ଛେଟେଣାରେ ମସଲା ଯୋଗେଇଛି ଏଇ ବୁଢ଼ୀ । ସେମାନଙ୍କ ପୁଅ ଝିଅ ଯୋଡ଼ିକ ଆମରି ଏଇ ପିଣ୍ଡାରେ ମୁଢ଼ି ଭୋଗେଇ ଧରି ଖାଉଥାନ୍ତି, କୂଅଗଢ଼ା କାମ ଚାଲିଥାଏ । ହନ୍ଦ କାମରୁ ଉଠି ଆସି ମୋତେ କହିଥିଲା “ତମ ସାଇକୁ ଗଙ୍ଗା ଆସିଲେ ସାଆନ୍ତେ ! ଏ କୂଅ କେବେ ଶୁଖିବନାହିଁ । ମୋ କାମ ସରିଗଲା, ମୁଁ ଯାଉଛି ।” ଚଣ୍ଡାଳ ଯାହା କହିଲା ତା’ ହୋଇଗଲା । ପ୍ରତିଷ୍ଠା ଦିନ ସେ ଶୁଖିଲାଟାରେ ମରିଗଲା । ମାସେ ଯାଇନାହିଁ ପୁଅଟା ମରିଗଲା । —ଏଇ ମାଇକିନାଟା ଧୈର୍ଯ୍ୟ ଧରି ଏଇଠି ରହିଲା । ପ୍ରତିଦିନ ସେଇ କୂଅକୁ ଚାହିଁଦେଲେ, ତାକୁ ବଳ ପାଇଲାପରି ଲାଗିଲା । ମୁଁ ଦେଖିଛି ମାସ ମାସ ଧରି ରାତିରେ ଏଇ କୂଅ ମୂଳେ ସେ ତା’ ଗିରସ୍ତକୁ ବାହୁନି ବାହୁନି କାନ୍ଦିଛି !···

···ଏ କୂଅରେ ତା’ ଆତ୍ମା ବନ୍ଧାପଡ଼ିଛି । ତା’ ପଛରେ ତମେ ଲାଗିଛ ! ଏ କୂଅ ଶୁଖିଯିବ ନାହିଁ ତ କ’ଣ ଆଉ ରହିବ !—ଆଉ ଅନାଚାର କରନାହିଁ—ସେ ବୁଢ଼ୀଟା ଏ ସାଇର ମା’ପରି । ତା’ କ୍ଷୀର ଖାଇ ତାକୁ ମାରିବାକୁ ହାତ ଉଠାଅ ନାହିଁ । ବିପତ୍ତି ପଡ଼ିଯିବ !—”

ବୁଢ଼ା ଏକାବେଳକେ ଏତେ କଥା କହିଦେଇ ଧକେଇଲା ପରି ବସିପଡ଼ିଲେ—ସମସ୍ତେ ଛାଟଖାଇ ସକଉଥିବା ପିଲଗୁଡ଼ିଏ । “କେତେ କଥା ସତେ କେହି ଜାଣିପାରୁ ନଥିଲେ । ବାସ୍ତାଣୀ ବୁଢ଼ୀ ·ବେଲେବେଲେ, କୂଅଟାକୁ ସାଉଁଳି ଦେଇ ଚାଲିଗଲେ ବାରକଥା ଭାବି ଯାଉଥିଲେ । ‘ମୋ କୂଅ’ ବୋଲି ସେ କଥା-କଥାକେ କହିଦେଲେ କେହି ବୁଝିପାରୁ ନଥିଲେ । ରାସ୍ତଗୁରୁ ବୁଢ଼ା ମଧ୍ୟ ଏଯାଏଁ କଥାଟା ପ୍ରକଟ କରିନଥିଲେ ।—ଅପୁମାରି କାଳ ହେଲା କିନ୍ତୁ ମିସ୍ତ୍ରାଣୀ ବୁଢ଼ୀ ତାଙ୍କ ଘରେ କାମ କରି ପେଟ ପୋଷିଛି ।—ତାଙ୍କ ପଛେ ଆସିଥିବା ପୁରୁଣା ପୁରୁଣା ବୁଢ଼ା-ବୁଢ଼ୀମାନେ ବେଳେବେଳେ ବଙ୍କାରେ କଥା ଠାରିଦିଅନ୍ତି । ରାସ୍ତଗୁରୁଙ୍କ ନାଁରେ ତେତେ ବଡ଼ କଥା କହିଦେବାକୁ କାହାରି ଜିଭ ଲେଉଟେ ନାହିଁ ।

ମିସ୍ତାଣୀ କିନ୍ତୁ ତାଙ୍କ ଆଶ୍ରୟରେ ରହିଆସିଛି ସେଇ କାଳରୁ । ସେଥିପାଇଁ ତାଙ୍କ ଘରେ କେବେ କେମିତ କଳି ଲାଗିଛି । ଦାନା କକେଇଙ୍କ ବୋଉ ଚାଲିଗଲା ଦିନୁ, ସେକଥା ଲିଭି ଆସିଲାଣି; କିନ୍ତୁ ଦାନା କକେଇଙ୍କ ମନ ଭିତରେ ରାଗ କୁହୁଳୁଥିଲା ସବୁବେଳେ ।

ବଳିଆ ଆଦି ଟୋକାମାନେ କୋହ ଟେକିଲାପରି ହେଲେ । କ୍ଷୀର ଦେଉଥିବା ମା' କଥାଟା ତାଙ୍କୁ ଖୁବ ବାଧିଗଲା । ସେମାନେ ଦୌଡ଼ିଯାଇ ଫେରିଆସିଲେ । ବଳିଆ କହିଲା, "ଆମେ ତା' ଖଣ୍ଡିଆ ତଳେ ମୁଣ୍ଡିଆ ମାରି ଫେରିଲୁ । ସମସ୍ତେ ମୁଣ୍ଡିଆ ମାରିବେ । ଆମର ଅପରାଧ ହେଇଚି ।"—ସମସ୍ତେ ସେଇ କଥାରେ ଭୋଳ ହେଇଗଲେ । ଉଠିଲେ ହୋ-କନା ।

ରାସ୍ତଗୁରୁ ପୁଣି ତାଙ୍କୁ ବାରଣ କଲେ : "ଆରେ ତା' ଗର୍ଭରେ ସେ ଶୋଇଚି । ରାତଅଧରେ ତାକୁ କାହିଁକି ଏମିତ ହଇରାଣ କରିବ । ପାହାନ୍ତୁଆ ହେଉ ।"

ବଳିଆ କହିଲା, "ପାହାନ୍ତୁଆ ହେଲେ ମୁଁ ଭାବୁଛି କୂଅ ଭିତରେ ପଶି ସେ ପଥରକୁ ଫଟେଇବ ।"

ତା'ସାଙ୍ଗ ଦି'ଜଣ କହିଲେ, "ଦଉଡ଼ି ଆଉ ଝୋଲା ସଜ୍ଜିଲ୍ କର, ଆମେ ଉପରକୁ ମାଟି କାଢ଼ିବୁ । —କୂଅକୁ ଗଭୀର କରିବା । ମା'କୁ ସନ୍ତୁଷ୍ଟ କରିବା । ଗଙ୍ଗା ପୁଣି ଝରିବେ । ମା' କ୍ଷୀର ଝରିବ ।"

ରାସ୍ତଗୁରୁ ହାତପିଠିରେ ଲୁହ ପୋଛୁଲାପରି ଜଣାଗଲା । ସେ ବଙ୍କା ବାଡ଼ି ଉପରେ ଭରାଦେଇ ବସିଥାନ୍ତି ।

ଦାନା କକେଇ କହିଲେ, "ତୁମେ ଶୋଇପଡ଼ ନନା, ରାତି ଅନେକ ହେଲାଣି ।"

"ମୁଁ କ'ଣ ଶୋଇବାକରେ ଦାନୁ ! ମୁଁ ଶୋଇଲେ ତ ଏକାଥରେ ଶୋଇଯିବି । ମୋତେ କେତେଦିନରୁ ନିଦ ନାହିଁ । ମୁଁ ଖାଲି ସେମିତ ଚାହିଁ ପଡ଼ିଥାଏ ।"

···ପାହାନ୍ତୁଆ ପହରକୁ କୂଅ ଭିତରୁ ପଥର ଚଟାଣ ଦୁଲୁକିଲା । ନିଆଁ ଝୁଲ ଛୁଟିକଲା । ଛେଲି ଛେଲି ପାଣିଝିଆ ପଥର ଉଠିଆସିଲା ଉପରକୁ । ମହା ଉତ୍ସାହରେ ଭେଣ୍ଡିଆମାନେ ଗମ୍ଭୀରରୁ ଗମ୍ଭୀରକୁ ପାଣିଧାର ଖୋଜିଗଲେ ।

ମିସ୍ତାଣୀ ବୁଢ଼ୀକୁ ସକାଳ ପହରୁ ଜର । ସେ ବାଉଳି-ଚାଉଳି ହେଇ ଉଠିଲା । ଯାଇବାଲା ତାକୁ ଟେକପାଳ କଲେ । ସେବାକଲେ । ପଥ୍ୟପାଚନ ଦେଲେ ।

ବୁଢ଼ୀ ଜରରେ ଫାଇଁ ଫାଇଁ ହେଇ କାହା କଥା ନମାନି ଚାଲି ଆସିଲା କୂଅ ମୂଳକୁ । ସେତେବେଳକୁ ଖରା ଚଢ଼ିଆସିଲାଣି ମୁଣ୍ଡ ଉପରକୁ । ଓଦା ଗାମୁଛା ପକେଇ, ଠେକା ଭିଡ଼ି, ବୁଢ଼ାମାନେ ଛତା ଧରି କୂଅମୂଳେ ଠିଆହେଇଥାନ୍ତି । କାଳିଆ ଅକର୍ମଶିଳା ପରି ଦିଶୁଥିବା ପଥର ଛେଲି ଛେଲି ହୋଇ ଗୁଣ୍ଡଯାଉଥାଏ । ଉପରେ କୁଢ଼ କୁଢ଼ ହେଇ ଗଦାହେଉଥାଏ ।

ମିସ୍ତାଣୀ ଝଳଝଳ ଆସି କୂଅ ନନ୍ଦ ଉପରେ ହାତ ସାଉଁଳ ଦେଲା । ଚାହିଁଲା ଭୂରୁ କୁଞ୍ଚେଇ ସାମ୍ବୁଗୁରୁଙ୍କ ମୁହଁକୁ । ବାମ୍ଭଣୀଟିଏ । ହାଡ଼ଚମସାର ଅଶୀବର୍ଷର ବୁଢ଼ୀଟିଏ । ତା'ର ଫୁରୁଫୁରୁ ବାଳ । ବଦମାଳପରି ଗଣି ହେଉଥିବା ପଞ୍ଜରା । କୋରଡ଼ କୋରଡ଼ ଆଖି ।—

ସେ ଚାହିଁଲା ସାମ୍ବୁଗୁରୁଙ୍କୁ । ଚାହିଁଲା କୂଅକୁ । ତା' ମୁହଁ କୁଞ୍ଚେଇଗଲା । ସେ ଦରଦର କାନ୍ଦପକେଇଲା ।

"ଝର ଫିଟିଗଲାରେ ଭାଇ ! ଝର ଫିଟିଗଲା···" କୂଅ ଭିତରୁ ବଳିଆ ଚାଟିକଲା ।

ସମସ୍ତେ ଓହଟି ଚାହିଁଲେ । ପଶ୍ଚିମ ପଟ ପଥର ଫାଟ ଭିତରୁ ଗବଗବ ହୋଇ କୁଢ଼େଇ ପଡ଼ୁଛନ୍ତି ଗଙ୍ଗା ।

---

# ଯୋଗୀ କୋହ୍ଲୁ କପାଇଁ

ସେତେବେଳେ ମୁଁ ତାଙ୍କୁ ଚହ୍ନି ନଥିଲି ତ ! ସେଥିପାଇଁ ଭାବୁଥିଲି କଏ ସେମିତି ବର୍ଷା-ଅନ୍ଧାର ରାତରେ ଏକୁଟିଆ ଘଣ୍ଟି ବଜେଇ ସାଇକେଲ୍‌ରେ ଯାଉଥିଲା ? ତା' ଦୁର୍ବଳ ଘଣ୍ଟି ଶବ୍ଦରେ ପଥର ପରି ନିଘଞ୍ଚ ଅନ୍ଧାର ତ ଜମା ଘୁଞ୍ଚୁ ନଥିଲା । ସେଣ୍ଟୁଆ ଲୁଆଣିଆଁ ମେଘରୁ ଟିପ୍‌ଟିପ୍ ବର୍ଷାର ଛନ୍ଦ ମଧ୍ୟ ଆଦୌ ଭାଙ୍ଗୁ ନଥିଲା । କାହାକୁ ତା'ହେଲେ ସେ ବାଟ ମାଗୁଥିଲା ସେମିତି ?—କାହାକୁ ଆଡ଼ ହୋଇଯିବାକୁ କହୁଥିଲା ? ଦୁଇପାଖରୁ କେବଳ ଘୁଞ୍ଚିଯାଉଥିଲେ ଓଦା ସରସର ଗଛମାନେ । ନିଃଶବ୍ଦରେ ହୁଏତ ଅପସରି ଯାଉ-ଥିଲେ କଳା ଭଅଁର ସାପମାନେ ରାସ୍ତା ଉପରୁ ।

ଡାଳରୁ ପକ୍ଷୀଟିଏ ଓହ୍ଲେଇଲା ପରି, ପତ୍ରଟିଏ ଖସିଲା ପରି ଠୁକ୍‌କିନା ଆମ ପଡ଼ିଶା ଘର ଆଗରେ ସାଇକେଲ୍‌ରୁ ସେ ଜଣକ ଓହ୍ଲେଇଗଲେ ।

"ଆରେ, ବ୍ରଜବାବୁ ! ଆପଣ ଏପରି ପାଗରେ ?" ନେହୁରା ହେଲାପରି, ଦ୍ରୋହ କରି ଦୋଷ ମାଗିଲାପରି ଆମ ପଡ଼ୋଶୀ କିଛି ସମୟ ପାହାଚ ଉପରେ ଠିଆ ରହି ରାସ୍ତାଯାଏଁ ତରତରେଇଗଲେ ମୋଲାଏମ୍ ଲବସ୍ତ୍ରରେ ।

ଚନ୍ଦାମୁଣ୍ଡିଆ ଫତେଇପିନ୍ଧା ବୁଢ଼ାଟି ନଇଁଲାପରି ନମସ୍କାର କରି କରି ବର୍ଷାରୁ ଉଠିଗଲେ ପିଣ୍ଡାଯାଏଁ । "ଝୁନା ଜର ଏଇନା କେତେ ?"

"ଆରେ, ମୁଁ ପିନା ଏମିତି ତା' ଜର ବିଷୟରେ ଆପଣଙ୍କୁ ଖବର ଦେଇଥିଲି; କିନ୍ତୁ ଆପଣ ନିଜେ କାହିଁକି ଚାଲିଆସିଲେ ଏ ବର୍ଷା-ଅନ୍ଧାର ଭିତରେ ?"

ସେମିତି ହସିଲା ହସିଲା ମୁହଁରେ ସେ ପଚାରିଲେ, "ଝୁନାର ଜର ଏଇନେ କେତେ ?"

ପଡ଼ୋଶୀ ବାଧ୍ୟ ହେଲାପରି କହିଲେ, "ସେ ଶୋଇଛି । ଦେହରେ ଜର ନଥିଲା ପରି ଲାଗୁଛି ତ !—ଉପରକୁ ଆସନ୍ତୁ ।"

ଆମ ପିଣ୍ଡାରୁ ଏ ସବୁ ପରିଷ୍କାର ଦିଶୁଥାଏ ଏବଂ ଶୁଭୁଥାଏ ।

ଏ କ'ଣ ତା'ହେଲେ ସେଇ ବ୍ରଜବାବୁ ?—ସେମିତି କାଠ କଣ୍ଢେଇ ଭଳି ସିଧା ହୋଇ ଚାଲୁଛନ୍ତି; ସିଧାହୋଇ ବସୁଛନ୍ତି ! —ଚୌକିରେ ବସୁ ବସୁ ସେ କହିଲେ, "ଆପଣଙ୍କ ପାଖରେ ମୋର ଗୋଟିଏ ଅନୁଗ୍ରହ ପ୍ରାର୍ଥନା ଥିଲା ।"

ଶ୍ରୀକାନ୍ତ ସାମନ୍ତ ତାଙ୍କଠାରୁ ବୟସରେ ଅନେକ ସାନ । ସେ ଏଭଳି କଥା ଶୁଣି କନକନ ହେଲେ । ବ୍ରଜବାବୁ ତାଙ୍କ ଚକ୍‌କଣ ଚନ୍ଦାମୁଣ୍ଡରୁ ହାତ ମାରି ଚୋପା ଚୋପା ବର୍ଷାପାଣି ପୋଛି ପକାଉଥାନ୍ତି । କହିଲେ, "ସୁବ୍‌ବାସ୍ୱା ବୋଲି ଖାନ୍‌ସାମାଟିଏ ଥିଲା ଆମ ସମୟରେ । ମୁଁ ତାକୁ ଜାଣେ । ସେ ଏବେ ବୁଢ଼ା ହୋଇଗଲାଣି । ତା' ସାନପୁଅକୁ କୋଉଠି ଟିକିଏ ଲଗେଇଦେଲେ ସେ କୁଟୁମ୍ବଟା ଚଳିଯାନ୍ତେ । ତା' ବାପ ଭଲ ମୋ ଭଲ ଗ୍ରାଣ୍ଡିଜାଣେ ।"

ଶ୍ରୀକାନ୍ତ ସାମନ୍ତ କିଛି ନ କହି ଅଳ୍ପ ହସି ବସିରହିଲେ ।

ମୋର ଅଳ୍ପକାଳ ରହଣି ଭିତରେ ଅନେକ କଥା ମୋ କାନରେ ପଡ଼ିଛି । ଏଇ ବ୍ରଜବାବୁ କୁଆଡ଼େ ତାଙ୍କବେଳେ ଖୁବ୍ ବଡ଼ ଅଫିସର୍ ଥିଲେ । ଭାରି ପ୍ରତାପୀ ଥିଲେ କୁଆଡ଼େ । ଲୋକେ ଜାଣିଥିଲେ ଯେ ସେ ଖୁବ୍ ଆଭିଜାତ ଘର ପିଲା । ସେଇ ବଂଶୀସରେ ତାଙ୍କୁ ଏକପ୍ରକାର ଖାତିର୍ ମଧ ଜିଣିଆସିଛନ୍ତି । ଏବେ ତାଙ୍କ ଚେହେରା ଦେଖିଲେ କେହି କହିବେ ନାହିଁ ଯେ ସେ ଦିନେ ଘୋଡ଼ା ଚଢ଼ି ଗସ୍ତ କରୁଥିଲେ । କଚେରୀ ଘର ଉପର-ମହଲରେ ଦପ୍ତର କରୁଥିଲେ । ସରକାରୀ ଭିଆସମାନଙ୍କରେ ରହୁଥିଲେ । ଟୋପି ଅର୍‌କନ୍ ପିନ୍ଧା ଖାନ୍‌ସାମା ତାଙ୍କ ସେବାରେ ଲାଗିଥିଲେ । ସାହେବମାନଙ୍କ ସାଙ୍ଗେ ଟକ୍‌କର ଦେବା ଭଳି, ସେମାନଙ୍କଠାରୁ ଇଜ୍ଜତ୍ ପାଇଲାଭଳି ଏଠିକା ସାହେବ ଥିଲେ ବ୍ରଜ୍‌ଗୋପାଲ୍ ଦାସ । ଏଇ ତା' ହେଲେ ସେଇ ବ୍ରଜବାବୁ ?—ସେ କାହିଁକି ଚାକିରି ଛାଡ଼ିଦେଲେ ?

ତାଙ୍କର ସମ୍ପତ୍ତିବାଡ଼ି କିଛି ନାହିଁ । ଗ୍ରେଟିଆ ଦୁଇବଖୁରୀ ଘରଟିଏ । ବାଡ଼ିରେ ବେଲ, ପଣସ, ଆମ୍ବଗଛ ପୁଞ୍ଜାଏ । ଯିବାଆସିବାକୁ ଝଣ୍ଡେ ସାଇକେଲ, ଖଦଡ଼ ଧୋତି, ଫତେଇ ପିନ୍ଧି ଖାଲି ପାଦରେ ସେ ପ୍ରାୟ ବୁଲିଯାଆନ୍ତି ପାଖଆଖ ଅଞ୍ଚଳକୁ । ସେ କିନ୍ତୁ କେମିତି ଚଳନ୍ତି, ତାଙ୍କ ଘରେ ଖିଆପିଆ କେମିତି ହୁଏ, ତାଙ୍କର ବନ୍ଧୁ କୁଟୁମ୍ବୀ କେବେ ଆସନ୍ତି, କେବେ ଯାଆନ୍ତି, କାହାରିକୁ ହୁଏତ ଜଣାନାହିଁ ।

ଯୋକାଏ କହନ୍ତି, ବ୍ରଜବାବୁ ବଡ଼ ଅଫିସର ଥିଲେ । ତାଙ୍କର ଜମିଦାରୀ ଥିଲା । ତାଙ୍କର ଅଜସ୍ର ସମ୍ପତ୍ତି । ତାଙ୍କର କିଛି ଅଭାବ ନାହିଁ । ସେ ଅବସରରେ ଚଳୁଥିବେ । ତାଙ୍କ ଘରେ ସବୁଦିନ କ୍ଷୀର, ପୁରି ହେଉଥିବ । ସେ ଅଭିଜାତ ଥିଲେ ଓ ଅଛନ୍ତି । ବ୍ରଜବାବୁ ବଡ଼ଲୋକ । ତାଙ୍କୁ ଯାହା ମାଗିଲେ ମିଳେ ।

ଆଉ ଯୋକେ କହନ୍ତି—ବୁଢ଼ାର ଏବେ କିଛି ନାହିଁ । ଜୋତା ହଳକୁ ସୁଦ୍ଧା ପଇସା ନାହିଁ । ନିଜ ଲୋକ କେହି ନଥିବାରୁ ସମସ୍ତଙ୍କ ସାଙ୍ଗେ ଭାବଦୋସ୍ତି କରି ବୁଢ଼ା ବୟସର କୋହଲା କାଟୁଛି । ସେ ଦରିଦ୍ର ।

ଯେଉଁ କେତେଜଣ ତାଙ୍କୁ ଆଉ ଟିକିଏ ପାଖରୁ ଜାଣିଛନ୍ତି ବୋଲି କହନ୍ତି, ସେମାନଙ୍କ ମତ ଆଉ ପ୍ରକାର ।—ବୁଢ଼ା ଏବେ ଗୋଟିଏ ମଠରୁ ଓଳିଏ ଭାତ ଡାଲ୍‌ମା ଆଣି ଖାଆନ୍ତି ।

ଘରେ ଚୂଲି ଲଗେ ନାହିଁ । ତାଙ୍କ ସ୍ତ୍ରୀକୁ କ'ଣ ହେଉଛି କେଜାଣି ? ସେ ଜମା ଖଟରୁ ଓହ୍ଲାନ୍ତି ନାହିଁ । ତାଙ୍କୁ କେହି ଦେଖିନାହାନ୍ତି । ବୁଢ଼ୀ ସାଙ୍ଗରେ ସ୍ୱାମୀଙ୍କର ମୂଳରୁ ଅପଡ଼ । କିଏ କହୁଛି, ତାଙ୍କୁ ତାଙ୍କ ଶଶୁରଘର ଠକିଦେଲେ । ଜଣକୁ ଦେଖେଇ ଆଉ ଜଣକୁ ଛନ୍ଦିଦେଲେ । ଆଉ କିଏ କହୁଛି, ସେ ମାଇକିନାଟା ମୂଳରୁ ବାଝୁଣୀ । ତା'ର ଜମା ଫଳିବାର ନଥିଲା । ସେ ଫଳିଲା ନାହିଁ । ପୁଣି ଶୁଣିବାକୁ ମିଳୁଛି ଯେ ବୁଢ଼ା ମୂଳରୁ ଟିକିଏ ରସିକ ଲୋକ । ବାହାରେ ଅନେକ ଭୋଗିଛନ୍ତି, ଏଣୁ ଘରେ ମନ ଦେଇନାହାନ୍ତି । ଏମିତି ଏମିତି କେତେ କଥା ।

ଆମ ପଡ଼ୋଶୀ ଶ୍ରୀକାନ୍ତ ସାମନ୍ତ ବରାବର ତାଙ୍କ ପାଖରୁ ହୋମିଓପାଥି ଔଷଧ ଆଣନ୍ତି । କୌଣସି କାରଣରୁ ତାଙ୍କୁ ଗୁରୁ ପ୍ରାୟ ଭକ୍ତି କରନ୍ତି । ମୋର ଇଚ୍ଛା ହେଲା ଥରେ ସେ ବୁଢ଼ାଟି ସାଙ୍ଗରେ ପରିଚିତ ହେବାପାଇଁ ।

ମୁଁ ଟୁପୁଟୁପୁ ବର୍ଷାରେ ସାମନ୍ତ ବାବୁଙ୍କ ପିଣ୍ଡା ଉପରକୁ ଉଠିଗଲି ।

"ଆଜ୍ଞା, ନମସ୍କାର ! ମୋ ନାଁ ଦିଗମ୍ବର ପ୍ରଧାନ । ମୁଁ ଏଇ ସାମନା ଘରଟାରେ ଥାଏ । ମୁଁ ଆପଣଙ୍କ କଥା ବହୁ ଲୋକଙ୍କଠାରୁ ଶୁଣିଛି । ଆପଣଙ୍କୁ ସମ୍ମାନ ଜଣାଇବାକୁ ଆସିଛି ।"

ବ୍ରଜବାବୁ କଣ୍ଟେଇ ପରି ଠୁକ୍ କିନା ହୋଇ ନମସ୍କାର ଜଣେଇଲେ । ମୋତେ ଗ୍ରହିଁ କେବଳ ହସିଲେ । ତାଙ୍କର ଅଧିକାଂଶ ଦାନ୍ତ ପଡ଼ିଗଲାଣି ସେତେବେଳକୁ । ନାକ ଆଖି ମୁହଁରେ ତଥାପି ଖୁବ୍ ଟାଣପଣ ଜଣାପଡ଼ୁଥାଏ । ସନ୍ତୁଷ୍ଟ ସ୍ଥିର ଚାହାଣିରେ ସେ ଯେପରି କହୁଥିଲେ 'କି ବର ମାଗୁଛୁ ମାଗ୍' !—ମୋ ମନକୁ ପାଇଗଲା ।

ମୁଁ ଗଦ୍‌ଗଦ୍ ହେଲିପ୍ରାୟ କହିଲି, "ଆପଣଙ୍କ ଦର୍ଶନ ପାଇବା ମୋର ଭାଗ୍ୟ ! ଯଦି ଆପଣଙ୍କ କୌଣସି ସେବାରେ ଆସିପାରେ ତେବେ କହନ୍ତୁ !"

ତଥାପି ସେ କିଛି ନ କହି ମୋତେ ଗ୍ରହିଁ ହସୁଥାନ୍ତି ।

ସାମନ୍ତ ବାବୁ କହିଲେ, "ଆମ ଦିଗମ୍ବରବାବୁ ଏଇ ଅଳ୍ପଦିନ ହେଲା ଆସିଛନ୍ତି । ସମ୍ବଲପୁର ଲୋକ । ଚାଉଳ, ଗହମ, ଇଷ୍ଟ୍ରେସିନର ମାଲିକ । ଭାରି ବଡ଼ିଆ ଲୋକ ।"

"ତା'ହେଲେ ତ' ଦିଗମ୍ବରବାବୁ ମୋତେ ସାହାଯ୍ୟ କରିପାରିବେ ।"—ସାଙ୍ଗେ ସାଙ୍ଗେ ନିଃସଙ୍କୋଚରେ କହିଲେ ବ୍ରଜବାବୁ !—"ଦଶ ପନ୍ଦର କିଲୋ ଚାଉଳ ଦେଇପାରିବେ ?"

ମୁଁ ହଠାତ୍ ଅପ୍ରସ୍ତୁତ ବୋଧକଲି । ମୋ ମୁହଁ ତାତିଗଲା ।—ଇସ୍ ନଅଙ୍କିଆ ବୁଢ଼ାଟା, ପାଉ ପାଉ କେମିତି ଟାକୁ କିନା ଗିଳିଦେଲା । ଧେତ୍, ଏଇଟାର ଚରିତ୍ର ନାହିଁ !—କହିଲି, "ହଉ ଦେଖିବା ।"

"ଦେଖିବେ ଆଉ କ'ଣ ? ଦେବେ ଯଦି କହନ୍ତୁ, ମୁଁ କାଲି ଆପଣଙ୍କୁ ଦେଖା କରିବି । ମୋର ପନ୍ଦର କିଲୋ ଚାଉଳ ପ୍ରୟୋଜନ ।"—ପକ୍‌କା ଲୋଭୀ ବୁଢ଼ାଟିଏ ଦେଖୁଛି । ସମସ୍ତେ ପାଞ୍ଚ କିଲୋରେ ମାସେ ଚଳି ଯାଉଛନ୍ତି । ସ୍ୱା'ର ପନ୍ଦର କିଲୋ ନ ହେଲେ ନ ଚଳେ । ସୁବିଧା ପାଇଗଲା ତ' !

ମୁଁ କିଛି କହିଲିନାହିଁ ।

ମଝିରେ ସାମନ୍ତବାବୁ ହାତ ମଳି ପରମ ଭକ୍ତିରେ ପଚାରିଲେ, "ଆପଣଙ୍କର ଏତେ ଚିନ୍ତା କ'ଣ ହେବ ?"

ସେ ଠୁକ୍ କରି ଉଠି ଠିଆ ହେଲେ । ବଡ଼ ଆଡ଼ମ୍ବରରେ ଦୁଆରକୁ ଯିବା ବାଟରେ କହିଲେ "ସେ ସେଇଁ କମଳା ବେହେରାଣୀ ନୁହେଁ ?—ସେ ଯେ ବେଲ ଗଛ ମୂଳେ କୁଡ଼ିଆ କରିଥାଏ; ଲୋକଙ୍କ ଘରେ ବାସନ ମାଜେ !—ସେ ତା' ଝିଅକୁ ବାହାଦେଉଚି—ଖରଚ ହାଇରାଣ ହଉଚି ।"

ସାମନ୍ତବାବୁ କୁତୁହଳୀ ପରି କହିଲେ, "ସେଇଆ ! ମୁଁ ଭାବିଲି ଆପଣ ତ ଯାକାଶନରେ ଚାଲିବା ଲୋକ । ଏତେ ଚିନ୍ତା କ'ଣ କରିବେ !"

ବ୍ରଜବାବୁ ଚୁପ୍ କରି ସାଇକଲ ଚଢ଼ି ସେଇ ଟୋପି ଟୋପି ବର୍ଷା ଭିତରକୁ ଚାଲି-ଗଲେ । ମୁଁ ଭିତରେ ଭିତରେ ଲେଙ୍ଗା ହୋଇଗଲି । କଉଁଠି ଲୋକଟାକୁ ମୁଁ କ'ଣ ଭାବୁଥିଲି ।—ମୁହଁ ଫିଟେଇ କହିଲି, "ଆଚ୍ଛା, ବୁଢ଼ାଙ୍କୁ କୋଡ଼ିଏ କଲେ ଚାନ୍ଦା କରେଇ-ଦେଲେ କେମିତି ହୁଅନ୍ତା ? ମୁଁ ବରଂ ନିଜେ ପାଞ୍ଚକଲେ ଚାନ୍ଦାର ପଇସା ଦେଇ ଦିଅନ୍ତି । କ'ଣ କହୁଛନ୍ତି ?"

ସାମନ୍ତବାବୁ କିଛି ନ କହି ଚୌକିରେ ବସିଲେ । "ବସନ୍ତୁ, ବସନ୍ତୁ ଦାଶମୂରବାବୁ ! ଏମିତି ହଠାତ୍ ଆପଣ ଭାବପ୍ରବଣ ହୁଅନ୍ତୁନାହିଁ ।"

"ନା', ନା', ଆପଣ ମନାକରନ୍ତୁନାହିଁ । କି ଅଦ୍ଭୁତ ଲୋକ ସତେ !"

"ହେଲେ, କ'ଣ ହବ ! ଲୋକେ ତ ନାନା ପ୍ରକାର କଥା କହୁଛନ୍ତି । ହେଇ ଧରନ୍ତୁ, ଏଇ ବାହାଘର କଥା । କମଳା ବେହେରାଣୀକୁ ସେ ଘର ଦେଇଛନ୍ତି । ତାକୁ ସେ ଲୁଗା କିଣିଦିଅନ୍ତି । ସେ ତାଙ୍କ ଘରେ ବାସନ ମାଜେ, ପାଇଟି କରେ । ଲୋକଙ୍କ ତୁଣ୍ଡରେ କ'ଣ ବାଡ଼ ବତା ଅଛି ।"

ମୋ ଭିତରେ ଭୁସ୍ ଭୁସ୍ ହୋଇ କ'ଣ ଗୁଡ଼ାଏ କୁଢେଇ ହୋଇପଡ଼ିଲା । ମୁଁ ଅସୁସ୍ଥ ବୋଧ କଲି । ମୋ ଆଖିକୁ ପୁଣି ଗୋଟାଏ ଲେସେଡ଼ା, ଲମ୍ପଟିଆ ମୋହଗ୍ରସ୍ତ ବୁଢ଼ା ଦେଖାଗଲା । ମୁଁ ଗୋଡ଼ ଲମ୍ବେଇ ଚୌକିରେ ବଢେଇ ହୋଇପଡ଼ିଲି । ମୋ ତୁଣ୍ଡରୁ ବାହାରିଗଲା, "ଓ...ସେକଥା କହୁନାହାନ୍ତି !"

ଶ୍ରୀକାନ୍ତବାବୁ ସାମାନ୍ୟ ଆହତ ସ୍ୱରରେ ମୋତେ ପଚାରି କହିଲେ "କୋଉ କଥା ?"

"ସେଇ କଥା !—ରସିକ ବୁଢ଼ାର କାହିଁକି ଏମିତି ଦଶା ଉଚ୍ଛୁଳୁଛି ବୋଲି ମୁଁ କାବା ହୋଇଯାଇଥିଲି ।...କ'ଣ ନା'...କଥା ଯାଇ କୋଉଠି ! ହେଃ, ହେଃ,...ବୁଢ଼ା ତା' ନିଜ ଝିଅ ବାହାଘର ପାଇଁ ଚାନ୍ଦା ମାଗୁଚି କହନ୍ତୁ ।"

ଶ୍ରୀକାନ୍ତବାବୁଙ୍କ ମୁହଁ ତଳକୁ । ସେ ତା'ପରେ ମୋତେ ଚାହିଁ ସାମାନ୍ୟ ହସିଲେ । କିଛି କହିଲେ ନାହିଁ । ମୋତେ ପୁଣି ଅସୁସ୍ଥ ଲାଗିଲା । ମୁଁ ଗୋଡ଼ ଲେଚେଇ ସଳଖି ବସିଲି ।— "କ'ଣ କଥା, ଆପଣ ହଠାତ୍ ଗମ୍ଭୀର ହୋଇଗଲେ ଯେ ?—ବିଷୟ ତା'ହେଲେ କ'ଣ ଅନ୍ୟ ପ୍ରକାର ?"

ତଥାପି ସେ କିଛି କହିଲେ ନାହିଁ । ମୋତେ ସେମିତ ଚାହିଁ ରହିଲେ ।

ମୋତେ ଅପରାଧ କଲାପରି ଲାଗିଲା । "ଆପଣଙ୍କ ମନରେ କଷ୍ଟଦେଲି । ବ୍ରଜବାବୁ କଦାପି ସେଭଳି ନୀଚ ନୁହନ୍ତି । ତାଙ୍କ ନାଁରେ ଗୁଡ଼ାଏ ଖଚୁଆ ଲୋକ ଅନେକ କଥା କହୁଥିବାରୁ ଆମେ ନ ଜାଣିବା ଲୋକେ, ସେଥିରେ ପହଁରି ଯାଉଚୁ ! ସେ କାହିଁକି ସେମିତ ହୁଅନ୍ତେ ? ସେ ଋଷିପ୍ରତିମ ଲୋକ ।—ଛାଡ଼ନ୍ତୁ, ମୁଁ ବାସ୍ତବିକ୍ ଦୁଃଖିତ !"

ମୁଁ ତାଙ୍କ ହାତ ଧରିପକେଇଲି । ସେ ଛଡ଼େଇ ନେଲେ ନାହିଁ । ସେମିତ ଗମ୍ଭୀର ରହି କହିଲେ, "ଆପଣ ଜାଣନ୍ତି, ପଚାଶ ବର୍ଷ ତଳେ ବ୍ରଜବାବୁ ଏମିତ ଅଡ଼ୁଆରେ ପଡ଼ି ଗୋଟାଏ ବେଶ୍ୟାକୁ ନିଜର ସ୍ତ୍ରୀ ବୋଲି ମାନିନେଲେ ।"

ମୁଁ ଧଡ଼ାସ୍‌କିନା ଚୌକିରେ ଗୁଡ଼ିକାଡ଼ି ମେଲେଇ ପଡ଼ିଗଲି । ମୁହୂର୍ତ୍ତିକରେ ଚମକିଲା ପରି ଉଠିବସିଲି । ମୋର ଆଚରଣରେ ସେ ଜମା ବିଚଳିତ ହେଲେନାହିଁ; କାରଣ ଆଉ ଯେ କେହି ମଧ୍ୟ ସେହିଭଳି ଚମକିଥା'ନ୍ତା—ମୁହୂର୍ତ୍ତି ମୁହୂର୍ତ୍ତିକର ଅନ୍ଧାର ଆଲୁଅରେ ଚକିତ ହୋଇ ଯାଇଥା'ନ୍ତା ।

ମୋର ଉତ୍କଣ୍ଠା ଲକ୍ଷ୍ୟ କରି ଶ୍ରୀକାନ୍ତବାବୁ ଅତି ସହଜ ଢଙ୍ଗରେ କହିଲେ, "ମିରାଣ୍ଡା ମଣ୍ଡଳ ଆପଣଙ୍କର କ'ଣ ହୁଅନ୍ତି ବୋଲି ପଚାରିଥିବାରୁ ବ୍ରଜବାବୁ ଯାଚ୍ଛେ ଯାଚ୍ଛେ କହିଥିଲେ, 'ସେ ମୋ ସ୍ତ୍ରୀ' ।"

"କ'ଣ କହୁଛନ୍ତି ମ' !—ସମସ୍ତଙ୍କ ଆଗରେ ଏ ନିର୍ଲଜ ବୁଢ଼ା ଏମିତ କହିଦେଲା ?"

"ସମସ୍ତଙ୍କ ଆଗରେ, ମାନେ, ସେଇଠି ଯିଏ ସବୁ ଥିଲେ—ମ୍ୟୁନିସିପାଲିଟିର ଠେଲାଗାଡ଼ି ଗଡ଼େଇ ନେଇଥିବା ମେହେନ୍ତରର ବୁଢ଼ାଟିଏ; ଗୋରାକବର ଜଗୁଆଳି; ଆଉ ଦୁଇଟି ମୂଲିଆ । ଶସ୍ତା ପଟାର କଫିନ୍ ଭିତରେ ମିରାଣ୍ଡା ମଣ୍ଡଳକୁ ତା' ଘାହିଘରୁ ସେ ବୁହାଇ ନେଇଥିଲେ କବର ଦେବାପାଇଁ । ଖାତାରେ ତା'ର ନାଁ' ପରିଚୟ ନ ରହିଲେ କବର ଦେବାକୁ ଜଗୁଆଳି ମନା କରିଦିଏ ତ' !—ଜଗୁଆଳିର କ'ଣ ଥାଏ ?—ଜିଏ କହିଲେ ମିରାଣ୍ଡା ମଣ୍ଡଳ ତାଙ୍କ ସ୍ତ୍ରୀ । ସେ ସେଇଭଳି ବୁଝିଗଲା ଏବଂ ଲେଖିଦେଲା । କବର ପାଖରେ ମିଛ କ'ଣ, ସତ କ'ଣ ।"

ମୁଁ ଦ୍ରୋହ କଲାପରି ପୁଣି ସାଙ୍କୁଡ଼ିଗଲି । ଶ୍ରୀକାନ୍ତବାବୁ ଲକ୍ଷ୍ୟ କରି ଟିକିଏ ରହିଗଲେ ।

"ଅନେକ ଲୋକ କହନ୍ତି ଯେ ବ୍ରଜବାବୁ ତାଙ୍କଦ୍ୱାରେ ସେ ଯାଉକୁ ପ୍ରାପ୍ତ ଯାଉଥିଲେ । ହୁଏତ ଯାଉଥିଲେ ! ଏ ଘଟଣାଟା କିନ୍ତୁ ଅନ୍ୟ ପ୍ରକାର । ଆପଣ ବୋଧହୁଏ ଜାଣନ୍ତି ନାହିଁ

ଯେ ବ୍ରଜବାବୁଙ୍କୁ ଏଇନା ଅଣୀ ବର୍ଷ । ସେ ଊଣେଇଶ ସତଗ୍ଳଶ ମସିହାରୁ ଗ୍ରକଗ ଗ୍ଲଡ଼ିଦେଲେ । କହିଲେ, "ମୁଣ୍ଡ ଥରଟେ ବିକବା ଦୁର୍ଭାଗ୍ୟ । ଦୁଇଥର ବିକବା ଅପରାଧ ।" ତାଙ୍କୁ ସେତେବେଳେ ସତଗ୍ଳଶ ବର୍ଷ । ସେବଠୁଁ ସେ ଏମିତ ଗ୍ରଣଆଡ଼େ ବୁଲବାର, ନାନା ପ୍ରକାର ଲୋକଙ୍କ ସାଙ୍ଗେ ସମ୍ପର୍କ ରଖିବାର କଥା ସମସ୍ତେ ଜାଣନ୍ତି । କେବେ କେବେ ସେ ଏ ସହର ଗ୍ଲଡ଼ି କୁଆଡ଼େ ଯାଇନାହାନ୍ତି । ସନ୍ଧ୍ୟାବେଳୁ ରାତ ଦଶଟା ଯାଏଁ ଅନେକ ଜଞ୍ଜାଳ କରନ୍ତି, ଏଇ ଆଜ ଯେମିତ ଏଠିକି ଆସିଲେ । ନ ହେଲେ ଦାଣ୍ଡଘରେ ବସି ଔଷଧ ଦିଅନ୍ତି । ରାତ ଦଶଟାରେ କେଉଁ ଅନେକ ଦିନ ବାହାର ଯାଆନ୍ତି ଯେ ଫେରନ୍ତି ତା' ଆରଦିନ ଘଡ଼ିଏ ବେଳକୁ । କେହି କେହି କହନ୍ତି ଯେ ସେତେବେଳେ ତାଙ୍କର ଅସ୍ୱାଭାବିକ ଅବସ୍ଥା । ରିକ୍ସା-ବାଲମାନେ ତାଙ୍କୁ ଦାଣ୍ଡଘରେ ଶୁଆଇ ଗ୍ଲଯାନ୍ତି । ତା'ପରେ କେତେବେଳେ କ'ଣ କେମିତ ହୁଏ କେହି ଜାଣନ୍ତି ନାହିଁ । ଉପର ଓଳକୁ ସେ ଯୋଉ ଟେଙ୍ଗାକୁ ସେଇ ଟେଙ୍ଗା ।

···ଏମିତ ରାତରେ ଥରେ ସେ ବାହାରଥାନ୍ତି ସେଇ ସାଇବାଟେ । ମିଜାଜ୍ ଭଲ ଥାଏ । ସାତଘଡ଼ି ଅନ୍ଧାର ପରେ ଜହ୍ନ ଉଇଁ ଆସୁଥାଏ । ବ୍ରଜବାବୁଙ୍କ ହାତରେ ଦୁଇ ସୋରା, ବେକରେ ଦୁଇ ସୋରା ଯୂଇ ଫୁଲ । ଆଖିରେ ମଧୁର ମଧୁର ନିଶା । ଦିନେ ସେ ନିଜେ ଯାହା କହୁଥିଲେ ମୁଁ ମନେରଖି ଆପଣଙ୍କୁ କହୁଛି । ଉଲ୍ଲାସରେ ସେ ଗୁଣୁଗୁଣଉଥାନ୍ତି— 'ସାହି ଆସୁଥିଲ ଚନ୍ଦ୍ର ନିଶାରେ, ମଦାଳସା ।' ଏତକବେଳେ ତାଙ୍କୁ ଶୁଭିଲ କେହି ଜଣେ ସ୍ତ୍ରୀଲୋକ ଅତ କାତର ଚିତ୍କାର କରୁଛି । ସେ ଡାହାଣ ପାଖ ଦୋତାଲକୁ ଯିବା ପାଇଁ ବାଟ ଖୋଜିହେଲେ । ଜଣେ କେହି ଟୋ ପିଣ୍ଡାରୁ ତାଙ୍କୁ ଶୁଣେଇଲ ପରି କହିଲ, "ଉପରକୁ ଯାଅନାହିଁ । ସେଠି କାତବୋର ବନ୍ଦ ହୋଇଗଲଣି । ଯେ ସେମିତ ଏବେ ଦୁଇଦିନ ହେବ ମରୁଚ । ତାକୁ ଗ୍ଲଡ଼ ।"—ତାଙ୍କ ନିଶା ଫାକାସିଗଲ । ସେ ପାହାଚ ଚଢ଼ି ଯାଇ କବାଟ ବାଡ଼େଇଲେ । ଭିତରୁ କେବଳ ଆହୁରି ଚିତ୍କାର ଶୁଭିଲ । ସେ ଉପାୟ ନ ପାଇ ବାଲ୍‌କୋନି କାଚବାଟେ ସ୍ଲାଇଲାଇଟ୍ କାଚ ଟେକିଲେ । ହାତ ଗଳେଇ ଭିତର କଲଣିଟା ହୁଗୁଳେଇ ଦେବାରୁ କବାଟ ଫିଟିଗଲା ।···ଯେ ଘର ଭିତରେ ପଶୁ ପଶୁ ଅନୁଭବ କଲେ ଯେ ସେଇଠି ଆଲୁଅ ଲିଭଯାଇଛି । ପଦିନ ବୁଦ୍ଧ ହୋଇ ରହିଚ କେଉଁ କାଳରୁ । ସେ ପ୍ରଥମେ ଆଲୁଅ ଜାଳଦେଲେ । ଝରକା ଫିଟେଇଦେଲେ । ରାତର ପବନ ପଶି ଆସିଲ । ଜହ୍ନ ଦିଶିଲ । ଗୋଟେଇ ପୋଟେଇ ହୋଇ ପଡ଼ିଥିବା ଲୁଗା ଭିତରେ ମୁହୂର୍ତ୍ତିକ ପାଇଁ ଥମିଗଲା ଆର୍ତ୍ତନାଦ ।

ସେ ତା' ପାଖେ ଠିଆହୋଇ ପଚାରିଲେ, "ଶୋଷ କରୁଚ ?" କିଛିକ୍ଷଣ ପରେ ସେ ମୁହଁ ଉପରୁ ଚାଦର କାଢ଼ି ଚିତ୍କାର କଲ, "ନିକଲ୍ ଯା !—କୁକୁର କାହାଁକା ! କୁଆଡ଼େ ଆସିଚୁ ତୁ ?—ମୋ ପୋଷ୍ଟ ମାଉଁସ ଖାଇବୁ ?—ପୁଅ ପଚ ପଚ ଏ ଘା' ଚାଟିବାକୁ ଆସିଚୁ ?—ଭାଗ୍ ମୋ ସାମନାରୁ !!"

ବ୍ରଜବାବୁ ସେମିତ ସ୍ଥିର ହୋଇ ତାକୁ ଚାହିଁ ରହିଥାନ୍ତି । ତା'ର ମୁହଁ ଦେହ ସାରଆଡ଼େ ଝଲମଲ ବଡ଼ିନ୍ତ ପାଣିଭର ହୋଇ ରହିଥାଏ । ପୂତ ଆଇଁଷିଆ ଗନ୍ଧରେ ନାକ ଫାଟିଯାଉଥାଏ । ମରଣାନ୍ତକ ଯନ୍ତ୍ରଣାରେ ସେ ଛଟପଟ ହେଉଥାଏ । ଫାଇଁ ଫାଇଁ ହେଉଥାଏ । ପ୍ରଲାପ କରୁଥାଏ । ସେ ସେମିତ ସ୍ଥିର ହୋଇ ତାକୁ ପୁଣି ପଚାରିଲେ, "ପାଣି ପିଇବୁ ? ଶୋଷ କରୁଛି ?"

କେତେ ଦିନର ପାଣି ସେ ସୁରେଇରେ ଥିଲା କେଜାଣି, ସେଥିରୁ ମୁନ୍ଦେ ଗ୍ଲାସରେ ସେ ଟେକି ଧରିଲେ । କନା ସାହାଯ୍ୟରେ ମୁଣ୍ଡକୁ ଅଳ୍ପ ଉଠେଇ ଧରିଲେ । ସେ ସେତକ ପିଇଦେଇ ନଥିକନା ପଡ଼ିଗଲା । ଘୋଡ଼େଇ ହୋଇ ଚାଦର ତା' ଦେହରେ ଲାଗିଯାଇଥାଏ । ଗଦି କୋଟଟିଆ ପୁରୁଣା । ଖଟରେ ଦର୍ପଣ । କାନ୍ଥରେ ଚନ୍ଦ । ଅନେକ ଦିନରୁ ତା'ର ବ୍ୟବସାୟ ମଉଳିଯାଇ ସାରିଥିଲା । ବ୍ରଜବାବୁ କେବଳ ଅପେକ୍ଷା କଲାପରି ଠିଆ ରହିଥାନ୍ତି ।

ସେ ଆଖି ଫିଟାଇ ତାଙ୍କୁ ଚାହିଁଲା ଏବଂ ସକ୍ ସକ୍ ହୋଇ କାନ୍ଦିଲା । ବ୍ରଜବାବୁ ତା' ଦେହରେ ପୁରୁଣା ପାଝିଡର ତବାଏ ଝାଡ଼ିଦେଲେ । ଆଉଁସି ଦେଲେ ଲସାରେ ଲଗିରହିଥିବା ଲୁଗା ଉପରେ । କ'ଣ ମନ ହେଲା କେଜାଣି ତାଙ୍କ ହାତରୁ ବେକରୁ ଯୂଇମାଳ କାଢ଼ି ତା' ବୁକୁ ଉପରେ ଥୋଇଦେଲେ । ସେ ତାଙ୍କ ହାତକୁ ସେଇ ଫୁଲ ଉପରେ ଚାପି ରଖି ଆହୁରି କାନ୍ଦିଲା । କହିଲା, "ମୁଁ ତୁମକୁ ଚହ୍ନେ । ତୁମକୁ ଜୀବନସାରା ଅପେକ୍ଷା କରିଥିଲି । ପ୍ରତ୍ୟେକ ଗରାକକୁ ତୁମେ ଭାବି ମୁଁ ଦେହ ଦାନକରିଛି । ସେ ଚାଲିଯାଇଛି । ସମସ୍ତେ ଚାଲିଯାଇଛନ୍ତି । ମୁଁ ରକ୍ତ ଝରଉଛି ତୁମରି ଭଲ ।···ଆଃ···ତୁମକୁ ବି ସେମାନେ କଣ୍ଟା ମାରି ଦେଇଥିଲେ ନା !—ଉଃ···କି ଯନ୍ତ୍ରଣା···ମୋର ଭଲ ତୁମର କି ଯନ୍ତ୍ରଣା !!···ମୁଁ ତୁମକୁ ହିଁ ଭଲ ପାଏ !—କେତେ ଯେ ଭଲ ପାଏ !! ମୋତେ କେହି ବୁଝିଲେନାହିଁ । ମୋତେ କେହି ଭଲ ପାଇଲେନାହିଁ ।—ମୁଁ ଏକଦା ସୁନ୍ଦର ଥିଲି···ଭାରି ସୁନ୍ଦର, ବିଶ୍ୱାସ କର !—ମୋର ଫୁକ୍‌ପିନ୍ଧା ଫଟୋ ଦେଖିଲେ ତୁମେ ଚାହିଁରହିଥିବ ।···

ତା'ପରେ ସେ ଗୁଡ଼ାଏ କ'ଣ ସବୁ ପ୍ରଲାପ କଲା । ବ୍ରଜବାବୁ ସେଇଠି ପୁରୁଣା ଧୂପକାଠି ବଡ଼ାଏ ଜାଳିଦେଲେ । ଅପରିଷ୍କାର ତଉଲିଆଟିଏ ଧରି ତାକୁ ବିଞ୍ଚିଦେଲେ । ସେ ହୁଏତ କିଛି ସମୟ ଶୋଇଗଲା । ସେ ବାହାର ବାଲ୍‌କୋନିରେ ଚୌକି ପକାଇ ଢୋଳଉଥାନ୍ତି । ହଠାତ୍ ଚିତ୍କାର ଶୁଭିଲା । ସେ ଯାଇ ଦେଖନ୍ତି ଯେ ମିରିଣ୍ଡା ଛଟପଟ ହେଉଛି । ଦରିଣ୍ଡି ହେଉ[illegible] । ସ୍ୱାଙ୍କ ହାତକୁ ପାଇ ପୁଣି ବୁକୁ ଉପରେ ଚାପିଧରିଲା । ଅସ୍ପଷ୍ଟ ସ୍ୱରରେ କହିଲା, "ମୋ[illegible] ଛାଡ଼ିଯାଅନାହିଁ, ମୋତେ ଛାଡ଼ିଯାଅନାହିଁ ।"—ତା'ପରେ ସେ ମରିଗଲା । କାନ୍ଥରୁ [illegible] ଫୁଲଟିକୁ ବ୍ରଜବାବୁ ତା' ବୁକୁ ଉପରେ ଥୋଇଦେଲେ । ଚାଦରରେ ଘୋଡ଼େଇ ଦେଲେ ସେ ପଡ଼ି ଯାଇଥିବା ମୁହଁଟିକୁ ।···ତା ଉପରୁ ଖୁବ୍ ଧାଁ ଦଉଡ଼ କରି ସେଦିନ ସନ୍ଧ୍ୟାବେଳକୁ ଯାଇ କବରଖାନା ପାଖରେ ସେ ତାକୁ ସେଭଳି ସ୍ୱୀକାର କଲେ । କହିଲେ, 'ମିରିଣ୍ଡା ମଣ୍ଡଳ ମୋ ସ୍ତ୍ରୀ ।'

ମୁଁ ଥମ୍ ହୋଇ ବସି ରହିଲି । ଚୌକି ଦଣ୍ଡାକୁ ଖୁବ୍ ଜୋର୍‌ରେ ଚପି ଧରିଥାଏ । ଦାନ୍ତକୁ ଚାବି ରଖିଥାଏ । ମୁହଁ ଟେକି ମୁଁ ଆଉ ସେଦିନ ଶ୍ରୀକାନ୍ତ ସାମନ୍ତଙ୍କୁ ଚାହିଁପାରିଲି ନାହିଁ । ମାରବରେ ଉଠି ଚାଲିଆସିଲି ଆମ ଘରକୁ । ବାହାରେ ସେମିତି ଅନ୍ଧାର । ସେମିତି ଟୋପି ଟୋପି ବର୍ଷା !

ତା'ପରେ ମୁଁ ସେ ଅଦ୍ଭୁତ ମଣିଷଟିର ପିଛା ଲାଗିଗଲି । ତାଙ୍କର ସେ ପାନଖିଆ ପାଚୁଆ ପାଟିର ସ୍ଥିର ହସଟି ଭେଦି ତାଙ୍କୁ ଚହ୍ନିବା ସହଜ ନଥିଲା । ପ୍ରତିଦିନ ସେବକ ଢଙ୍ଗରେ ସାଇକେଲଟିଏ ନେଇ ମୁଁ ତାଙ୍କ ଘରେ ପହଞ୍ଚିଲି । ...ଆସ୍ତେ ଜାଣିଲି ସେ ତାଙ୍କ ସ୍ତ୍ରୀ ପକ୍ଷାଘାତ ରୋଗରେ ପଡ଼ିଛନ୍ତି ଅସୁମାରି କାଳରୁ । ତାଙ୍କୁ ଦେଖାଶୁଣା କରିବା ବୁଢ଼ାଙ୍କ କାମ । ସେ କେବେ କାହାକୁ ଡ଼ାକି ଦେଇନାହାନ୍ତି ଆସି ଟିକିଏ ସାହାଯ୍ୟ କରିବାକୁ । ତାଙ୍କ ଗାଁ ସମ୍ପତ୍ତି ଅନ୍ୟମାନେ ଖାଇଯାଉଥାନ୍ତି; ସେ ପଦେ କହି ନାହାନ୍ତି କାହାକୁ । ତାଙ୍କ ନିଜର ମଳକଣ୍ଟକ ରୋଗ ଅଛି, ବହୁମୂତ୍ର ରୋଗ ଅଛି । ସେ ଔଷଧ ଖାଆନ୍ତିନାହିଁ । କଷ୍ଟହେଲେ କାହାକୁ କହନ୍ତିନାହିଁ । ତାଙ୍କର ପଇସାର ଅଭାବ ହେଇଛି । ନିର୍ବିଚାର ଖର୍ଚ୍ଚ କରିଦେଇଛନ୍ତି । ସେ କ'ଣ ସେଥିପାଇଁ କାହାକୁ ହାତ ପତେଇଥାନ୍ତେ ? ସେମିତି ସହି-ଯାଇଛନ୍ତି । ପେଟରୁ କାଟି ଦେଇଛନ୍ତି । ପିଠିରୁ କାଟି ଦେଇଛନ୍ତି ।

ମୁଁ ସେ ବେଳୁବ୍ ମଣିଷଟା ଉପରେ ଦିନେ ହଠାତ୍ ଚିଡ଼ିଗଲି । ସେ ଏମିତି କେତେକାଳ କେବଳ ଦେଉଥିବ ଏ ସଂସାରକୁ ?—ସେ କ'ଣ କିଛି ନେବନାହିଁ ?—ତା'ର କ'ଣ କିଛି ପ୍ରାପ୍ୟ ନାହିଁ ?—ମୋତେ ଲାଗୁଥାଏ ଯେ ମୋ ନିଜ ଦେହରୁ କେହି ଲୁଗା କାଢ଼ି ନେଉଛନ୍ତି । ମୁଁ ଦେଉଛି ବୋଲି ଜାଣିଦେଲା ପରେ ମୋ ମାଂସ ଛେଲି ନେଇଯାଉଛନ୍ତି । ହସି ହସି ବେପରୁଆ ମୋତେ ଲୁଟି ଲାଗିଛନ୍ତି ।—ଅଥଚ ଲଙ୍ଗଳା ଗଛଟିଏ ପରି ମୁଁ ତାଙ୍କୁ ସହି ଯାଉଛି !!—ମୁଁ ରାଗି ମାଗି ପହଞ୍ଚିଲି ବ୍ରଜବାବୁଙ୍କ ପାଖରେ । ସେ ମୋତେ ଦେଖୁ ଦେଖୁ କହିଲେ, "ମୁଁ ଆପଣଙ୍କ ପାଖକୁ ତ ବାହାରିଥିଲି । ଆପଣଙ୍କ ପୁଅପାଇଁ ସିଟ୍ ମିଳିଯିବ । ମୁଁ ପ୍ରିନ୍‌ସିପାଲଙ୍କୁ କହି ଆସିଛି । ପାଠ ନ ପଢ଼ିଲେ ପିଲାଟା କ'ଣ କରିବ ?"—ତା'ପରେ ଅଳ୍ପ ହସି କହିଲେ, "ଯିବାର ଆଉ ଗୋଟିଏ କାରଣ ଥିଲା । ଆସିବା ବାଟରେ ଏ ମକା ପୋଡ଼ା ଦେଖି ମନ ହେଲା, ମାନୁ, ନିକୁ, ଝୁକୁ ପାଇଁ ନେଇ ଯିବାକୁ । ଏଥିରେ ବଡ଼ପୁଅ ବୁଢ଼ା ପାଇଁ ଆଉ ଆପଣ ଦୁଇଜଣଙ୍କ ପାଇଁ ମଧ୍ୟ ଅଛି ।..."

ଧେତ୍ ତେରି, ଏ ବୁଢ଼ାଟାକୁ ପାରହେଲା ନାହିଁ । ମୁଁ କାନ୍ଦ କାନ୍ଦ ହେଇଗଲି । ମୁଁ ଏଥିପାଇଁ ଅଲବତ୍ ପଇସା ଦେଇଦେବି; କିନ୍ତୁ ତାଙ୍କ ମୁହଁକୁ ଚାହିଁଦେଇ ନିରସ୍ତ ହୋଇଗଲି । ମୋ ପିଲାମାନେ ତାଙ୍କ ନାତିନାତୁଣୀ । ସେ ତାଙ୍କ ପାଇଁ ମକା ପୋଡ଼ା କିଣିଛନ୍ତି ।—ମୁଁ କିଏ ସେଥିରେ ବାଧାଦେବାକୁ । ଆମ ସାହିର ପିଲାଟିଏ ହାତରେ ତାକୁ ପଠେଇଦେଇ ମୁଁ ରହିଲି ।

ସେ ମଝିରେ ମଝିରେ ଘରକୁ ପଶିଯାଇ ବାହାରି ଆସୁଥାନ୍ତି । ଶେଷରେ ମୋତେ ଡାକ-ନେଲେ ଭିତରକୁ । କଟଟ୍-ଲଗି ହୋଇ ପଡ଼ିଥିବା ସେ ମଣିଷଟିକୁ ଦେଖାଇ କହିଲେ, "ଆଜି ଏ ଉଠିଯିବାକୁ ବସିଛି । କହି ହେଉନାହିଁ କେତେ ରାତି ହବ ! ଆପଣ କାହିଁକି ଧନ୍ଦି ହେବେ ?—ଘରକୁ ଯାଆନ୍ତୁ ।"

ମୁଁ କ୍ରୋଧରେ କାନ୍ଦି ପକେଇଲି ।—ଏ ଗୋଟାଏ ରାତିପାଇଁ କିଆଁ ଲଗି ଯାଉ କନା ମୋ ଘରେ—। ଏକାଅଶୀ ବର୍ଷରେ ତୁମର ସ୍ତ୍ରୀ ମରୁଚି । ତୁମ ନିଜର କେହି ନାହିଁ । ତୁମେ ମଳକଣ୍ଟକ, ବହୁମୂତ୍ର ରୋଗୀ । ତୁମେ, ମୋତେ ମୋ ପିଲାଙ୍କୁ ଅଜସ୍ର ଔଷଧ ଦେଇ ଭଲ-କରିଚ । ମୁଁ ତୁମକୁ ଛାଡ଼ି ଚାଲିଯିବି ? ମୁଁ କ'ଣ ଏଡ଼ିକି ନିମକହାରାମ, ନୀଚ, ହୀନ, ଅକୃତଜ୍ଞ ହୋଇଚି । ମୁଁ କଥାରେ କେତେ ଜୋର୍ ଦେଲି ମନେନାହିଁ । ଖାଲି କହିଲି, "ନା, ମୁଁ ଯିବନାହିଁ ।" ସେ କିଛି କହିଲେନାହିଁ । ପୁଣି ଦାଣ୍ଡଘରକୁ ଚାଲି ଆସିଲେ । ଅଳ୍ପ ସମୟ ପରେ ଶ୍ରୀକାନ୍ତ ସାମନ୍ତ ଆସି ପହଞ୍ଚିଲେ । ଡେକ୍‌ଚିଟିରେ ଗହମ ଗୁଣ୍ଡକରି ଆଣିଥାନ୍ତି । କାଗଜ ପୁଡ଼ାଟିରେ ଯୋଡ଼ିଏ ସେଓ ଆଣିଥାନ୍ତି ।

ଓ, ତା'ହେଲେ ଶ୍ରୀକାନ୍ତବାବୁ ଏମିତି ଭିତରେ ଭିତରେ ସେବାରେ ଲାଗିଛନ୍ତି । —'ବାଃ', ମୋ ଆଖି ଜକେଇଗଲା । ବ୍ରଜବାବୁ ଚିଁ ଚୁଁ କିଛି କଲେନାହିଁ । ଜିନିଷ ଥୋଇ-ଦେଇ ସେ ଆସିବା ପରେ ତାଙ୍କୁ କୌତୁକ କଲାପରି ପଚାରିଲେ, "ଲିଲି ମୁଣ୍ଡରୁ ଉକୁଣି ଛାଡ଼ିଲେଣି ନା ନାହିଁ ?" ଲିଲି, ଶ୍ରୀକାନ୍ତବାବୁଙ୍କ ବଡ଼ ଝିଅ । ସେ କିଛି କହିଲେନାହିଁ । ସାମାନ୍ୟ ହସିଲେ । ଆସି ମୋ ପାଖେ ବସିଲେ । ଆମେ ଠରାଠରି ହୋଇ ବୁଝିଗଲୁ !

ସେଦିନ ରାତିରେ ବୁଢ଼ୀ ଚାଲିଗଲେ । ଖୁବ୍ ପାଖରେ ମଶାଣି । ପାହାନ୍ତିଆ ବେଳକୁ ଚିତା ଲିଭିଆସୁଥାଏ । ସକାଳୁ ଦୁଇଟି ଲୋକଙ୍କୁ ଶ୍ରୀକାନ୍ତବାବୁ ଯୋଗାଡ଼ କରି ନେଇ-ଆସିଲେ । ଘର ସାରା ଧୁଆଧୋଇ ହେଲା । ବୁଢ଼ା ଦୁଇ ଚାରିଘଣ୍ଟା ପାଇଁ କୁଆଡ଼େ ବାହାରି ଯାଇଥିଲେ ।

× × × ×

ବୁଢ଼ୀ ମରିବାର ଦୁଇମାସ ହୋଇଗଲାଣି । ବ୍ରଜବାବୁ ଆଉ ଔଷଧ ଦେଉନାହାନ୍ତି । ସିମୁଳି ପଦରର ସ୍କୁଲମାଷ୍ଟ୍ରେ ଭୁଞ୍ଚୁକା ହୋମିଓପାଥି କରନ୍ତି । ତାଙ୍କୁ ଡାକି ସବୁ ଔଷଧ-ବାକ୍ସ, ବହିପତ୍ର ଦେଇଦେଲେ ।

ଶ୍ରୀକାନ୍ତବାବୁ କହୁଥିଲେ ଯେ ତାଙ୍କର ସବୁ ସମ୍ପତ୍ତି ଗାଁ ଠାକୁରଙ୍କ ନାଁରେ ଲେଖିଦେଲେଣି । ଏ ଘରଟାକୁ ଉଇଲ୍‌ନାମା କରିଦେବାକୁ ବସିଛନ୍ତି । ହଉ, ଛାଡ଼ ! ବୁଢ଼ା ଏମିତି ନିଜକୁ ଖଣ୍ଡ ଖଣ୍ଡ କରି ମାଉଁସ ବାଣ୍ଟିଲାପରି ବାଣ୍ଟିଦେବ । କିଏ ତାକୁ ଭଲ ଚାକି ପାରିବ ?—ଏବେ ଦିନେ ଧଡ଼ି ଆଗ୍ରହଙ୍କୁ ଡାକି ସବୁ ଦିଅଁଙ୍କ

ଫଟୋ, ଖଟୁଳିରେ ଶାଳଗ୍ରାମ, ପୂଜା ସରଞ୍ଜାମ, ଘଣ୍ଟି, ରେକାବ, ପଞ୍ଚପାତ୍ରୀ ସବୁ ଦେଇ-ଦେଲେ । କହିଲେ, "ମୁଁ ଏମାନଙ୍କୁ ଆଉ ସମ୍ଭାଳି ପାରିବିନାହିଁ । ଆପଣ ଏମାନଙ୍କୁ ନେଇଯାନ୍ତୁ । ଏ ସାମାନ୍ୟ ଦକ୍ଷିଣା ମଧ୍ୟ ନିଅନ୍ତୁ !" —ଆଗ୍ରହିତ କହୁଥିଲେ ଯେ ତାଙ୍କୁ ଶହେ ଏକ ଟଙ୍କା ଦକ୍ଷିଣା ମିଳିଲା । ଜାତଆ ଚନ୍ଦମୂର୍ତ୍ତି ଗଣ୍ଡୁକି ଶାଳଗ୍ରାମ ମିଳିଲେ ।

ତାଙ୍କର ସାଇକଲ୍ ଖଣ୍ଡ ଆଉ ନାହିଁ । କାହାକୁ ଦେଇଦେଲେ ଜଣାପଡ଼ୁନାହିଁ । କିଏ କହୁଛି ଚୋରି ହୋଇଗଲା ବୋଲି । ବାକ୍ସପତ୍ର ମଧ୍ୟ ଚୋରି ହୋଇଗଲା । କ'ଣ ଯାଏ ଆସେ କାହାର ? ବୁଢ଼ା କ'ଣ କାହାକୁ କହୁଛି, ନା କାହାକୁ ଖାତିର୍ କରୁଛି !—ହୁଁ, ଊଣା ଗଉଁ ସେ ଏକାଅଶୀ ବର୍ଷ ବୁଢ଼ାଟିର !

କାଲି ବସ୍ତାନିଟିଏ ଧରି ମୋ ଘରେ ଆସି ପହଞ୍ଚିଲେ । ପିଲାଙ୍କ ସଙ୍ଗେ ଟାପରା ହେଲେ । ମୁଁ କରଛଡ଼ା ଦେଲାପରି ଥାଏ ।—ଏମିତି ମୋତେ କାହିଁକି ଗ୍ରେଟ କରି ଦେଉଛ, ମହାପୁରୁଷ !—ତମେ ଏ ସଂସାରକୁ ଏମିତି ନେଇପାର, ପୁଣି ଏମିତି ଛାଡ଼ି ଦେଇପାର ବୋଲି ମୋତେ ଟାହିଲି କଲାପରି କାହିଁକି ସୂଚେଇ ଦେଉଛ ବାରମ୍ବାର ?—କାହିଁକି ଜଣେଇ ଦେବାକୁ ଚାହୁଁଛ ଯେ ମୁଁ ଟା ଗୋଟାଏ ମୂଢ଼ ସଂସାରୀ । ମୋତେ ଲୁହା ଜଞ୍ଜିର ଚାରିଆଡ଼େ ବାନ୍ଧି ରଖିଛି !—ଆଉ ତୁମେ ଫୁର୍ ଫୁର୍ ଚଢ଼େଇ ପରି ଉଡ଼ିଯାଇ ପାରୁଛ !!—

ସେ ମୋ ପାଖରେ ଆସି ବସିଲେ । ପୁଣି ସେଇ ପାକୁଆ ପାଟିରେ ହସ । "ଆପଣଙ୍କ-ଠାରେ ମୋର ଗୋଟିଏ ଅନୁଗ୍ରହ ପ୍ରାର୍ଥନା ଥିଲା ।"—ମୋ ନାକପୁଡ଼ା ଜଳିଉଠିଲା । ସେଇବାଟେ ଲୁଣିଆ ଲୁହ ନିଗିଡ଼ି ଆସିଲାପରି ଲାଗିଲା ।···ତୁମକୁ ମୁଁ ଅନୁଗ୍ରହ କରିବି ?—ନାଇଁ ??—କ'ଣ ଆଉ ବିଦ୍ରୂପ କରିବାର ବାକି ଅଛି ?

କିଛି ନ କହି ଅପେକ୍ଷା କଲି ।

"ମୁଁ ଯେତେବେଳେ ଏଗାର ବର୍ଷରେ ବ୍ରତ ହେଲି, ଏ ଭଗବଦ୍‌ଗୀତା ଖଣ୍ଡ ମୋ ଜନନୀ ମୋତେ ଦେଇଥିଲେ । ମୁଁ ତାକୁ ଏମିତି ସତୁରି ବର୍ଷ ପାଳିଲି । ସେ ମୋତେ ପାଳିଲା ।··· ଆଉ ପାରିବିନାହିଁ । ପ୍ରୟୋଜନ ମଧ୍ୟ ନାହିଁ । ଏ ଡୋରଟିକୁ କାଟିବାକୁ ଆସିଛି ! ଆପଣ ଯୋଗ୍ୟଲୋକ । ଶାସ୍ତ୍ର ଅନୁରାଗ ରଖିଛନ୍ତି । ଏ ଗ୍ରନ୍ଥଟିକୁ ନେଇ ମୋତେ ମୁକ୍ତ କରନ୍ତୁ ।"

ଛିଟ ବସ୍ତାନିରେ ଗୁଡ଼ିଆ ହୋଇଥିବା ସତୁରି ବର୍ଷର ସମ୍ପଦ ଏବଂ ସାଥୀଟିକୁ ସେ ଦୁଇ ହାତରେ ଟେକି ଧରିଲେ । ମୋ ଦେହ ଶିତେଇଗଲା । ମୋର ସାହସ ହେଲାନାହିଁ ସେ ଦାନ ଗ୍ରହଣ କରିବାକୁ । ସେ ମୋ କୋଳ ଉପରେ ରଖି ଦେଇ ଦେଉ ମୁଁ ତାକୁ ତୋଳି ନେଇ ମଥା ଉପରେ ଥୋଇଲି । ମୋ ଆଖି ବୁଜି ହୋଇଗଲା । ଲୁହ ନିଗିଡ଼ିଗଲା ।

ବ୍ରଜବାବୁ ମୁହୂର୍ତ୍ତେ ତଳକୁ ଚାହିଁରହିଲେ । ତା' ଉତ୍ତାରୁ ସେମିତି ହସ ! ସେମିତି ଛିଟ ଚାହାଣି ।—କଣ୍ଢେଇଟିଏ ପରି ଠୁକ୍‌କିନା ଠିଆହୋଇ ପଡ଼ିଲେ । ମୋ ସାନ ଝିଅର ଗାଲ ଚିପି ଦେଇ ଥଟ୍ଟା କଲେ । ପଛକୁ ନଚାହିଁ ଠୁକ୍ ଠୁକ୍ ଚାଲିଗଲେ ରାସ୍ତା ଉପରକୁ ।

ଶ୍ରୀକାନ୍ତ ସାମନ୍ତ କେତେବେଳେ ଆସି ମୋ ପାଖରେ ଠିଆ ହୋଇଯାଇଥିଲେ । ଆମେ ଚ୍ହିଁରହିଲୁ କିଛି ସମୟ । ସନ୍ଧ୍ୟାବେଳେ ପାଚିଲ ଖରା ପଡ଼ୁଥାଏ ଅପସର ଯାଉଥିବା ସେ ଶ୍ଳେଟ ମଣିଷଟି ଉପରେ । ଚନ୍ଦାମୁଣ୍ଡ ଚକ୍ ଚକ୍ କରୁଥାଏ ସୁନା ପରି ।

ଶ୍ରୀକାନ୍ତବାବୁ ଆସ୍ତେ କହିଲେ, "ଆଜି ବୁଢ଼ା କେଡ଼େ ନିର୍ମଳ ଦେଖା ଯାଉଛନ୍ତି, ନୁହେଁ ? ହଅଅ !—ମୋ ଭିତରେ କାନ୍ଦ କାନ୍ଦ ସ୍ୱରଟିଏ ଶୁଭିଲା, ଆଉ କାହାକୁ ଭଲ ସେ ଦିଶୁଛନ୍ତି ?···ଏ ପରି ରସିକ ବୁଢ଼ା । ଅସୁମାର ଭୋଗିଚି !—କୁଆଡ଼େ ଖାଲି ଜଣା ଆଉ ମାଇକିନା ନେଇ ଜୀବନ ବିତେଇଚି ।

ହାୟରେ, ହତଭାଗା ସଂସାର !!

---

# ଯୋଦ୍ଧା

ମୁଁ ଖନୁ ସିଂ । ସେମିତି କିଛି ଡରକୁଳା ନୁହେଁ । ଉହଗ ବି ନୁହେଁ । କଥାରେ ଗୁଡ଼ାଏ ଡମ କହି, ଫୁଟାଣି କାଟି, ଭିତରେ ଲଙ୍ଗୁଡ଼ ଲୁଚେଇ ବୁଲୁଥିବା କୁହାକପିଲା ନୁହେଁ । ମୁଁ ଢେର ମୁକାବିଲା କରିଛି । ଏବେ ବି କରିବି, ବେଳ ପଡ଼ିଲେ । ମୁଁ କିନ୍ତୁ ମାନୁଛି ଯେ, ତାକୁ ସେଦିନ ସନ୍ଧ୍ୟାରେ ପ୍ରଥମ ଥର ଦେଖିଲାବେଳୁ, କାହିଁକି କେଜାଣି, ମୋତେ ଖାଲି ଅସୁସ୍ଥ ଲାଗୁଛି । ଛନ ଛନ ଲାଗୁଛି । ଏକୁଟିଆ ଚାଲିଲାବେଳେ ବାରମ୍ବାର ପଛକୁ ଲେଉଟି ଚାହିଁଦେବାକୁ ମନ ହେଉଛି ! ମୁଁ କାହାକୁ ଏଯାଏଁ ତିଳାର୍ଦ୍ଧେ ଖାତିର କରିନାହିଁ ବୋଲି ମୋର ପ୍ରଚଣ୍ଡ ଗର୍ବ । ମନ କଲେ ସ୍ୱା'କୁ ବାଏଁ ବାଏଁ ହସି ଉଡ଼େଇ ଦିଅନ୍ତି । ସେଇଟା କିନ୍ତୁ ମିଥ୍ୟା ହବ । ଖନୁ ସିଂ ଏଭଳି କଥାରେ ମିଛ କହେନାହିଁ । ସେ କ'ଣ ଆଉ କାହା ଭଳି ଲୁଙ୍ଗୁରି ମାଇଚିଆ ହେଇଚି କି !

ସେଦିନ ସନ୍ଧ୍ୟାରେ ମୋ ସାମ୍ନାରେ ଗଦାଏ ଫୁଲମାଳ । ମଣ୍ଡପ ଚାରିଆଡ଼େ ପ୍ରସ୍ତ ପ୍ରସ୍ତ ଅସ୍ପଷ୍ଟ ଖଟ-ବନ୍ଦନା । ଏଠିସେଠି ଆଠ ଦଶଟା ଗ୍ୟାସ୍ ଲାଇଟ୍‌ର ଚେକା ଚେକା ଆଲୁଅ ! ଟିକିଏ ଦୂରକୁ ଗଛପରି ଠିଆ ହୋଇଥାଏ ଅନ୍ଧାର । ସଭା ସରିଥାଏ । ଲୋକ ଏମିତି ଶହେ ଦୁଇଶ' ଟହଲୁଥା'ନ୍ତି । ଖାଇପିଇ ପୁଣି ଘଣ୍ଟେ, ଦୁଇଘଣ୍ଟା ପରେ ଫେରିବେ, ଦାସକାଠିଆ ଶୁଣିବାକୁ ! ଦାଉ ଦାଉ ରୂପା ପାନଡବାରୁ ଖଣ୍ଡିଏ କାଢ଼ିଲାବେଳକୁ ମହକ ଯାଉଥାଏ । ଭଗୁ ପାନବାଲାର ଟର୍ଣ୍ଣିକିଆ ସ୍ପେଶାଲ ! ନିଜ ଉପରେ ନିଜେ ମୁଗ୍ଧ ହୋଇ ଦିବାନଖାସର ସନ୍ତୁଷ୍ଟ ବାଦଶାହ ଭଙ୍ଗୀରେ ଚୌକି ଉପରକୁ ଆଉଜିପଡ଼ିଲାବେଳେ ହଠାତ୍ ସେ ଚେହେରା ଉପରେ ଆଖିପଡ଼ି ଛିଟିକି ଆସିଲି । ଗୋଟାଏ ଖୁଣ୍ଟକୁ ଆଉଜି ପଛକୁ ହାତକରି ସେ ଠିଆ-ହୋଇଥିଲା । ତା' ହାତଯୋଡ଼ାକ ସିଲ୍‌କ ରୁମାଲଟାରେ ବନ୍ଧା ହୋଇଥିଲା ! ହାତବାଲା ଗେଞ୍ଜି ତଳକୁ ବାଟିକ୍ ଲୁଙ୍ଗି ! ହଲେ ନରମା ଓହ୍ଲାଳ ବାଳ । ନୁଆଣିଆଁ ଆଖି, ଲମ୍ବା ମୁହଁ, କ'ଣ ସେ ନାଲି ଛକ-କଟା ହୋଇଥିବା ପଣାପାଳିଆ ଗାମୁଛାର ଓଢ଼ଣା ଆଢ଼ୁଆଳରେ ସ୍ପଷ୍ଟ ଦିଶି ପାରୁନଥିଲା ? ଦୁଃଖିଶ୍ୟାମ ସେଠିକି କେମିତି ଆସିଥା'ନ୍ତା ?—କାହିଁକି ବା ଆସନ୍ତା ?···ଆଉ ଥରେ ଚାହିଁଦେବାକୁ ମୋର ହିମ୍ମତ୍ ହେଲାନାହିଁ । କଡ଼ା ପାନଟା ହଠାତ୍ ମୁଣ୍ଡକୁ ଧରିଦେଲା । କପାଳ ଉପରେ ବାଳ ମୂଳେ, ବେକ ବୁକୁରେ ଝିର୍‌ଝିର୍ ଝାଳ ଜକେଇଗଲା । ଅସୁସ୍ଥ ଲାଗୁଛି କହି ଫିସ୍‌ଫିସ୍ କରୁଥିବା ସମ୍ଭ୍ରମର ଶିଉଳି ଆଡ଼େଇ ଗମ୍ଭୀର ପାଣିକୁ ଓହ୍ଲେଇ ଗଲାପରି ଗାଡ଼ିପର୍ଯ୍ୟନ୍ତ କୌଣସିମତେ ଚାଲିଗଲି । ମୋର ସ୍ପଷ୍ଟ ମନେଅଛି, ମୁଁ ଜମା ସେ ଐଶାନ୍ୟ କୋଣଟାକୁ ଚାହିଁପାରୁନଥିଲି ।

ସେଦିନ ଶୁକ୍ରବାର ଥିଲା । ମଙ୍ଗଳବାର ଯାଏ ସବୁ ଗସ୍ତ କାର୍ଯ୍ୟକ୍ରମ ବାତିଲ୍ କରି ସେଇ ରାତିରେ ହିଁ ମୁଁ ଫେରିଆସିଲି । ବାଟରେ କୋଉଠି କେଜାଣି ଗାଡ଼ି ରଖି ଡ୍ରାଇଭର ଓହ୍ଲେଇଗଲା ଚା' ପିଇ ଚେଙ୍ଗା ହେବାକୁ । ଢୋଳ ମୋତେ ବି ମାଡ଼ୁଥିଲା । ମୋର କିନ୍ତୁ ଇଚ୍ଛା ହେଉନଥିଲା ଗାଡ଼ିଭିତରର ନିରାପତ୍ତା ଛାଡ଼ି ସେତେବେଳେ ଓହ୍ଲେଇ ଆସିବାକୁ । ଗୋଟାଏ ବଡଖୁଣ୍ଟ ପାଖରେ ଗାଡ଼ି ଠିଆହୋଇଥାଏ । ପଛଆଡ଼ୁ କିଏ ଜଣେ ଆସି ଡ୍ରାଇଭର ସିଟ୍ ପାଖରେ ଭିତରକୁ ଓହଳି ଅନେଇଲା । ତା' ମୁଣ୍ଡରେ ଗୋଟାଏ ଚାଦର । ବୁକ୍ ଦାଉଁ ଦାଉଁ ଶୁଣି ମୋ ଆଖି ଉପରୁ ନିଦର ଚୁଇଁ ଚଢ଼େଇଟି ଉଡ଼ିଗଲା । ମୁଁ ଡବ ଡବ ଆଖିରେ ସେ ଚାଦର ଓଢ଼ଣାଟାକୁ ଚାହିଁଲି । ସେଥିରେ ପଣାପାଲି ଭଳି ନାଲି କୋଠି ଦିଶି ନିଭିଗଲା ଗୋଟାଏ ମୁହୂର୍ତ୍ତରେ । ସମଗ୍ର ଓଢ଼ଣାଟା ନାଲି । ସେଇଟା ନାଲି ଟାଓ୍ୱେଲଟାଏ । ମୁହଁଟା ଗୋଟାଏ ବୁଢ଼ା ସାଲୁବାଲୁ ପଞ୍ଜାବୀ ସର୍ଦ୍ଦାରର । ସେ କ'ଣ ପଚାରିଲା, ଅଥବା ମୁଁ କ'ଣ କହିଲି ମୋର ମନେନାହିଁ । ଡ୍ରାଇଭର ଆସିଲାବେଳକୁ ମୋର ନିଃଶ୍ୱାସ ଦପ ଧରୁଥାଏ । ସର୍ଦ୍ଦାରଟା ଟହଟହ ହସି ଆଡ଼ ହୋଇଗଲା । ମୋର ପ୍ରାଇଭେଟ୍ ସେକ୍ରେଟାରୀ ତାକୁ କ'ଣ ଶୋଧାଶୋଧି କଲା ହୁଏତ । ସର୍ଦ୍ଦାର ଟିକିଏ ପିଇଦେଇଥିଲା ବେଶି । ସର୍ଦ୍ଦାରର ରଡ଼ନିଆଁ ପରି ଆଖି, ଫେଣ ବଜବଜିଆ ପାଟି । କଥାରେ ମହୁଲି ଗନ୍ଧ, ମୋତେ ଆଉ ବେଳେ ହୁଏତ ଭଲ ଲାଗିଥାନ୍ତା । ସେ ରଙ୍ଗ ଟାଓ୍ୱେଲଟା ସେମିତି ମୁଣ୍ଡରେ ଓଢ଼ଣା କରି ସେ କାହିଁକି ପକାଇଥିଲା ?—ସେମାନେ ସେଭଳି ଢକାନ୍ତି । ସେଇଟା କିଛି ନୂଆକଥା ହୁଏତ ନଥିଲା । ମୋତେ କିନ୍ତୁ ଖୁବ୍ ଅସୁସ୍ଥ ଲାଗିଲା । ବାଟସାରା ମୋତେ ଆଉ ନିଦ ହେଲାନାହିଁ । ମୁଁ ମଟମଟ ଚାହିଁ ରହିଥାଏ ସାମ୍ନାକୁ । ରୋଡ଼ ଉପରେ ଗଛେ ଉଚ୍ଚର ସରୁ ମୁହଁଟାଏ ଲୁଆଣିଆଁ ଆଖିରେ ତଳକୁ ଚାହିଁ ରହିଥାଏ । ତା' ମୁଣ୍ଡ ଉପରେ ସେ ଚାଦରଟା ଝୁଲି ରହିଥାଏ ରୋଡ଼ ତଳର ଗଛତେର ପର୍ଯ୍ୟନ୍ତ । ତା' ଓହଳ ନିଶ ତଳେ ଗାଡ଼ିଟା ଗଡ଼ି ଚାଲିଥାଏ ଉତ୍ତରରୁ ଅନିର୍ଦ୍ଦିଷ୍ଟ ଦକ୍ଷିଣକୁ ।

ସକାଳ ହେଲେ ବାସ୍ତବିକ ଭଲଲାଗେ । ଅନ୍ଧାର, କୁହୁଡ଼ି ସ୍ୱପ୍ନ ସବୁ ଉଭେଇଯାଏ । ଜଗତଯାକ ସ୍ପଷ୍ଟ ହୋଇଯାଏ । କେହି ଆଉ କାହାଭଳି ଦିଶିବାର ଅବକାଶ ନଥାଏ । ମୁଁ ଖୁବ୍ ଆଶ୍ୱସ୍ତ ଏବଂ ନିଶ୍ଚିନ୍ତ ବୋଧକଲି । ଗାଧୁଆ ପାଧୁଆ ସାରି ଜଳଖିଆ ଖାଇଦେଲି ପରେ ମୋର ମହାମହିମ ମିଜାଜ୍ ପୁନଶ୍ଚ ଫେରିଆସିଲା । ଆବ୍‌ବେ ମାର୍ ଗୁଲି । କ'ଣଟାଏ କୋଉଠି, ହେଉଁଥିଲା କି ଶୋଇଥିଲା, ଦିଶିଗଲା ବୋଲି ସୃଷ୍ଟି ଆନ ଆନ ହେଇଗଲା । ଆବ୍‌ବେ ଯାଃ, ମୁଁ ଚାହିଁଲେ ଇନ୍ଦ୍ରଚନ୍ଦ୍ର, ମୁଁ ଚାହିଁଲେ ଆକାଶ ! କୋଉ ଦୁଃଖିଶ୍ୟାମ କୋଉଠି ବସିଚି । ପନ୍ଦରବର୍ଷ ହେଲା ସେ କ'ଣ ବଲୁଆଖାଇ ନଈ ଭିତରେ ପାଣି ପିଉଥିଲା ? କାଲି ଉଠି ଆସିଲା ମୋତେ ପ୍ରେମ କରିବାକୁ ? ମୁଁ ମୋ ନିଶ ଉପରେ ହାତ ମାରିଲି । ମୋ କୋଠା ରଙ୍ଗକୁ ଚାହିଁଲି । ପାଦତଳ ମୋଟା ଗାଲିଚାକୁ କୁନ୍ଦିଲି । ବାହାରେ

ପ୍ରାର୍ଥୀମାନଙ୍କ ଭିଡ଼ ହୋଇଯାଉଥାଏ । କିନ୍ତୁ ଟଙ୍କା ବାଣ୍ଟିଦେଲେ ଏ ଖେଳକାଳ ଖଚକୁହା ଲୋକଗୁଡ଼ାଙ୍କୁ କିଣିଦେଇ ହେବ । ମୁଁ ବାରମ୍ବାର ସେପରି କିଣିଛି !

ସେଦିନ ସକାଳୁ ବି ବେପରୁଆ କିଣିଗଲି । ଲୋକଙ୍କ ଯାତାୟାତ ଭିଡ଼ ବଡ଼ରାସ୍ତାଯାଏଁ ଲାଗିଥାଏ । ଖରା ପଡ଼ୁଥାଏ ସମସ୍ତଙ୍କ ଉପରେ । ସମସ୍ତେ ମୋର ଦସ୍ତାର ପ୍ରାର୍ଥୀ । ସମସ୍ତେ ମୋର ବଚପ୍ପର । ମୁଁ ପୁଣି ନିଜ ଉପରେ ନିଜେ ମୁଗ୍ଧ ହୋଇ ସେ ଦୋ'ମୁହାଣି ଲୋକ ଭିଡ଼କୁ ଚାହିଁଥାଏ । ଆସୁଥିବା ଲୋକଙ୍କ କେତେ ପ୍ରକାର ମୁହଁ । ଫେରୁଥିବା ଲୋକଙ୍କ ପିଠିରେ କେତେ ପ୍ରକାର ଜାମା ! କାହାକୁ ଜଣକୁ ଦେଇପାରି ମୁହଁ ଟେକିଲାବେଳକୁ ଗେଟ୍ ପାଖାପାଖି ଫେରୁଥିବା ଜନସ୍ରୋତରେ ସେଇ ନାଲି ଛିଟଥିବା ଚାଦରର ଓଢ଼ଣା ଅପସରି ଯାଉଥିଲା । ପରିଷ୍କାର ସକାଳ ଖରାରେ କୋଠିଗୁଡ଼ାକ ଚାଉଚାଉ ହୋଇ ବାରି ହେଉଥିଲା ! ସେ କ'ଣ ଏଇଠୁ ମୋ ସାମ୍ନାରେ ହାତ ପତେଇ ଅନୁଗ୍ରହ ଗୋଟେଇବାକୁ ଠିଆହୋଇ-ଥିଲା ! ମୋ ଭିତରେ ପୁଣି ଗୁରାଣ୍ଡି ହେଇଗଲା । ମୁଁ ଚିତ୍କାର କରି ପକେଇଥାନ୍ତି । ସମ୍ଭାଳି ଗଲି । ଖୁବ୍ କରୁଣ ସ୍ୱରରେ ଠିଆହେଇ ଆଙ୍ଗୁଠି ଦେଖେଇ କହିଲି—"ଦେଖିଲ ଦେଖିଲ, ସେ ନାଲି କୋଠିକଟା ଚାଦର ଘୋଡ଼େଇ ହେଇ କିଏ ସେ ଯାଉଛି ?" ଗୋଟାଏ ହାଲହୁଲା ପଡ଼ିଗଲା । ଏ ତାକୁ, ସେ ତାକୁ, କିଛି କିଛି ଉମୂଳ ଶବ୍ଦ ଉଠିଲା, "ନାଲି କୋଠିକଟା ଚାଦରଟା ହେଇ, ହେଇ ଯେ ଅପସରି ଯାଉଛି···ଧର, ତାକୁ···" କିଛି ସମୟ ପରେ ମୋ ସାମ୍ନାରେ ଅନେକ ଠେଲାପେଲା ପାଟିରୁଣ୍ଡ ଭିତରେ ଯେ ଆସି ଠିଆ-ହେଲା, ସେ ଥିଲା ନାଗୀନ୍ କଂସେଇଟିଏ । କେଳି ଲୁଙ୍ଗି, ପୁରାହାତ ଜାମାପିନ୍ଧା ଦାଢ଼ିଆ ହମିଦ୍ ମିଆଁ । ଥୋପଡ଼ରେ ଲାଗୁଆଣି ମାଂସ ଦେଇ ସେ ଫେରୁଥିଲା ।

ମୁଁ ହଠାତ୍ ରାଗିଗଲି । ବିନା କାରଣରେ ସମସ୍ତଙ୍କୁ ଗାଳିଗୁଲଜ କରି ଖାସ୍ କାମରାକୁ ଯାଇ ଗୋଟାଏ ଗଦିଦାର ସୋଫା ଉପରେ ଭୂସ୍‌କିନା କୁଢ଼େଇ ହେଇ ପଡ଼ିଲି ।···ବେ, ଶାଳୀ କ'ଣ ଏମିତି ତାମ୍‌ସା ଲଗିଚି ! ମୋର ଭିତର କାହିଁକି ଏମିତି ଦୁଲୁକୁଚି ? ଦୁଃଖୀଶ୍ୟାମ ମୋତେ ପଇଁତିରିଶ ବର୍ଷ କାଳ ଗୋଡ଼ାଣିଆ କରି ପୋଷାଉଚି । ମୁଁ ତାକୁ କେବେ ଟପିପାରିନାହିଁ । ପ୍ରାଣମୂର୍ଚ୍ଛା ଗୋଡ଼େଇଚି ଜୀବନସାରା । ଯେତେବେଳେ ଦେଖିଲେ ସେ ମୋ ଆଗରେ ଖୁବ୍ ଟେକି ମାଡ଼ିଯାଉଛି । ମୋତେ ଚିରକାଳ ଦ୍ୱିତୀୟ ସ୍ଥାନରେ ରହିବାକୁ ବାଧ କରିଥିବା ଯେ ଅପରାଜେୟ ସଇତାନକୁ ମୁଁ ସହସ୍ରେ ଥର ଘୃଣା କରିଛି; କିନ୍ତୁ ସେ ହିଁ ମୋ ଉଦଗ୍ର ଶକ୍ତିର ଏକମାତ୍ର ଉତ୍ତେଜକ । ସେ ମୋତେ ଡହଁକେଇ ଆସିଚି । ମୋ ହାବେଳରେ ସେ ହିଁ ନିଆଁ ଲଗାଇଆସିଛି । ନହେଲେ ଆଉ ସାମାନ୍ୟ ଖେଳୁଆଡ଼ଙ୍କୁ ମୁଁ ପାଞ୍ଚକୋଶ ଦୂରରେ ପରାସ୍ତକରି ଆସିପାରିଥାନ୍ତି । ଦୁଃଖିଆ ମୋର ଚିରଶତ୍ରୁ । ଦୁଃଖିଆ ମୋ ଚିର ସାଥୀ । ଦୁଃଖିଆ ମୋର ସମ୍ମୋହନ । ସେ ମୋତେ ତଡେଇଛି, ମୋତେ ଚପୁଡ଼ି ମୋ ମଣ୍ଡୁରୁ ଦୋରୁଅ ନଗାଡ଼ ଦେଇଚି । ତାକୁ ବି ମୁଁ ଖୁବ୍ ତଡ଼ିଛି । ସେ ଛିନକା ହେଲାପରି ବାରମ୍ବାର ପଛକୁ ଚାହିଁ ଦେଖିଛି ଯେ, ମୁଁ କ୍ଷେପି ଆସୁଚି ।

ତାକୁ ପାରହୋଇ ଯାଇପାରେ । ସେ ଆଉ ମୁଁ ଏମିତ ଘୋଡ଼ାଏ ବୃହଦାକାର କଳାଘୋଡ଼ାପର ଏ ସମଗ୍ର ମାଳଭୂମିକୁ ମନ୍ଥୁଛୁ । ଆଉ ବାକ ସମସ୍ତେ ତାଲ ମାରୁଥିବା ତାଜୁବ ଦେଖଣାହାରି ! ସେମାନେ ଆମ ଦ୍ୱନ୍ଦ୍ୱ ବୁଝିନାହାନ୍ତି, ଆମ ସଂଗ୍ରାମ ବୁଝିନାହାନ୍ତି, ସଙ୍କ ବୁଝିନାହାନ୍ତି ।

ଦୁଃଖିଆ ମୋତେ ଭୟକରୁଥିଲା । ମୁଁ ତାକୁ ଘୃଣା କରୁଥିଲି । ଅଥଚ ଆମେ ଗୋଟାଏ ସ୍କୁଲରେ ପଢ଼ିଛୁ । ଗୋଟାଏ ପଡ଼ିଆରେ ଲଢ଼ିଛୁ । ସେ ମୋତେ ଜମ୍ମା ବାଟ ଛାଡ଼ିନାହିଁ । ମୁଁ ବି ତାକୁ ସହଜରେ ଛାଡ଼ିନାହିଁ । ମୁଁ ଗୋଟାଏ ପରୀକ୍ଷାରେ ଥରେ ତାକୁ ଜିଣିଯାଇଥିଲେ ଲଢ଼ିବା ଛାଡ଼ିଦେଇଥାନ୍ତି । ସେ ବି ବୋଧହୁଏ ଛାଡ଼ିଦେଇଥାନ୍ତା । ଆମେ ପ୍ରତିଦ୍ୱନ୍ଦ୍ୱୀ ହୋଇ ଜନ୍ମିଥିଲୁ । ଆମର ସାଲିସ୍ ହେବା ସମ୍ଭବ ନଥିଲା । ଆମେ ସବୁବେଳେ ପରସ୍ପରର ବିପକ୍ଷ ଘୋଡ଼ା ! ମୁଁ ଆସିଥିଲି ମଫସଲରୁ । ମୋ ପଛରେ ମୋର ଶହ ଶହ ସମର୍ଥକ । ସେମାନେ ମୋତେ କଳିପାରନ୍ତି ନାହିଁ । ଭାବନ୍ତି ମୁଁ ହିଁ ସର୍ବଶ୍ରେଷ୍ଠ । ସେ ଥିଲା ସହରରେ—ତା'ର ମଧ୍ୟ ଶହ ଶହ ସମର୍ଥକ । ସେ ସେମାନଙ୍କ ମଉଡ଼ମଣି । ଆମେ ଦୁହେଁ ଘୋଡ଼ା ଚଢ଼ିଛୁ । ଗଛ ଛଡ଼ିଛୁ । ନଈ ପହଁରିଛୁ । ପ୍ରବନ୍ଧ ଲେଖିଛୁ । ଅଭିନୟ କରିଛୁ । ଅଙ୍କ କରିଛୁ । ମଟରସାଇକଲ ଚଳେଇଛୁ । ସବୁଠି ଲଢ଼େଇ । ଆଗରୁ ଜଣାପଡ଼େନାହିଁ କିଏ ଜିତିବ । ଆରପକ୍ଷ ତାଜୁବ୍ ହୋଇ ଚାହିଁଥାନ୍ତି, କେମିତି ମୁଁ ତାଙ୍କ ବିଦ୍ୟା ସାଧ୍ୟ ସମସ୍ତଙ୍କୁ ଟପିଗଲି । ମୁଁ ହତବାକ୍ ହୋଇଯାଏ, କେମିତି ଦୁଃଖିଆ ମୋତେ ନଈ-ପହଁରିରେ ଗୋଟାଏ ହାତୁକାରେ ଜିଣିଯାଏ । ମୁଁ ସିଂହପରି ଲଢ଼ିଯାଏ; କିନ୍ତୁ ଜାଣିଥାଏ ଯେ ଦୁଃଖିଆ ମୋତେ ଜିଣିବ । ସେ ତା'ର ସବୁ ଶକ୍ତି ଖଟେଇ ଝୁଣିହୋଇ ତହ ତହ ତାତିଯାଏ । ବୋଧହୁଏ ଜାଣିଥାଏ ଯେ ତାକୁ କେହି ଟପିଯାଇପାରିବ ନାହିଁ । ଓଃ, ଦୁଃଖିଆ ମୋର ପ୍ରାଣାନ୍ତ ଜ୍ୱାଳା, ମୋର ଦୁର୍ଦାନ୍ତ ସହୋଦର । ମୁଁ ତା' ରକ୍ତ ପିଇବାକୁ ପଣକରି ତୃଷାର୍ତ୍ତ ରହିଆସିଛି ।

ଥରେ ମୋ ପକ୍ଷର କେମ୍ପା ଭଗିଆ ଆସି ଫିସ୍‌ଫିସ୍ କରି ମୋ କାନରେ କହିଲା ଯେ, ସେ ଦୁଃଖିଆକୁ ତା' ଯିବା ବାଟରେ ଲୁହାତାର ଖଞ୍ଜି ଜଖମ କରିଦେବ । ତେଣିକି ସବୁ ପ୍ରଥମ ପୁରସ୍କାରଯାକ ଏ ପାଖକୁ ବଳେ ଗଡ଼ିଆସିବ । ସେ କହିଦେଇ ମୋ ମୁହଁକୁ ଚାହିଁ ମୁଚୁକି ମାରିଲାବେଳକୁ ମୋ ଦେହରେ ନିଆଁ ଲାଗିଗଲା । ମୁଁ ଭୟଙ୍କର କ୍ରୋଧରେ ତାକୁ ଲହୁଲୁହାଣ କରି ପିଟିଦେଇଗଲି । ପାଟି ଶୁଣି ଅନ୍ୟମାନେ ଧାଇଁଆସି ମୋ କବଳରୁ ତାକୁ ଛଡ଼େଇନେଲେ, ନହେଲେ ମୁଁ ବୋଧେ ତାକୁ ପ୍ରାଣରେ ମାରିଦେଇଥାନ୍ତି । ମୁଁ କ'ଣ ଚାହୁଁ ନଥିଲି ଦୁଃଖିଆ ଜଖମ୍ ହେଇଯାଉ ? ମୁଁ ତ ବରଂ ଚାହୁଁଥିଲି ସେ ମରୁ । କିନ୍ତୁ ସେ ଜଖମ ହେଲେ କ'ଣ ମୁଁ ସେ ଶିଆଳମୁହାଁ କେମ୍ପା-ଭଗିଆ ସାଙ୍ଗେ ଲଢ଼ିବି ? ମୁଁ ତେଣିକି ହରେଇବି କାହାକୁ ? ଦୁଃଖିଆକୁ କେହି ଟିପ ଦିଅନା ବେ' କୁକୁଆ, ଲୁଙ୍ଗୁରା ଡରୁଆ ଶଳେ, ଦୁଃଖିଆ ମୋ ପ୍ରାଣ । ଗୋଟାଏ ସୂତାରେ ମୁଁ ଓହଳିଛି । ଦୁଃଖିଆକୁ ଜିଣିବି; ସେଇଥିପାଇଁ ମୁଁ ବଞ୍ଚିଛି । ତାକୁ କାହିଁ ମାରିବ—ମୋତେ ମାରିଦିଅନା ! ମୁଁ ଦୁଃଖିଆକୁ

ରଟମଟ ଶୁଣେଇ ଦେବାକୁ ଚାହୁଁଥିଲି; କିନ୍ତୁ ମୋ ସମର୍ଥକଙ୍କ ଆଗରେ ଏକଥା ବି କହିଥିଲି ଏବଂ ସତ କହିଥିଲି ।

ଏବେ ମୋତେ ଜର ହୋଇଥାଏ । ମୁଁ ଫାଇଁ ଫାଇଁ ହଉଥାଏ । ଦେହରେ ତାତ ଖଇ ଫୁଟୁଥାଏ । ହଷ୍ଟେଲରେ କିଏ କାହାକୁ ପଚାରେ ? ଚଣ୍ଡା ସ୍ୱର ଶୁଣି ଚମକିଲି ପରି କମ୍ବଳ କାଢ଼ି ଚାହିଁଲି । ଖଟ ବାହୁଙ୍ଗାରେ କୃଷ୍ଣଶ୍ୟାମ ବସିଥାଏ । ତା'ର ସେ ଲୁଆଣିଆଁ ଆଖି, ସେ ଲମ୍ବା ମୁହଁ ଦେଖି ମୋ ନାକପୁଡ଼ା ଫୁଲିଗଲା । ବୁକୁ ଆଉର କୋର୍‌ରେ ଦାଉଁ ଦାଉଁ ହେଲା । ସେ ମୋ ହାତକୁ ଧରି ଆସ୍ତେ ସାଉଁଳି ଦେଲା । ତା' କୋଡ଼ ଉପରେ ଥୋଇ ଥାପୁଡ଼େଇଲା । ମୁଁ ହାତ ଛଡ଼ାଇ ଆଣିବାକୁ ମନକଲି; କିନ୍ତୁ ଆଣିଲିନାହିଁ । ମୋ ନାକ-ବାଟେ ତବ ତବ ତାତଲା ପାଣି ନିଗିଡ଼ିଗଲା ।

ସେ ଅନେକ ବେଳ ସେମିତି ବସିରହିଲା । ବୋଧହୁଏ ପାଣିପଟି ଥରେ ଦୁଇଥର ବଦଳି କଲା । ମୋ ଭିତରେ ଧୂଆଁ ଯାକ ପାଣି ହୋଇଗଲା । ପାଣିଯାକ ନିଗିଡ଼ିଗଲା । ସେଇ ବୋଧହୁଏ ଅନେକ ବେଳୁ ମୋର ଶୁଶ୍ରୂଷା କରୁଥିଲା । କାହିଁକି କରୁଥିଲା ? ମୋତେ ଔଷଧରେ କ'ଣ ଟିକିଏ ମିଶେଇ ପିଆଇଦେଲା ନାହିଁ କାହିଁକି ? କେମିତି ସେ ତା' ନିର୍ବୋଧପଣକୁ ଜିଣିଗଲା ? ସେଥିରେ ବି ମୋତେ ସେ ଜିଣିଗଲା । ଶଳା, ମୋର ପରମ ଶତ୍ରୁ; ମୋତେ ଶତ୍ରୁତାରେ ବି ମାତ୍ କରିଦେଲା !

"ଭାନୁ, ତୁ ଚାହିଁଲେ ଆଜି ରାତିରେ ଜର ଓହ୍ଲେଇଯିବ । ତୋତେ କ'ଣ ଜରଟାଏ ଆସି କାବୁ କରିଦେବ ନା କ'ଣ ? ମୋତେ ଜର ଛୁଉଁ ଛୁଉଁ ଚାଲିଯାଏ ।" ମୁଁ ହଠାତ୍ ଗରମ ହୋଇଗଲି । ହଁ, ମୋତେ ବୁଝେଇବାକୁ ଆସିଚ ଯେ ଜର ସାଙ୍ଗେ ଯୁଝିବାରେ ବି ସେ ମୋତେ ଟପିଯାଇଛୁ ! ମୁଁ ଧଡ଼୍‌ଧାଡ଼୍ ଉଠି ବସିଲି । ସେ ଚାହିଁଲା ମୋତେ ପୁଣି ଶୁଆଇ ରଖିବାକୁ । ଜୋର୍ ଦେଲା ନାହିଁ । କାନ୍ଥକୁ ଆଉଜି ମୁଁ ତାକୁ କଟମଟ ଚାହିଁଲି ।

ତା' ଆଖି ସବୁବେଳେ ଲୁଆଣିଆଁ ! ସେ ସେହିଭଳି କହିଲା, "ଭାନୁ ! ମୁଁ ଆସିଚି ତୋତେ ଗୋଟାଏ କଥା କହିବାକୁ ! ବିଶ୍ୱାସ କଲେ କହିବି ।" ତା' ସ୍ୱର ଭାରି ମିଠା । ମୋର ଲୋଭ ହୋଇଗଲା ଭାବିବାକୁ ଯେ ଯଦି ସେ ମୋର ଭାଇଟାଏ ହୋଇଥାନ୍ତା ! ତା' ପରେ କିନ୍ତୁ ନାକପୁଡ଼ା ଫୁଲିଗଲା । ମୁଁ ଦୁଇଥର ଗୋଡ଼ ଛାଟିଦେଇ ତାକୁ ଚାହିଁଲି । ସେ ବୁଝିଗଲା ।

"ଭାନୁ, ତୁ ବିଶ୍ୱାସ କର ଅବା ନକର, ମୁଁ ଚାହେଁ ତୋ ପାଖରେ ଥରେ ହାରିବାକୁ !" ମୁଁ ଚମକିପଡ଼ିଲି । ଚକା ପକେଇ ପଦ୍ମତୋଳା ନାଗପରି ଝୁଲିଲି ।

ସେ କହିଲା, "ତୋତେ ଜିଣେଇବାକୁ ହାରିବା ମୋ ପକ୍ଷରେ ଅସମ୍ଭବ । ମୁଁ ପାରୁ ପର୍ଯ୍ୟନ୍ତ ଲଢ଼ିବି ଏବଂ ତା' ନିଜ ପରାକ୍ରମରେ କେହି ଜଣେ ମୋତେ ପରାସ୍ତ କରିଦେବ !

ମୁଁ ଆଗକୁ ଏବଂ ଉପରକୁ ଚାହିଁଦେଲେ ଏମିତ ଶୂନ୍ୟକୁ ନଦେଖି ଆଉ ଜଣେ ବିଜେତାକୁ ଦେଖି ପାରିବ । ମୁଁ ସତ କହୁଛି ଶାନ୍ତୁ, ବୁଝି ପାରିବୁ ! ମୁଁ ଚାହେଁ, ଥରେ ହେଲେ ପରାଜୟର ସ୍ୱାଦ ଚାଖିବାକୁ । ହାରିଗଲେ ଆଉ ଥରେ ଉଠ୍ଧକ୍ଷି ଉଠିବାର ଅନୁଭବ ମୁଁ ପାଇନାହିଁ । ହାରିଗଲେ ସତେ କେମିତ ଲାଗେ ?"

ମୋ ଆଖି ଜଳିଲା । ନାକପୁଡ଼ା ଜଳିଲା । ହାତ ମୁଠା ମୁଠା ହେଇଗଲା । ଯାହାପାଇଁ ଜୀବନସାରା ସହସ୍ରେ ଲୋକଙ୍କୁ ଜିଣି ମଧ୍ୟ ଜିଣିବା କ'ଣ ଜାଣି ପାରିଲି ନାହିଁ, ସେ ମୋତେ ସବୁଦିନ ପରାସ୍ତ କରି ଆସିଚ, ସେଇ ମୋତେ ପଚାରୁଛୁ—ହାରିଲେ କେମିତ ଲାଗେ ! ମୁଁ ବୋଧେ ସେଇ ମୁହୂର୍ତ୍ତରେ ତାକୁ ହତ୍ୟା କରିଦେବା ଉଚିତ ଥିଲା—ସେତିକବେଳେ ମୋ ଭିତରେ ଉପାଦାନ ଥିଲା ତାକୁ ପୋଡ଼ି ପାଉଁଶ କରିଦେବାକୁ !

ଆମେ ସ୍କୁଲ ଛାଡ଼ିଲୁ । ଦୋବାଲ୍ଲ ପୁଣି ଦୁହେଁଯାକ ଗୋଟାଏ କଲେଜରେ ପଢ଼ିଲୁ । ସହସ୍ରେ ଥର ଆମର ମୁକାବିଲା ହେଲା । ସବୁବେଳେ ଦୂଃଖିଆ ମୋ ଆଗରେ ରହିଗଲା । ବାକି ସମସ୍ତେ ଆମର ମାଇଲ୍ ମାଇଲ୍ ପଛରେ ପଡ଼ିଥାନ୍ତି । ଶ୍ରେଷ୍ଠ ଶ୍ରେଷ୍ଠ ଇଞ୍ଚେ ଭୂମିପାଇଁ ଭିଡ଼ା ଓଟରା ହେଉଥାନ୍ତି । ବନ୍ଧୁ ଉପରେ ଦୁଇଟା ହାବେଲି ପରି ଆମେ ସେ ଖଣ୍ଡମଣ୍ଡଳକୁ ଅଧିକାର କରିବାକୁ ସମ୍ରାଟ ଭଙ୍ଗୀରେ ଲଢୁଥାଉ । ହାରିବା ମୋର ଅଭ୍ୟାସରେ ପଡ଼ିଗଲା । ଦୂଃଖିଆ ପାଇଁ ସର୍ବଶ୍ରେଷ୍ଠ ହେବା ଏବଂ ସର୍ବଶ୍ରେଷ୍ଠ ହୋଇ ରହିବା, ଅତି ସ୍ୱାଭାବିକ ଜଣାଗଲା । ତଥାପି ଟାଣିହୋଇ ରହିଥିବା ଦୁଇଟା ପ୍ରବଳ ଧନୁପରି ଆମେ ପରସ୍ପରକୁ ପ୍ରତିଦ୍ୱନ୍ଦ୍ୱୀତାରେ ଆକୋଶି ରହିଥାଉ ।

ପାଠ ସରିଲା । ଆମେ ଚାକିରି କଲୁନାହିଁ । ତା'ର ପ୍ରୟୋଜନ ନଥିଲା । ଦଶଲକ୍ଷ ଟଙ୍କାରେ ମୁଁ ଗୋଟାଏ ଶିଳ୍ପାନୁଷ୍ଠାନ ଆରମ୍ଭ କରିଦେଲି । ପାଞ୍ଚ ବର୍ଷରେ ବ୍ୟବସାୟ ଚାଲିଲା କୋଟିଏ ଟଙ୍କାରେ । ଅଜସ୍ର ଟଙ୍କା ଆୟ ହେଲା । ପାଞ୍ଚ ବର୍ଷରେ ମୋ ସାମ୍ରାଜ୍ୟରେ ଆଉ କାହା ସାଙ୍ଗରେ ଟକ୍କର ହେବାର ନଥିଲା । ଜାଲ୍ଲତରେ କିନ୍ତୁ ଘୁରି ଭିତରେ ଦପ୍‌କରି ଦେଖାଦେଉଥିଲା ଦୂଃଖିଆ । ସେ ଏଥିରେ ପଶିଥିଲେ ନିଶ୍ଚୟ ପାଞ୍ଚବର୍ଷରେ ଦୁଇକୋଟି କରିଥାନ୍ତା । ମୋର ଚରମ ବିଜୟରେ ମୁଁ ମୋର ଚିର-ବିଜେତାକୁ ବାରମ୍ବାର ଭଲ ମନେ ପକେଇଲି । କେମିତ ଟିକିଏ ତାକୁ ଦେଖିବାଅନ୍ତି ! ସେ ମୋଠୁ' ଦେଢ଼ବର୍ଷ ବଡ଼ । ମୁଁ ଏ ପୃଥିବୀକୁ ଆସିବା ଆଗରୁ ସେ ଜନ୍ମଫୁଟ ଉଚ୍ଚତାରୁ ଏ ସମସ୍ତ ଦେଖିପାରି ଅଧିକାର କରି-ସାରିଥିଲା—ନ ହେଲେ ଉଭୟେ ଏକା ଧାରୁରେ ଥାଆନ୍ତି । ମୁଁ ଆସିଲାବେଳକୁ ସେ ଆଗରେ ଥିଲା ଏବଂ ତେଣିକି ଆଗରେ ହିଁ ରହିଗଲା ।

ମୁଁ ତାକୁ ଦେଖିବାକୁ ଚାହିଁଥିଲି ଏବଂ ଦେଖିଲି ମଧ୍ୟ ଅଦ୍ଭୁତ ଭାବରେ । ମୋର ବାହାଘର ପ୍ରସଙ୍ଗ ଚାଲିଥାଏ । ମୁଁ ଯାଇଥାଏ କନ୍ୟା ଦେଖିବାକୁ କଲିକତା । ଝିଅଟି ଅସାମାନ୍ୟା ସୁନ୍ଦରୀ । ଦେଖିବାମାତ୍ରେ ମୁଁ ଉଲ୍ଲସିତ ହୋଇଉଠିଥିଲି । କହିଥିଲି ଯେ, ସେଇଠି ବିବାହ

ନହେଲେ ମୁଁ ଆଉ ବିବାହ କରିବିନାହିଁ । କେହି ଜଣେ ପ୍ରୌଢ଼ ଆସି ଛଳ ଛଳ ଆଖିରେ ମୋ ହାତ ଧରି କହିପକାଇଲେ ଯେ, ସେ ଯାହା ଶୁଣିଥିଲେ ମୁଁ କୁଆଡ଼େ ତାହା ଅପେକ୍ଷା ଦଶଗୁଣ ସୁନ୍ଦର । ଦଶଗୁଣ ଯୋଗ୍ୟ । ଏଣୁ ବିବାହ ସ୍ଥିର ହୋଇଗଲା । ସେ ପରିବାର ସହିତ ମୋର ପରିଚୟକ୍ରମରେ ପ୍ରାୟ ମୋର ସମବୟସ୍କ ଶଳା ସହିତ ଭେଟ ହେଲା । ଅତି ଚମତ୍କାର ବେଶପୋଷାକରେ ଭରି ଚିକ୍‌କଣ ଚେହେରା ତା'ର; କିନ୍ତୁ ତା' ପାଖରେ ଯେ ଠିଆ ହୋଇ ମୋ ଆଡ଼କୁ ଅଭିନନ୍ଦନ ଜଣାଇ ହାତ ବଢ଼ାଇଲା, ସେ ଥିଲା ଦୁଃଖିଶ୍ୟାମ । ମୁଁ କିଛି କାଳ ତାକୁ କୁଣ୍ଢେଇ ଧରିଥିଲି । ମୁଁ ମନକୁ ମନ କହୁଥିଲି ତେର୍ କଥା । ଆବ୍‌ବେ, ତୁ କୁଆଡ଼େ ଏମିତି ଉଭେଇ ଗଲୁ ! ମୁଁ ଜାଣେ, ଶଳା ଏଠି ତୁ ଜମେଇ ନେଇଛୁ । ତୁ କି ସ୍ତ୍ରୀ' ଭିତରେ କ'ଣ ଦୁଇ ତିନି କୋଡ଼ି କରି ନଥିବୁ କି ? ସ୍ତ୍ରୀ'ଙ୍କ ସାଙ୍ଗେ ତୋ'ର କ'ଣ ମାୟା ଲାଗିଛି କିବେ ? ଆଚ୍ଛା, ତୁ ସେ ଝିଅଟିକୁ ଜାଲ ପାତି ବସିଚୁ କି ? ଯଦି ପକେଇ ଥାଉ, ଏଇ ଦେଖ, ତୋତେ ଟପି ତୋ' ହାତରୁ ତାକୁ ମୁଁ ନେଇଗଲି ! ଦୁଇଜଣଙ୍କ ମଝିରେ ଏତେ କଥା ପରି କୁଣ୍ଢ ହୁଗୁଲେଇ ଦେଲି ! ମୁଁ ତା' ଆଖି ଭିତରକୁ ଚାହିଁଲି । ବୁଝିଲି ଯେ କଥା ସତ । ଦୁଃଖିଆ ହାରିଲା । ପ୍ରଥମ ଥର ହାରିଲା । ମୋର ପାଖରେ ହାରିଲା । ତଥାପି ଜଣାଗଲା ଯେ, ସେ ସେଥିପାଇଁ ଦୁଃଖିତ ନୁହେଁ । ସେ ତା' ଲମ୍ବା ମୁହଁ, ନୁଆଣିଆଁ ଆଖି, ଓହ୍ଲା ନାକ ପାଇଁ ହାରିଗଲା; କିନ୍ତୁ ମୋ ପାଖରେ ତ ହାରିଲା !

ମୁଁ ଜାଣିଚି ସେ କାହିଁକି ବିଭା ହେଲାନାହିଁ । ସେ ମୋ ସ୍ତ୍ରୀର ଚିର-ପ୍ରେମିକ । ତାକୁ ମୋ ସ୍ତ୍ରୀ କେବଳ ଦୟାକରି ଆସିଚି । ମୁଁ ଦୟାକରି ଆସିଚି । ସେ ଅସଂଖ୍ୟ ଥର ମୋ ଘରକୁ ଆସିଲା । ଥରେ,କିନ୍ତୁ କଳା ଗ୍ଲାଇ ଭଳି କ'ଣଟାଏ ମୋ ଆଖିରେ ପଶି ପୁଣି ଅପସରି ଗଲା । ମୁଁ ଦୁଃଖିଆ ଆଖିକୁ ଥରେ ଚାହିଁ ଦେଖିଲି ଯେ, ସେ ଲଢ଼େଇ ଜାରି ରଖିଚି— ଏବେ ବି ଜିଣିବାର ଆଶା ଛାଡ଼ିନାହିଁ । ତା'ପରେ ହଠାତ୍ ଦିନେ ଅନୁଭବ ହେଲା ଯେ, ଦୁଃଖିଆ ହୁଏତ ମୋ ଅଜାଣତରେ ମୋତେ ଟପି ଚାଲିଗଲାଣି । ମୋ ସ୍ତ୍ରୀ ମାସକେ ସାତଦିନ କାହିଁକି ବାପଘର ଯାଉଚି ? ମୁଁ ଜାଣିବାକୁ କଲିକତା ଉଡ଼ିଯାଉଥିଲି । ପ୍ରାୟ ସବୁବେଳେ ଦୁଃଖିଆକୁ ଦେଖୁଥିଲି ସେଇଠି ।

ମୁଁ ତାକୁ ଦିନେ ଡାକିନେଲି ଏକାନ୍ତକୁ । କହିଲି, "ଦେଖ ଦୁଃଖିଆ, ତୋର ମୋର ଆଉ ଗୋଟାଏ ଚୂଡ଼ାନ୍ତ ମୁକାବିଲା ବାକି ରହିଛି । ଦୁହିଁଙ୍କ ଇଚ୍ଛା ହେଉଛି ଲଢ଼ିବାକୁ । ଛୁରି ପିସ୍ତଲଗୁଡ଼ା ପିଲାଖେଳ । ଚାଲ, ରାଜନୀତିରେ ଲଢ଼ିବା । ତୁ ଓଡ଼ିଶାରୁ ମୋ ସଙ୍ଗେ ନିର୍ବାଚନରେ ଲଢ଼ିବୁ ।" ସେ ମୋ ଆଖିକୁ ଚାହିଁଲା—ଠିକ୍ ଅଛି । ସେ ମୋ'ଠୁ ହାରିବାକୁ ଚାହିଁଥିଲା; କିନ୍ତୁ ହାରି ରହିବାକୁ ସହିପାରି ନଥିଲା । ଏଣୁ ମୁକାବିଲା ନକରି ସେ ରହନ୍ତା କେମିତି ? ମୋ ସ୍ତ୍ରୀ ତାକୁ ଉଦ୍‌ବ୍ୟକ୍ତ କରୁଥିଲା । ମୋର ଚିର ବିଜେତା ଚାହିଁଥିଲା ଆଉଥରେ ମୋତେ ପରାସ୍ତ କରିବାକୁ ।

ନାହିଁ ନଥିବା ଲଢ଼େଇ ହେଲା । ମୁଁ ସେ ଅଞ୍ଚଳରେ ରୋଡ୍ କରିଦେଲି । ସେ କେନାଲ ଖୋଲେଇ ଦେଲା । ମୁଁ ପୋଲ ବାନ୍ଧିଦେଲି । ସେ ଘର ତୋଳିଦେଲା । ମୁଁ ସ୍କୁଲଘର ତୋଳିଦେଲି । ସେ କଲେଜ କରିଦେଲା । ନିର୍ବାଚନର ବହୁ ପୂର୍ବରୁ ଏ ଲଢ଼େଇ ଚାଲିଥାଏ । ତା'ପରେ ହେଲା ବାକ୍‌ଯୁଦ୍ଧ ! ମୁଁ ଗୋଟାଏ ଗପ୍ପ କରି ପନ୍ଦରଟା ସଭା କଲାପରେ ସେ ତା' ଦଳକୁ ନେଇ ଅନ୍ତତଃ ଷୋଳଟା କରି ଚାଲିଆସିଲା । ସେ ସ୍ୱାଡ଼ମତ ତମ୍ବୁ ପକେଇ ସେଇଠି ରହିଲା । ତା'ର କର୍ମୀମାନେ ଖାତା ଧରି ଗାଁ ଗାଁ, ଘର ଘର ବୁଲି ଅସୁବିଧା ବୁଝି ଟଙ୍କା ବାଣ୍ଟି ତାଲିକା କରିଗଲେ । ମୋର ସେଇ ସମୟରେ ମନେହେଲା ଯେ, ଦୁଃଖିଆ ଜିଣିବା ଉଚିତ୍ । ସେ ମୋ ଅପେକ୍ଷା ଢେର୍ ଚାଲାକ୍ । ଢେର୍ ସମର୍ଥ । ସେ ଆସିଲେ ଦେଖେଇଦେଇ ପାରିବ ଶାସନର ନମୁନା···ସଙ୍ଗଠନର ନମୁନା । ସେ ଯାହା ଚାହିଁବ ତାହା କରିପାରିବ ।—ଓଃ, ଦୁଃଖିଆ କି ଅଦ୍ଭୁତ କାମ କରିପାରେ ? ତା' ପାଖରେ ହାରିଗଲେ ସେଇଟା ପରାଜୟ ନୁହେଁ । ତା' ପାଖରେ ଯେ କେହି ହାରିବା ଉଚିତ । ଯେ କେହି ହାରିବାକୁ ଇଚ୍ଛାକରିବା ଉଚିତ ।

•

ମୋ ପାଇଁ କାମ କରିବାକୁ ମୁଁ ଯେଉଁମାନଙ୍କୁ ବୁଦ୍ଧିଆ ବୋଲି ନେଇଥିଲି ସେ ସବୁଗୁଡ଼ିକ ମଦୁଆ ବାହାରିଲେ । ତାଙ୍କୁ ଟଙ୍କା ଦେବାରେ ମୁଁ ହେଲାକରିନାହିଁ; କିନ୍ତୁ କାମ କରିବାରେ ସେମାନେ ହେଲା କରିଛନ୍ତି । ତାଙ୍କୁ ଡାକି ମୁଁ ଏଇକଥା କହିଦେଲି ଗୋଟିଏ କର୍ମୀସଭା ଭିତରେ । ଖୁବ୍ ଆବେଗରେ ତାଙ୍କ ସହଯୋଗ ପାଇଁ ବକ୍ତୃତା ଦେଲାବେଳେ ମୁଁ କହିଦେଇଥିଲି ଯେ, ସ୍ଥା' ଭିତରେ କ'ଣ ଏପରି କେହି ପାରିଲାବାଲା ନାହିଁ ଯେ ମୋତେ ଏଇ ଦୁଃଖିଆଟା କବଳରୁ ରକ୍ଷା କରିଦେଇପାରିବ !

କହିଦେଇ ମୁଁ ସନ୍ତୁବେଳେ କ'ଣ ମନହେଲା ଦୁଃଖିଆ ତମ୍ବୁ ଭିତରେ ପଶିଗଲି । ସେ ତା'ର ହିସାବ ଚଳେଇଥାଏ । ପିନ୍ଧିଥାଏ ଖଣ୍ଡେ ବାଟିକ୍ ଲୁଙ୍ଗି, ଦେହରେ ହାତବାଲା ଗେଞ୍ଜି ଏବଂ ମୁଣ୍ଡରେ ନାଲିରଙ୍ଗର ପଶାପାଲି କୋଠି ଚଢ଼ିଥିବା ଗୋଟାଏ ଚାଦର । ଏମିତି ଆଳୁମାଳୁ କରି ଗୁଡ଼େଇଦେଇଥାଏ ।

"ଦେଖ୍ ଦୁଃଖିଆ, ତୁ ଅଲବତ୍ ଜିଣିବୁ । ତୋତେ ଦେଖିଲେ ମୋର ସବୁବେଳେ ଈର୍ଷା ହେଉଥିଲା । ଏବେ ବି ହେଉଚି । ତୁ କାହାପାଖରେ ହାରିବାକୁ ଜନ୍ମ ହେଇନାହୁଁ ।" ସେ ବୋଧହୁଏ କିଛି କହିଲାନାହିଁ । ମୋର ଠିକ୍ ମନେପଡ଼ୁନାହିଁ—କିନ୍ତୁ ଚାଦର ଓଢ଼ଣା ପକେଇ ସେ ମୋତେ ଯେଉଁ ଢଙ୍ଗରେ ଚାହିଁଦେଇ ଆଖି ନୁଆଁଇ ଦେଲା ମୁଁ ଭୁଲି ପାରିବନାହିଁ । ତା'ର ସେ ସମଗ୍ର ଚେହେରା ଭୁଲିପାରିବିନାହିଁ । ଅନେକ ଦିନ ତଳେ ସ୍କୁଲରେ ମାଇଲିଏ ଧାଇଁବା ସବୁଠାରୁ କଷ୍ଟକର ଥିଲା । ଦୁଃଖିଆ ମଡ଼ିଆ ଦିଶୁଥାଏ, ଖୁବ୍ କ୍ଳାନ୍ତ ହୋଇଯାଇଥାଏ । ଆମେ ଧାଡ଼ିବାନ୍ଧି ଠିଆ ହେଲାବେଳେ, ସେ ମୋତେ ସେମିତି ଚାହିଁଥିଲା । ବୋଧହୁଏ ମନକୁ ମନ କହୁଥିଲା, "ମରିବି ପଛେ ଛାଡ଼ିବି ନାହିଁ !" ମୁଁ ତା' ତମ୍ବୁ ଛାଡ଼ି

ଆସିଲାବେଳେ ଭାବୁଥିଲି ଯେ, ଦୁଃଖିଆକୁ ଧରେଇ ଦେବା, ଖଟମିଛ ପ୍ରଗ୍ୟାରକରି ବଦନାମ କରିଦେବା, ତା' ବିପକ୍ଷରେ କହି ଡରେଇବା କୌଣସି କଥା ସମ୍ଭବ ନୁହେଁ । ମୋଟ ଉପରେ ତା'କୁ ଜିଣିବା ସମ୍ଭବ ନୁହେଁ । ଯଦି ମୋ ପାଇଁ ସମ୍ଭବ ନୁହେଁ ତେବେ ଆଉ କିଏ ଅଛି ଯେ ତାକୁ ଜିଣିପିବ ?

ସେଇ ରାତରେ ଘଟଣା ଘଟିଗଲା । ସାତଦିନଯାଏ କ'ଣ ହେଲା ଠିକ୍ ମନେପଡ଼ୁନାହିଁ । ମୋ ଭିତରେ, ବାହାରେ, ତୁମୁଳ କୋଳାହଳ, ଚାରିଆଡ଼େ ହାଉ ହାଉ । ଦୁଃଖିଆ କୁଆଡ଼େ ସମ୍ପୂର୍ଣ୍ଣ ଉଭେଇଗଲା···କୁଆଡ଼େ ଗଲା ମୋ ସୋଦର, ମୋ ପ୍ରତିଦ୍ୱନ୍ଦ୍ୱୀ—ମୁଁ ନିଜେ ହାନ୍ତଲ ଖାଇଲାପରି ଦରାଣ୍ଡି ହେଲି । କିନ୍ତୁ କୌଣସି ପତ୍ତା ମିଳିଲାନାହିଁ । ହଜାରେ ଗୁଜବ ହେଲା—ତାକୁ ଶୁଣେ କିଏ ?

ଦିନସାରା ମୋ ଘରଗ୍ରନ୍ତି ପାଦେ କୁଆଡ଼େ ଘୁଞ୍ଚିପାରିନାହିଁ । ମୋତେ ଯେ ଟାଣି ରଖିଥିଲା ତା'ର ଶକ୍ତି କେତେ ମୁଁ ଅନୁଭବ କରୁଥିଲି । ମୋ ପାଇଁ ଠିଆ ହେବା ସମ୍ଭବ ହେଉ-ନଥିଲା—ମୁଁ ଜିତିଲି । ଜିଣିଲି କ'ଣ —ଦୁଃଖିଆ ନଥିବାରୁ ମୋ ନାଁ ବଡ଼ିଲେ ଉପରକୁ ଆସିଗଲା । ମୁଁ ଯେତେବେଳେ ଶୁଣିଲି ଯେ, ଦୁଃଖିଆକୁ ବିଷ ଦେଇ ମାରିଦେଲେ, ତା' ହାତକୁ ପଛରେ ଛନ୍ଦିଦେଇ ଗୋଡ଼ରେ ପଥର ବାନ୍ଧି ବଡ଼ନ୍ଦା ବାଲୁଆଖାଇ ନଈରେ ପକେଇଦେଲେ, ମୁଁ ହତଜ୍ଞାନ ହୋଇଯାଇଥିଲି । କେମିତା ଭଗିଆ ସହ ତିନିଜଣ ସେ କାର୍ଯ୍ୟ କରିଥିଲେ ମୋଠୁଁ ପୁରସ୍କାର ଆଶାକରି । ମୁଁ ସେମାନଙ୍କୁ ଗୁଳି ମରେଇ ଦେଇଥିଲି ।

ଏ ପନ୍ଦର ବର୍ଷ ଭିତରେ ମୋତେ ସମୁଦ୍ର ବାଟ ଛାଡ଼ି ଠିଆହେଇଚି । ମୋର ପ୍ରବଳ ଥାଟ ନେଇ ମୁଁ ଯାହାଇଚ୍ଛା ତା' କରିଛି । ମୋତେ ରୋକିବାକୁ ଏ ସଂସାରରେ ଶକ୍ତି କାହିଁ ? ସେଇ ଜଣେ କେବଳ ସମର୍ଥ ହୋଇଥାନ୍ତା । ସତେ କ'ଣ ଦୁଃଖିଆ ସେ ନଈ-ଭିତରୁ, ସେ ଟକମକ ବିଷ ଭିତରୁ ମୁକୁଳି ଆସିଥିଲା ? ମୋ ପାଇଁ ସବୁ ଛାଡ଼ିଦେଇ ଲୁଚିଗଲା—କେଉଁ ଅଗ୍ନାଅର୍ଗ୍ନି ବଣ ଭିତରେ ? ସେ କ'ଣ ମୋ ପାଇଁ କେଉଁଠି ବସି ତପସ୍ୟା କରୁଥିଲା ଏ ପନ୍ଦର ବର୍ଷ !—କିମ୍ବା ସେ ମୋତେ ପରାସ୍ତ କରିବାକୁ ମୋର ସର୍ବନାଶ ମନାସି ତନ୍ତ୍ର-ସାଧନା କରୁଥିଲା ? ମୁଁ ତାକୁ ମାରିଛି । ନହେଲେ ସେ ମୋତେ ଦିନେ ଏମିତି ମାରିଥାନ୍ତା ! ଏ ସଂସାର କ'ଣ ଗୋଟାଏ ଖାପ—ଯା' ଭିତରେ ଆମେ ଯୋଡ଼ାଏ ଖରଶାଣ ଖଣ୍ଡା ରହିପାରିନଥାନ୍ତୁ ? ଭୁଲ୍ କଥା ! ଦୁଃଖିଆ ମୋ ପ୍ରତିଦ୍ୱନ୍ଦ୍ୱୀ ନୁହେଁ, ଦୁଃଖିଆ ମୋ ପ୍ରାଣ ! ମୋ ପ୍ରଭୁ ! ମୋ ଗୁରୁ !—ମୁଁ ତାକୁ ସବୁ ସମର୍ପି ଦେଇପାରେ । ମୋ ସ୍ତ୍ରୀ ଏବେ ବି ସୁନ୍ଦରୀ—ସେ ତାକୁ ମୋଠୁ ଜିଣିନେଲା ବୋଲି ମୁଁ ସ୍ୱୀକାର କରିନେଇପାରେ— ମୋର ଧନ ସମ୍ପତ୍ତି ସବୁ କେତେ ମାତ୍ର । ମୋର ମାନ ଇଜ୍ଜତ ପ୍ରତିପତ୍ତି ସବୁ ମୋ ବିକେତାକୁ ମଣ୍ଡି ଦେଇ ପାରେ ।

କଲୁ ସେ ଏମିତ ମୀରବରେ ଏଠି ସେଠି ସେଇ ଶ୍ୱଦରଟି ଯୋଡ଼େଇ ହେଇ କାହିଁକ ପହଁର ଯାଉଛୁ ? ସେ ଲୁର୍କି ଚିଏ ପିଛ କ'ଣ ଅପେକ୍ଷା କରୁଛୁ ଘାତକ ପରି, ମୋ ମୁହଁ ଉପରେ କଲାକନା ବନ୍ଧାହେବା ଯାଏଁ ? ସେ ଏମିତ କାହିଁକ ଗ୍ରଇଭଲ ମୋ ପିଚ୍ଛା କରବ ? ମୋତେ ମୋ ଚୂଡ଼ାନ୍ତ ବଳସ୍ଥବେଳେ ଭୂମିସାତ୍ କରବାକୁ କ'ଣ ସେ ଚାହୁଁଛୁ ? ମୋ ଆଗରେ ଆଉ କେହି ନାହିଁ, କେବଲ ଉଷ୍ଣନ ବସୁନ୍ଧରା । ମୋ ଉପରେ କେହିନାହିଁ, କେବଲ ଶୂନ୍ୟ ଆକାଶ ! ଏତକବେଳେ ଆହତ ଗିରଶୃଙ୍ଗ ପର ମୋର ସାର୍ବଭୌମ ସିଂହାସନରୁ ମୁଁ ତଳ ପଡ଼ିବାକୁ ସେ ଚାହେଁ ? ଯୁଦ୍ଧ ନକର ମୁଁ ହାରଯିବାକୁ ସେ ଇଚ୍ଛା କରେ ? ଆରେ ସେଥିପାଇଁ ଏତେ ଗୋପନୀୟତା, ଏତେ ଚମକ୍ ଏବଂ ଏମିତ ଗୁପ୍ତ ସଞ୍ଚାର କରବାର ପ୍ରୟୋଜନ କ'ଣ ? ସେ ତ କହିଦେଲେ ମୁଁ ନିଜ ବେକରେ ଦଉଡ଼ି ଲଗେଇ ଝୁଲିପଡ଼ିବ । ମୁଁ କ ଖାତର କରୁଛି ଏ ସାମ୍ରାଜ୍ୟକୁ ? ତା' ବଦଳେ ମୁଁ ଯୁଦ୍ଧକୁ, ଯୁଦ୍ଧ ମଣିନାହିଁ । ଜିଣିବାକୁ ଜିଣିବା ମଣିନାହିଁ । ମୋ ଜୀବନରୁ ଶାଣ ଲିଭିଯାଇଛୁ ରେ ! ଦୁଃଖିଆ ନଥାଇ ଏ ଜୀବନର ସ୍ୱାଦ କେଡ଼େ ଅଲଣା !

ଦୁଃଖିଆ ପନ୍ଦରବର୍ଷ ଆଗରେ ଥିଲା ସତ, ମୁଁ ଏକା ଦମ୍‌ରେ ତା' ପଛକୁ ଭିଡ଼ିଯାଇ-ପାରେ । ମୋତେ ସେଇ କେମିା ଭଗିଆମାନେ ଛକିଛନ୍ତି ବିଷ ଦେଇ, ଗୋଡ଼ରେ ପଥର ବାନ୍ଧି ନଈକୁ ପକେଇଦେବେ । ମୋର ଆପତ୍ତି ନାହିଁ; କାରଣ ମୋ ଦୁଃଖୀଧନକୁ ସେମାନେ ସେଇଭଳି ମାରଦେଲେ । ସମ୍ରାଟଙ୍କୁ ଖଣ୍ଡିଏ ଗେଞ୍ଜି ପିନ୍ଧାଇ ବୁଡ଼େଇଦେଲେ । ତୁମେ କ ତା'ର ମୁକାବିଲା କରିବାକୁ ଯୋଗ୍ୟ ? ସେ ତୁମକୁ ଖାତର କଲନାହିଁ । ମୁଁ ସାନୁ ସିଂ ବ ଖାତର କରନାହିଁ । ତମ ସାଙ୍ଗେ ମୋର ବ ମୁକାବିଲା ନାହିଁ । ତୁମେ ବିଶ୍ୱାସରେ ବିଷ ଦେଲେ ମୁଁ କେତେବେଳେ ହେଲେ ପିଇଦେବ । ତୁମେ ତ ମୋ ସାମ୍ନାକୁ ଆସିପାରିବନାହିଁ, କ ଲଢ଼ିପାରିବନାହିଁ !!

---

# ଯାତ୍ରୀ

ବୟସ ହୋଇଗଲେ ବୋଧହୁଏ ସବୁ ବୁଢ଼ାବୁଢ଼ୀ ଆଉ ପ୍ରକାରେ କଥା କହନ୍ତି । ଆଉ ଗୋଟିଏ ରାଜ୍ୟର ଅପରିଚିତ ଗମ୍ଭୀର ଭାଷା, କେମିତି ଗୋଟାଏ ଗ୍ରୁଡ଼ଗ୍ରୁଡ଼ ଭାବ ତାଙ୍କ କଥାରେ କାହୁଁ ଆସି ସଞ୍ଚରିଯାଏ । ଦେହ ଯୋଡ଼ାଇବାକୁ ଆଉ ଯେମିତି ଆଗ୍ରହ ନଥାଏ; କଥା ଯୋଡ଼େଇବାକୁ ସେମିତି ପ୍ରୟାସ ନଥାଏ ସେମାନଙ୍କର । ସବୁ ଖୋଲାଖୋଲି, ନିଃସଙ୍କୋଚ, ନିଷ୍କପଟ, ସରଳ ହୋଇଯାଏ । ସୂର୍ଯ୍ୟ ବୁଡ଼ିଗଲାବେଳେ ପାଚିଲା ବଟପତ୍ର ଉପରେ ନିଷ୍ଫଳ ଖରା ପଡ଼ୁଥାଏ । ପଦଟି କମ୍ ହେଲେ, କମ୍ କହେ; କିନ୍ତୁ କେଡ଼େ ପ୍ରାଞ୍ଜଳ ଭାବରେ କହିଦିଏ ସବୁ କଥା !

ମୁଁ ସେଥିପାଇଁ ବେଲୁବ୍ ଭଳି ଦାଣ୍ଡପିଣ୍ଡାରେ ଠିଆହୋଇଥାଏ । ବାହାରେ ଅନ୍ଧାର । ଝିପିଝିପି ବର୍ଷା । ରାତି ବାରଟା ଗାଡ଼ିରେ ଅପିନାନି ଫେରିଯିବାକୁ ଅଡ଼ିବସିଛୁ । ଆମେ ସମସ୍ତେ ଜାଣିଛୁ ଯେ ସେ ଆଉ ବଞ୍ଚିବ ନାହିଁ; କିନ୍ତୁ ମରିବା କଥାଟାକୁ ଆମେ ଜମା ବୁଝି-ପାରୁନାହୁଁ; ବିଶ୍ୱାସ କରିପାରୁନାହୁଁ । ଅନ୍ଧାରରେ ପହଁରି ପହଁରି ବୁଲୁଥିବା ଦୋ’-ଦୋ’-ଚହ୍ଲା ଜନ୍ତୁଟାଏ ଭଳି ତାକୁ କେବଳ ଆମେ ଭୟ କରୁଛୁ; ପାରୁପର୍ଯ୍ୟନ୍ତ ଅସ୍ୱୀକାର କରୁଛୁ !

ଦାଣ୍ଡଘରେ ନନା କଥା ହେଉଥାନ୍ତି ଅପିନାନି ସାଙ୍ଗରେ । ବୋଉ ମଧ୍ୟ ବସିଥାଏ ସେଇଠି । ପଦେ ପଦେ କଥା ଶୁଣି ମୋତେ ଆଫା ଆଫା ଲାଗୁଥାଏ । ମୁଁ ଶୀତେଇ-ଯାଉଥାଏ । ବିଶ୍ୱାସ କରିପାରୁ ନଥାଏ, ମୋ ଘରର ସବୁଠାରୁ ପୁରାତନ ଗୁରୁଜନଙ୍କ କଥା । ବୁଝିପାରୁ ନଥାଏ । ସେମିତି ବେଲୁବ୍ ଭଳି ଠିଆହିଥାଏ ଅନ୍ଧାରରେ । ଠିକ୍ କରିପାରୁନଥାଏ—ବର୍ଷାରେ ଯାଇ ବାଟ ପାଇଁ ଔଷଧ କିଣିଆଣିବ ନା ନାହିଁ !

ମୁଁ କ’ଣ କେବେହେଲେ ସେମାନଙ୍କ କଥା ବୁଝିଛି ? ଯେତେବେଳେ ଦେଖିଲେ ନନା ଦିଗନ୍ତ ଦିଗନ୍ତରେ ପହଁରୁଥିବା ମେଘଖଣ୍ଡ ପରି । ଖୁବ୍ ଦୀର୍ଘ । ଆକାଶଠଉଁ ବି ବଡ଼ । ତାଙ୍କ ପାଖକୁ ଅପିନାନି ଆଉ ବୋଉ । ବର୍ଷେ ବର୍ଷେ ସାନ ବଡ଼; କିନ୍ତୁ ନନାଙ୍କଠୁ ସାତ ଆଠ ମାସ ଲେଖାଁ ସାନ, ବାଙ୍ଗୁରି ବାଙ୍ଗୁରି ପୁରୁଣା ମେଘଟିମାନ ! ସମସ୍ତେ ଦିଗନ୍ତରେ ଚନ୍ଦପଟ ପରି ଠିଆହୋଇଛନ୍ତି । ତାଙ୍କବେଳେ ସେମାନେ ମୋ ଆକାଶ ସାରା ଆବୋରି ରଖିଥିଲେ । ସବୁ ରସ ନିଗାଡ଼ି ଦେଇ ବର୍ଷିଥିଲେ । କେତେ ଲାଳନ କରିଥିଲେ । ଏବେ ତାଙ୍କୁ ଦେଖିଲେ କିଏ କହିବ ଭଲା ସେମାନେ ଏକଦା ବର୍ଷିଥିଲେ ବୋଲି ?—ଧଳା ଧଳା ନିର୍ଜଳ ପୁରାତନ ମେଘଗୁଡ଼ିଏ । ଖୁବ୍ ନୀରବ, ନିଷ୍ଫଳ, ପଶ୍ଚିମ ଦିଗନ୍ତର ପାକଳ ହଳଦିଆ ଧଳା ମେଘପଟଳ !!

ତାଙ୍କ କଥା ବୁଝିବାକୁ ହେଲେ ମୋତେ ତାଙ୍କରି ପରି ହେବାଯାଏଁ ଅପେକ୍ଷା କରିବାକୁ ହେବ । ଆଜଠୁ ଖ୍ରଳଶ ବର୍ଷ ପରେ ତାଙ୍କୁ ବୁଝିଲେ କ'ଣ ଅବା ହେବ ?—ସେ ତ' ଆଉ ଏ ଆକାଶ କଥା ନୁହେଁ !

ନନା କହୁଥାନ୍ତ—"ଆଲେ, ତୁ କ'ଣ ଏଇନେ ଯାଉ ଯାଉ ମରିବୁ ?" ଯତେ ବା' ସେ ପଗ୍ଚରୁଥିଲେ, 'ତୁ' କ'ଣ ଏଇନେ ଲୁଗା ବଦଳ କରିବୁ ? କଡ଼ ଲେଉଟେଇବୁ ? ବାଁ ଗୋଡ଼କୁ ଡାହାଣ ଗୋଡ଼ ଉପରେ ଥୋଇବୁ ?'

ସରଳ, ଦ୍ୱିଧାହୀନ, ନିର୍ମମ ପ୍ରଶ୍ନଟିଏ । ମୋତେ ଶୁଭୁଥାଏ ଭୟଙ୍କର ।

'ଆଲେ, ତୁ' କ'ଣ ଏଇନେ ଯାଉ ଯାଉ ମରିବୁ ?'

ଅପିନାମୀ ବୋଧହୁଏ ହସିଲା । ସେ ସେମିତ ସାଉଁ ସାଉଁ ହସେ । ତାକୁ ଗଲା କାର୍ତ୍ତିକକୁ ସତୁରି ପୂରିଗଲା । ଛ'ମାସ ହେବ ବାଧିକା ପଡ଼ି ପଡ଼ି ସ୍ୱର ନିସ୍ତେଜ ହୋଇଆସିଥିଲା । ତଥାପି ବାରିହେଉଥିଲା ତା' ହସ । ଆଶ୍ଚର୍ଯ୍ୟ ! କ'ଣ ଥିଲା ସେଭଳି ପ୍ରଶ୍ନରେ ଆମୋଦିତ ହେବାପାଇଁ ?

"ମରିବ ବୋଲି କହିଲି ପରା । ତତେ କ'ଣ ପ୍ରତେ ହେଉନାହିଁ ?—ଦିନ ସାତଟା ସମ୍ଭାଳ ଯା' ଖିଇନା, ଦେଖିବୁ ସତ ନା ମିଛ ।"

"ହଅଅ ! କୋଉ ମରୁନଥିଲୁ ? ଏ ଚତୁର୍ମାସ୍ୟାରେ ମୋତେ ଯାହା ଦହଗଞ୍ଜ କରି ମାରିବାକୁ ତୋ ମନ ! ତୁ ତ ପଗ୍ଚଶ ବର୍ଷକାଳ ମରିବୁ ମରିବୁ କହୁଚୁ—କେତେଥର ମଲୁଣି ଭଲ କହିଲୁ ! ଏଠି ପୁଅ ପାଖରେ ଥିଲେ ଟେକପାଲ ହୋଇଥାନ୍ତୁ । ସନମାନରେ ସତ୍କାର ହେଇଥାନ୍ତୁ । ସେଇଠି କୋକେଇ ବାନ୍ଧିବାକୁ ଦି'ଖଣ୍ଡ ବାଉଁଶ ମିଳିବା କଷ୍ଟ । ସାଇପଡ଼ିଶା ଯୋଉ ଶଳେ ଅଛନ୍ତି, ମୁଁ କ'ଣ ତାଙ୍କୁ ଚହ୍ନିନାହିଁ ? ବିପତ୍ତିବେଳେ ସବୁ ଆଡ଼େଇ ହେଇଯିବେ । ଯୁକୁଟ ଦେଖିବେ । ମୁଁ ଜାଣା ସେ ଜଞ୍ଜାଳକୁ ପାରିବନାହିଁ କହୁଚ । ଶେଷକୁ ବାସିମଡ଼ା ହେଇ ପଡ଼ିଥିବୁ । ହାଡ଼ ଆସି ଘୋଷାରିବେ ।"

ପୁଣି ସେଇ ସାଉଁ ସାଉଁ ହସ ।—"ତୋ ଅତଚ୍ଛପଣ କ'ଣ ମୁଁ ଜାଣି ନାହିଁ ? ସେଥିପାଇଁ ପରା ମୁଁ ସବୁ ଯୋଗାଡ଼ କରିଆସିଚି । ତେର୍ଙ୍କିଶାଲେ ବାଉଁଶ, ଦଉଡ଼ି ସବୁ ସଜାଲି କରି ରଖିଦେଇଚି । ଗ୍ୱରିଖଣ୍ଡ ଗଡ଼ ବାଉଁଶରେ ଖାପ ମରାହେଇଚି । ଅନ୍ଧାରରେ ଅଣ୍ଡାଳି ବାନ୍ଧିଦେଲେ ମଧ୍ୟ କୋକେଇ ହେଇଯିବ । ଶଗଡ଼େ ଶୁଖିଲା ଶାଳଗଣ୍ଡି ବାଡ଼ିଆଡ଼ କୁଣକୁ ଗଦେଇଦେଇଚି—ରଇ କାଠ ହବ !—ଟିମା ପୁଅ ମକରା ଇଟା ଶଗଡ଼ ବୁହାଉଚି—ତାକୁ କହିଚି, ଯେତେବେଳେ ଡାକିଦେଲେ ସେ କାଠତକ ମଶାଣିକୁ ନେଇ-ଯିବ । ସେଠିକି ସେ ନଈବାଲି ବୋହିବାକୁ ସବୁଦିନ ଯାଏ ।...ଆଉ ଶୁଣ୍ ! ସାଇରେ ତ ବୁଢ଼ା ହେଇ ସେଇ ଜଣେ—କେଦାର ଦଆଡ଼ !—ଆଉ ସବୁ ପିଲା—ଅନନ୍ତା, ଯୋଗିଆ, ଶିବୁ, ବଗିଆ ଆଉ ସେ ଶଙ୍କର ଖଇନା ପୁଅ—କ'ଣ ତା' ନାଁଟି—କୁନା ! ଏ ସମସ୍ତଙ୍କୁ

ଆସିଲାବେଳେ କହୁଚ, ଜାଇଁଲ ପୁଅ, ମର ପଡ଼ ଯାଉଚ ! ଖାଲି ବାଇଧରକୁ ଥରଟେ ଦେଖି ପଳେଇଆସିବ । କ'ଣ ଅଫିସର ହେଇଚ ! ଭାରି ବଡ଼ କାମ କରୁଚ । ସେ ଜମା ଘୁଞ୍ଚି ଆସିପାରୁନାହିଁ ସେଇଠୁ । କେଡ଼େ ଦୁଃଖର ପୁଅ । କେଡ଼େ ଗେଲବସରରେ ବଢ଼େଇଚ । ଥରେ ଦେଖିଦେଇ ପଳେଇଆସିବ । ଅରମାନ ମେଣ୍ଟିଯିବ । ଢେଣିକି ଏଇ ମାଟି ତ ମୁଁ କଣିଚ—ଆଉ କୋଉଠି ମୋ ମରଣ ହବନାଇଁ । ଏଇଠିକି ଆସି ମୁଁ ମରିବ । ଭାଇନାକୁ ସବୁ ମିଶି ସାହାପକ୍ଷ ହେବ । ତମ କାନ୍ଧରେ ଗଲେ ମୋର ସଦ୍‌ଗତି ହେଇଯିବ ।"

"ଯାଉନୁ ! ମୁଁ ସେ ତହର ଟୋକାଙ୍କୁ ଜାଣିନ ? ତୋ' ଆଗରେ ହୁଁକରଦେଇ ଶେଷକୁ ନ ଆସିଲେ ମୁଁ କ'ଣ କରିବ କହଲୁ ? ତୁ ଏଇଠି ରହୁଯା ! ବାଇଧର ଶୁଣିଲେ କୋଡ଼ିଏ ଲୋକ ଆସି ଠିଆହେଇଯିବେ । ଶୁଣିଲେ କୋକେଇ । ଶୁଣିଲେ କାଠ । ତୁ ମୋ ବୋଲ ମାନି ରହୁଯା । ଏଇଠି ମଲେ ସମସ୍ତେ ପାଣିମୁନ୍ଦେ ଲେଖାଁ ଦେବେ । ସେଇଠି କ'ଣଟା ପାଇବୁ ?"

ବୋଉ ପାଟି ଫିଟେଇ କହଲା, "ତମର ଏ ଭଉଣୀ ଖଣ୍ଡ କ'ଣ ଶୁଣିବା ଜନ୍ତୁ ? ମୁଁ ପରି ଆଜି ଧନସାରି ବୁଝେଇ ବୁଝେଇ ହାରଗଲିଣି । ତା'ର ଏକା ଲଜ୍ଜା ଲାଗିଚି, ସେ ସେଇ ଗାଡକୁ ଫେରିଯିବ । ସେଇଠି ତା' ବଡ଼ ଘଇତା ଘର ! ମଲୁ ନାଇଁ ଲୋ ରାଣ୍ଡ !" ନଣନ୍ଦ ଭାଉଜଙ୍କର ସବୁଦିନଆ ଝାପଟ !

ସାଉଁ ସାଉଁ ହସ ଭିତରେ ପୁଣି ଶୁଭିଲା, "ସେଇ ଘଇତାଘରକୁ ପରି ଯାଉଚ ! ଏଥର ଯିବ ଯେ ଆଉ ଫେରିବନାଇଁ । ବାପଘରେ କୋଳି ଖାଇ ମଞ୍ଜି ପୋତିଚ ବୋଲି ଆଉ ତୁ ଉଲୁଗୁଣା ଦେଇପାରିବୁ ନାହିଁ ।···ମୋର କେତେ ଅଳି-ଅର୍ଦଳି ଦାହକଯାକ ସହିଚୁ ମ' ଭାଉଜ !—ତୁ କ'ଣ ମୋ ଭାଉଜ ଖାଲି ? ତୁ ପରି ମୋ ବୋଉ, ମୋ ଖୁଡ଼ୀ, ମୋ ଦେଢେଇ, ମୋର ସାହା, ସଙ୍ଗାତ ସବୁ ! ଶୁଣ ! ମୁଁ କହଲେ, ଭାଇନା ସିନା ବୁଝିବ ନାଇଁ ତୁ ତ ବୁଝିଯିବୁ !—ବାଇଧରକୁ କେମିତି ପାଣିରୁ ଗୁଣିଲାପରି ବଢ଼େଇଚୁ କ'ଣ ମନେ ନାହିଁ ? ସେ ଏବେ ସୁଖରେ ଘରଦ୍ୱାର କଲା; ପୁଅ ମାଇପ ଧରି ଆନନ୍ଦରେ ରହିଲା—ତାକୁ ଏ ବୟସରେ କାହିଁକି ଚିନ୍ତା ମୁଣ୍ଡେଇଦେବା କହଲୁ ? ମୋ ପିଲା ମୋ ପାଇଁ କାହିଁକି ଘାଣ୍ଟି ହେବ ? ଯେ କାହିଁକି ତା' ଫଳନ୍ତ ସମୟରେ ରଇ ଜଞ୍ଜାଳ ଦେଖିବ ?—ପଦ୍ମବନ ପରି ତା' ସଂସାରରେ ମୁଁ କାହିଁକି କଣ୍ଟାପରି ରହିବ ?···ଆଉ ଆର କଥା ହେଲା ଯେ ସେଇ ନଇବାଲିରେ ଆମ ସାତପୁରୁଷ ହାଡ଼ ମିଶି ରହିଚ—ସେଇଠି ଦାହ ହେଇଗଲେ ଭଲ । ସେମାନେ ଆସି ପାଛୋଟି ନେବେ । ଗଲା କଥା ଯୋଉଠି ଆରମ୍ଭ ହେଇଥିଲା, ସେଇଠି ସରିଯିବ । ଯା, କ'ଣ ଗଣ୍ଡେ ଖାଇଦେଇ ବାହାରିପଡ଼ିଲୁ, ବେଳ ସମୟ ହେଇଗଲା । ତୁ ଟିକିଏ ବଳ ଦେଲେ ଭାଇନା ସାହସ କରିବ । କିଛି ଚିନ୍ତା କରନା । ମୁଁ ସବୁ ବତେଇ-ଦେବ । ଜ୍ଞାନ ଥାଉ ଥାଉ ସବୁ ବତେଇଦେବ । କିଛି ଅସୁବିଧା ହେବନାହିଁ ।

ଅନ୍ଧାର ପିଣ୍ଡାରେ ମୁଁ ସେମିତ ଠିଆହୋଇଥାଏ । ବାହାରେ ଝିପିଝିପି ବର୍ଷା । ଏଥିରେ ଅପିନାମୀ ବସିଥାଏ ରେଲରେ ଫେରସିବ । କେମିତ ଆଗ ଷ୍ଟେସନ ଯାଏଁ ଯିବ ସେ ବର୍ଷାରେ ? ଯୋଗିଣୀ ମଣିଷ । ଓଦା ହୋଇଯିବ ନାହିଁ ? ତା' ଆଖିରେ ସିନା ମୁଁ ଅଫିସର । ମୁଁ କ ଅଫିସର ତା କ'ଣ ମୁଁ ଜାଣିନାହିଁ ? ଅପିନାମୀ ମ'···ଉ କ ବୁଝିବ ମୋ ଦୁଃଖ । ମୋର ଥାଆନ୍ତା କ ଗାଡ଼ି, ଘୋଡ଼ା, ନୌକର, ଚାକର, ଧନବଳ, ଜନବଳ—ମୁଁ କ'ଣ ଲୁଚ ଲୁଚ ଏମିତ ତୋ କଥା ଏଠି ଶୁଣୁଥାନ୍ତ ? ଉ ଏମିତ ଡାକହାକ ମରବାକୁ ଯାଉଥାନ୍ତୁ, ଆଉ ମୁଁ ତତେ ଗ୍ରଡ଼ିଦେଇଥାନ୍ତ ?

ଅପିନାମୀ ବୋଧହୁଏ ଗ୍ଳଯାଉଥିଲ ଆଉ ଗୋଟିଏ କାରଣରୁ । ମୁଁ ତ ତା'ର ଜନ୍ମିତ ପୁଅ ନୁହେଁ—ହେଲେ ମଧ୍ୟ କୋଉ ଊଣା ସେଥିରୁ ? ବୋଉ ସିନା ଆମର ପାଞ୍ଚଟା ଭାଇ-ଭଉଣୀଙ୍କୁ ଜନ୍ମକରଛୁ—କନ୍ତୁ ସମସ୍ତଙ୍କୁ ପାଳଛୁ ଏଇ ଅପିନାମୀ । ଜନ୍ମ ହେଲବେଳେ ଶୂଳ ଧରଛୁ । ଇଚ୍ଛାରଛୁ । ନାହ କାଟିଛୁ । ଏନ୍ଦୁଡ଼ି ମୁଣ୍ଡା ଜାଳ ଆମକୁ ସେକଛୁ ।···ବୋଉ ଥରେ ଅଣ୍ଡା କର କହୁଥିଲ, 'ସେଇଟା ଭଉଣୀ ହେଇଗଲ ବୋଲ ସିନା, ନହେଲେ ଆମ ରଜାଙ୍କର ଦୁଇ ରାଣୀ; ମୋ ପିଲଙ୍କର ଦୁଇ ମା' ।···ମୁଁ କୁଆଡ଼େ ଭାର କାନ୍ଦୁରୁ ଥିଲ । ଅପିନାମୀ ମୋ ତୁ ଣ୍ଡରେ ତା ଶୁଖିଲ ଦୁଧଭୁଣ୍ଡି ଗୁଞ୍ଜିଦେଇ ମୋତେ ଆସ୍ଵସ୍ତ କରୁଥିଲ । ସବୁବେଳେ ମୋତେ କୋଡ଼ରେ ପୂରେଇ ଶୋଉଥିଲ । ମୋର ମନେଅଛୁ···ମୁଁ ଶୋଇଚ ବୋଲ ଭାବ ବେଳେବେଳେ ମୋତେ କୁଣ୍ଢେଇଧର ଖୁବ୍ କାନ୍ଦୁଥିଲ । ମୁଁ ଆଖି ବୁଜ ତା' କାନ୍ଦଣା ଶୁଣୁଥିଲ । ମୋତେ ଡରମାଡ଼ୁଥିଲ ଚାହିଁଦେବାକୁ । ମୁଁ ଜମା ବୁଝିପାରୁନଥିଲ ଅପିନାମୀକୁ, ଆଉ ତା' କାନ୍ଦଣାକୁ । ଏବେ ବ କୋଉ ବୁଝିଛୁ ?

ସେ ବୋଧହୁଏ ଚାହିଁଥିଲ ଆମ ଭିତରୁ କେହ ଜଣେ ତାକୁ ବୋଉ ବୋଲ ଡାକୁ । ସେଥିପାଇଁ ମୋତେ ପୋଷ୍ୟପୁତ୍ର କରବାକୁ କୁଆଡ଼େ ଥରେ କହଥିଲ । ସେଥିପାଇଁ ଘରେ ଘୋର କଳି । ବୋଉ ଆମର ରାଗିଗଲେ ଚଣ୍ଡୀ । ଉଗ୍ରକ୍ରୋଧ ନରସିଂ ରକବକ କର ଶୋଧି-ଦେଇଯାଏ । ହେତୁ ହେଲାଦନୁ ଏଇଟା ଆମର ଦେହଘଷା ହୋଇଯାଇଥାଏ । ନଣନ୍ଦ ଭାଉଜ କଳି ଦନଓଳାଏ କଥା ନୁହେଁ—ପଗୃଣ ଦର୍ଶର ପର୍ବ । ଅପିନାମୀର ସେଥିରେ ସବୁବେଳେ ଊଣା ପକ୍ଷ; ଅସହାୟ ପକ୍ଷ । ନନା ସବୁବେଳେ ବୋଉପଟିଆ ହୋଇ ଦୁ'ପଦ ଶୋଧିଦଅନ୍ତ । ଅପିନାମୀ ମଧ୍ୟ ପାଟିକର କ'ଣ ସବୁ କହେ । ନନାଙ୍କୁ ମାଇଗୁଲଆ, ମାଇପିବୋଲା, ଅଧମ ବୋଲ ଗାଳଦଏ; କନ୍ତୁ ବଡ଼ ଭାଗ ସମୟ ଖାଲ ହାଉଁ ହାଉଁ ହେଇ ପିଲଙ୍କ ପର ବୋବାଳ ଗ୍ରଡ଼ି କାନ୍ଦେ । ସାଇପଡ଼ଶାକୁ ଶୁଭେ । ସମସ୍ତେ ଜାଣନ୍ତ । ତାଙ୍କର ·ବ ଦେହସହା ହୋଇଗଲଣି । ଗାଁ ଝିଅ । ଶାଶୁଘରକୁ ଯାଇଚ ନା ନାହିଁ ବିଧବା ହୋଇଗଲ । ସେହିଦନୁ ବାପଘର ଆଶ୍ରାରେ ରହିଗଲ ଦହକଯାକ । ଭାଇ ସିନା; ଏକା ନାହ ଦୁ'ଖଣ୍ଡ । ଭାଉଜ ତ' ପରଘର ଝିଅ । ସବୁବେଳେ ଅହନ୍ତା । ସବୁବେଳେ ଝିଙ୍ଗାସ ସହ ସହ ସେ ମାଟି କାମୁଡ଼ି ପଡ଼ରହିଛୁ । କେବେହେଲେ ସେଇ ପିଣ୍ଡାତଳେ ପଡ଼ି ମରଯିବ ।

ତା' ଖାଇବା ତା ପଞ୍ଚପ୍ରାଣ । ସବୁବେଳେ ଅପିନାମି ଜଗି ଆସିଛି ରକ୍ତନଳୀକୁ ଜଗିଲ-ପରି । ମାଛ ବଢ଼ାହେଲବେଳେ, ପିଠାପଣା ଖାଇବାବେଳେ, ଖାଇବା ପାଇଁ ବଡ଼ ଚେକା ପେଟମାଛ ଦି'ଖଣ୍ଡ, ଭଲ ଭଲ ଦେଖି ପିଠା ଦି'ପୁଞ୍ଜା ବାଢ଼ିଦେଇଛି । ସେଥିପାଇଁ ଝଗଡ଼ା-ବାଡ଼ଆ କଳି । ବୋଉ ରାଗି-ମାଗି କେତେଥର ତାକୁ ଶୋଧିଛି, "ଆଲୋ ନିଅଂଶୀ ରାଣ୍ଡି, କାହିଁକି ସେ ଖାଇବାଟିକୁ ସେମିତି ଆବୁଡ଼ି ବସିଚୁ ?—ମନ ହଉଚି ଯଦି ବଶହେଇପଡ଼ୁନୁ ? —ତୋ'ର ସେ ଭାଇ—ଆଉ କାହାର କିଛି ନୁହଁ ? ଆମେ ସବୁ କ'ଣ ପର ?—ତୁ'ଇ ଉପରେ ପଡ଼ି ବାଢ଼ି ନଦେଲେ, ଆମେ ସବୁ ଶତ୍ରୁ ହେଇଚୁ, ତୋ ଭାଇକୁ ଓପାସେ ରଖିଦେବୁ ?— ନନା ବି ମାଛଥାଳିଆ ଫିଙ୍ଗିଦେଇ ତାକୁ ତୁହାଏ ଶୋଧିଦିଅନ୍ତି । ସେ କିନ୍ତୁ ସେଇଆ । ମରିଯିବ ପିନା—ଖାଇବାକୁ ଡାକେହେଲେ ଡାକେ ଯୋଇଦେବ ନାହିଁ । ସେଥିପାଇଁ ଗୋଟାଏ ଅଣ୍ଡିରାଠୁ ବଳି ସେ କାମ କରେ । ଘରେ ଗୁହାଳ ଗୋବର, ପାଣିବୁହା, ରନ୍ଧାବଢ଼ା ସବୁ କରେ । ଏଡ଼େବଡ଼ ଘରକୁ ଗୁରୁବାରକୁ ଗୁରୁବାର ଲିପାପୋଛା କରି ନିର୍ମଳ କରେ । ଅମଳଦିନେ ଖଳାରେ ବସି ଧାନଯାକ ପୁଡ଼ା ବନ୍ଧେଇ ନେଇଆସେ । ବୁଆ ବେଉଷଣକୁ ଯାଏ ହିଡ଼ମୁଣ୍ଡାରେ ବସି ଉଦାରଖ କରିବାକୁ । ନନାଙ୍କର କମ୍ପା ବୋଉର ଖାଇ ନାହାନ୍ତି । ଅପିନାମି ଆମର ପିଉସୀ ଖାଲି ନୁହେଁ; ସେ ଆମ କକେଇ, ଦିଦେଇ, ମାମୁ, ଦେଢେଇ, ଖୁଡ଼ୀ ଆଦି ଗୋଟାଏ ଆପଣାର ମଣିଷ । ସେ ଆମ ଘରର ମେରୁଖୁଣ୍ଟ । ସେ ଆମ ମୁରବି; କିନ୍ତୁ ଷାନକପାଳୀ ନିର୍ମାଖିଟିଏ !—ମନ୍ତ୍ରଭିତରେ ନିହାତି ଏକୁଟିଆ ନିଆଣ୍ଡା ଆତ୍ମାଟିଏ ।

ନନା ପୁଣି କହିଲେ, "ମୁଁ କହୁଚି ଅପି, ତୁ ଏଇନେ ମରୁନୁ ! ତୋ ଦିହ କେତେ ବାଟକୁ ଆସିଗଲଣି । ପୁଅ ଯାହାଠଉ ଓଷୁଅ ଆଣୁଚି ସେ ଅମୃତହସ୍ତ । ସେ କ'ଣ କାଲି ଗାଦ୍ଦିରୁ ହେଇଚି କି—ଛୁଇଁଦେଲେ ବର୍ଷକ ଆୟୁ ଦିନକେ ତୁଟିଯିବ ? ତାକୁ କହି ପୁଣି ଭଲ ଓଷୁଅ ଆଣିବା । ଆଉ ଦଶ ପାଞ୍ଚ ବର୍ଷ, ଯାହା ତୋର ଥିବ, ସେତକ ଥାକିଯିବୁ !"

ବୋଉ କହିଲା, "ମୁଁ ପରା ସେଇଆ କହୁଚି । ତା' ମୁହଁଟା କେମିତି ତୋଫା ଦିଶୁଚି, ଦେଖୁନ ! ଝଉଝଉ ଜଳୁଚି ଦର୍ପଣ ପରି !"

ଅପିନାମି ଶୁଣି ନଶୁଣିଲା ପରି ରହିଗଲା କିଛି ସମୟ । ତା' ଆଖି ବୋଧହୁଏ ଟିକିଏ ଓଦାଳିଗଲା । ଏମିତି କେତେଦିନ ହେବ ତାକୁ ଶୁନ୍ ମାରନେଉଛି । ଏମିତି ବୋଧହୁଏ ଦିନେ ମାରନେବ—କେଜାଣି !

"ମୋର ଏଇଠୁ ଯୁଝିବାକୁ ଡାକେ ମନ ନାହିଁ । ଏଥିରୁ ଗୋଟେ ଗଲଗ୍ରହ ମୋ ବେକରେ ଓହଳିଚି ! ସେ ଯେମିତି କହୁଛି, ଯଦି ସତକୁ ସତ ସେମିତି ମରିଯାଏ, ମୁଁ ହିଁ କେ ନିଜନ୍ତାଳ ହେଇ ମରନ୍ତି ।"

"ତୁମ ଖାଇଭଉଣୀ ଦିହିଁଙ୍କୁ କାହିଁକି ଖାଲି ମରଣ-ବାଆ ଗୋଡ଼େଇଚି କେଜାଣି ! କିଏ ମରିବ ନାହିଁ ଯେ ଏମିତି କୋକ ଦେଖେଇ ଡରଉଛ ?—ଦେଖିବ ରହିଥାଅ, ତୁମେ ଯୋଡ଼ାକଯାକ ବୁଢ଼ାକାଙ୍କ ପରି ବସିଥିବ—ମୁଁ ଖସିଯିବି ମଝିରୁ ।"

ଅପିନାମା ଚମକିଲା ପରି କହିଲା, "କ'ଣ ବେଳ ହେଇଗଲା ? ସିବା ପରା ! ମୋ ଅଣାସ୍ମୃତିରେ ମୋତେ ଏମିତି ଥରକୁ ଥର ଗଣ୍ଡରକୁ ଭିଡ଼ିନେଉଛୁ । ସପନ ପରି କ'ଣ ଗୁଡ଼ାଏ ଦିଶିଯାଉଛି । ଏଇଲାଗେ ଗୋଟାଏ ପାଞ୍ଚହତା ମଣିଷ ଦିଶିଲା । ଦୁଧ ପିଠଉ ପରି ଗୋରା । ଏଡ଼େ ଚନ୍ଦନ ଟୋପା ।"

ବୋଉ ହସି ହସି କହିଲା, "ଆଉ ଗୁଡ଼ାଏ ଚଢରେଇ ହଅନା, ବୁଢିଲୁ ! ମଲାଗଲାବେଳକୁ ତତେ ଖାଲି ସେଇ ଗୋବିନ୍ଦ ଦାସ ଦିଶୁଚ । ଏତେ ତତେ ଦେଖି-ପାରୁଥିଲା ଯଦି ଅଲପେଇଷ ମରୁଥିଲା କାହିଁକି ? ତୋ କାଚ ସିନ୍ଦୂର ଛଡ଼େଇ ନେଲା ପିଲାଦିନୁ । ମତେ ସ୍ୱାନମାନ କରାଇଲା ଜୀବନସାରା !"

ମୁଁ ଶୁଣିବା କଥା—ଗୋବିନ୍ଦ ଦାସ ପରି ସୁନ୍ଦର ମଣିଷ ଆଖପାଖ କୋଡ଼ିଏ ଖଣ୍ଡ ଗାଁରେ ନଥିଲେ କି ଅପିନାମା ପରି ଚକଚକ ଚମ୍ପାଫୁଲିଆ ଗୋରୀ ଝିଅ ଝଣ୍ଡମଣ୍ଡଳରେ ନଥିଲେ । ବିଭାବେଦିରେ କୁଆଡ଼େ ଅପିନାମାକୁ ଗ୍ରହିବା ଲୋକେ ଜଲକା ହୋଇଯାଇଥିଲେ । ଗୋଟିଏ ବୋଲି ଝିଅକୁ ଶଙ୍ଖରେ ପାଣି ପୂରେଇ ଟେକିଦେଲାବେଳେ କୁଆଡ଼େ ଶିକା ଉପରୁ ପାଣିକଖାରୁଟାଏ ଖସିପଡ଼ି ଦୁଲ୍‌କିନା ଫାଟିଯାଇଥିଲା । ସମସ୍ତଙ୍କ ମନକୁ ପାପ ଛୁଇଁଥିଲା । ସତକୁ ସତ ମାସ ଯୋଡ଼ାକ ଭିତରେ ବିପତ୍ତି ପଡ଼ିଗଲା । ଗୋବିନ୍ଦ ଦାସ, ଗୋରା ଚକଚକ ପଞ୍ଚହତା ମଣିଷ, ଯାହାଙ୍କ କପାଳରେ ଚନ୍ଦନ ଟୋପା ଚନ୍ଦ୍ରଉଦଆ ପରି ଦିଶୁଥିଲା, ଅପିନାମାର ବର, ଆମ ପିଉସା, ଗୋଟାଏ ଦିନ ଜରରେ ଚାଲିଗଲେ ।

ଖରାଦିନ ଦି'ପହରବେଳା, ହେଣ୍ଡେଡ଼ା ଟୋକାଙ୍କ ସାଙ୍ଗରେ ଝରାରେ ବାବନାଭୂତ ପରି ମୋର ବୁଲିବାର ଅଭ୍ୟାସକୁ ଭାଙ୍ଗିବା ସକାଶେ ଅପିନାମା ମୋତେ କୋଡ଼ରେ ପୂରେଇ ଗପ କହେ—ଗାଁ କଥା, ଗୋବିନ୍ଦ ଦାସ କଥା, ଶଙ୍ଖଚିଲ କଥା, ବଉଳା ଗାଈ କଥା । ଗୋବିନ୍ଦ ଦାସ କଥା କହିଲାବେଳେ, ଥରକୁ ପ୍ରକାରେ କରି କହୁଥାଏ । କହେ···ଗୋବିନ୍ଦ ଦାସ ସାଇବ ପରି ଗୋରା । ···ତା' ବୁକୁ ଦି'ହାତ ଓସାର । ···ତା' ଦାନ୍ତ ମଲ୍ଲୀକଢ଼ି ପରି । ତା' କାଖମୂଳ ଚନ୍ଦନପରି ବାସେ । ଆଉ ବେଳେ କହେ—ଅଲପେଇଷାର କଟାସ ପରି ଆଖି । ରୂଢ଼ ସାଲୁବାଲୁ ମୁହଁ । ଦିହସାରା ଭାଲୁପରି କଲା । ଖମ୍ବପରି ଗୋଟାଏ ଜଙ୍ଘ ମଡ଼େଇଦେଲେ ଅପିନାମାର କୁଆଡ଼େ ନିଃଶ୍ୱାସ ରୁନ୍ଧ ହୋଇ ଯାଉଥିଲା । ଏ ସବୁ କହିଲାବେଳେ ମନକୁ ମନ ଅପିନାମା ଗୁଡ଼ାଏ ସାଉଁ ସାଉଁ କରି ହସୁଥାଏ । ମୋତେ ଜମା ସୁଖିଲାଗେନାହିଁ । ମୋ ଉପରେ ଅପିନାମା ଜଙ୍ଘ ମଡ଼େଇ ଦେଇଥାଏ । ମୋତେ ତା' କୋଡ଼ ଭିତରେ ରୁନ୍ଧି ଦେଇଥାଏ । ଆଉରି ଆଉରି ଭିଡ଼ି ନେଉଥାଏ । ···ଏମିତି ଦିନେ ଖରାବେଳେ ମୁଁ ଆକ୍ରାମାକ୍ରା ହୋଇ ଉଧୁଳିଲି । ଚଙ୍ଗୁଡ଼ି ପରି ହାତଗୋଡ଼ ଗ୍ରୁଟି ଛଟକିଲି । ଅସଂଖ୍ୟ ବଧା ଗୋଇଠା ମାରି ତା' ଝାଳ ସରସର ପେଟତଳୁ ଭିଡ଼ିହୋଇ ବାହାରିଆସିଲି । ମୋତେ ତା' ଦେହ ଆଇଁଷିଆ ଗନ୍ଧେଇଲା । ବିଷପରି ଲାଗିଲା ତା' କଥା । ମୋତେ ସେତେବେଳକୁ ପାଞ୍ଚବର୍ଷ ବୟସ । ସେଇଦିନୁ ଅପିନାମାକୁ ଦେଖିଲେ ଡେଇଁଲି । ସେ ଗେଲ

କରିବାକୁ ଡାକଲେ ହାତ ଛୁଆଁଡ଼ ପଳେଇଲ । ସେ କେତେ ସାକ୍ଲେଇ ହେଲ, କେତେ କାନ୍ଦିଲ—ମୁଁ କିନ୍ତୁ ଆଉ ତା' ପାଖ ପଶିଲିନାହିଁ । ଏବେ ମଧ୍ୟ ଅପିନାମି ଦେହ ମୋତେ ଆଇଁଷିଆ ଗନ୍ଧାଏ । ମୋତେ ନପାଇ ଅପିନାମି ମୋ ସାନଭଉଣୀକୁ ଆଦରିଗଲା । ତାକୁ କୋଡ଼ରେ ସୁରେଇ ଶୋଇଲା । ଆଉ କିନ୍ତୁ ଗୋବିନ୍ଦ ଦାସ କଥା କହିଲାନାହିଁ; ବରଂ କହିଲା ଯେ ତାର ଗୋଟେ ଝିଅ ହୋଇଥିଲା । ମୋ ଭଉଣୀ ପରି । ପୁଅଟାଏ ହୋଇଥିଲା ମୋ'ରି ପରି । ଯୋଡ଼ାକଯାକ ଇନ୍ଫ୍ଲୁଏଞ୍ଜାରେ ମରିଗଲେ ।…ବୋଉ ଏକଥା ଶୁଣି ହସିଲା । କହିଲା, ସେ ଗ୍ରେପର ସେମିତି କହେ—ସେଗୁଡ଼ାକ ସବୁ କଥା ମିଛ ।…

ମୁଁ ସେଇ ଅନ୍ଧାରରେ ଦାଣ୍ଡପିଣ୍ଡାର ଅଧାକାଛ ଉପରେ ବସିଥାଏ । ଅନ୍ଧାର ଟୋପା ଟୋପା ଖସୁଥାଏ ଆକାଶରୁ । ସାମ୍ନା ଝାଉଁଗଛରେ ପବନ ସାଉଁ ସାଉଁ ହେଉଥାଏ । ରାତି ନିର୍ଜନ ହୋଇଆସୁଥାଏ ।

ପୁଅକୁ ନେଇ ମୋ ସ୍ତ୍ରୀ ଯାଇଥାନ୍ତି ବାପଘରକୁ । ରାନ୍ଧୁଣିଆ ଟୋକା ବୋଧହୁଏ ଘୋଷଘରେ ଢୁଳାଉଥାଏ । ବତିଗୁଡ଼ିକ ନିଷ୍ଟଳ ଜଳୁଥାନ୍ତି । ଦାଣ୍ଡଘରେ ଅଗତ ସ୍ତବ୍ଧ ହୋଇ କାନେଇଥାଏ ପବନକୁ, ବର୍ଷାକୁ । ବର୍ଷା-ଅନ୍ଧାର ଭିତରେ କେହି ଜଣେ ଓଦା ସରସର ହୋଇ ଅପେକ୍ଷା କରିଥାଏ ଖୁବ୍ ନିକଟରେ, ଖୁବ୍ ନୀରବରେ !

ଅପିନାମି ବୋଉ କଥାକୁ କାନ ଦେଲନାହିଁ ବୋଧହୁଏ । କହିଲା, "ତତେ ବଳେଇବାକୁ ମୋର ମନ ନାହିଁ । ବୁଝିଲୁ ଝାଇନା, ମୁଁ ସବୁ ଜାଣିସାରିଲଣି । ତତେ ଟିକିନିଖି ସବୁ କହିଦେବି । ଆଜି ହେଲା ଶନିବାର । ଆସିଲା ଶନିବାରକୁ ତୁ ଝାଡ଼ଝୁଡ଼ି ହେଇ, ନିକାଞ୍ଜାଳ ହେଇ ବସିଥିବୁ । ସବୁ ସରିଯାଇଥିବ ।"

"ହଅଅ ! ଜନ୍ମ ମରଣ କଥା ତ' କେହି କହିପାରିବେ ନାହିଁ । ତତେ ଖାଲି ଜଳଜଳ ଏମିତି ଦିଶିଯାଉଛି ? ତୋର ଆଉରି ହଟହଟା ଯୋଗ କ'ଣ ସରିଲଣି ? ମହାପାତକୀ ରୁ !—ବୁଝିଲୁ, ଜୀବନଯାକ ଦୁଃଖରେ ପାଣ୍ଡି ହେଇ ହେଇ ଆସିଚୁ । ତତେ ଶେଷ-ବେଳକୁ ନ ଘୋଷାରିଲେ ସେ କ'ଣ ଏମିତି ସହଜରେ ଛାଡ଼ିଦେବ ?"

"ହଁ, ଦିବ ! ଏଥର ନିଶ୍ଚେ ଠୋ-କିନା ଛାଡ଼ିଦେବ ! ମୁଁ କ'ଣ ନାହିଁ କରୁଚି ମୁଁ ପାତକୀ ବୋଲି; ମାତ୍ର କିଏ ମତେ ଏ ମାୟାରେ ଫାନ୍ଦିଥିଲା ? ଏଇ ତମେ ଦୁଇଜଣ । ମୋ ପ୍ରାଣପଞ୍ଜୁରି ଭିତରେ ତମେ ଲକ୍ଷ୍ମୀନାରାୟଣ । ତମ ପିଲାଏ ମତେ ମାୟା ଲଗେଇ ରଖି-ଥିଲେ । ଲକ୍ଷେ ଥର ଡାକିଥିବି, ମରଣ ହେଇଯାଉ ବୋଲି । ହେଲେ, ପୋଡ଼ିଯାଉ କିନା ମୋ ଜନ୍ମ, ତମରିମାନଙ୍କ ପାଇଁ ମୁଁ କ'ଣ ସତେ ଗୁହିଁଥିଲି ମରିଯିବାକୁ ? ନାଁ, ମତେ ତ ଲୋଭ ଗ୍ରାସିଥିଲା, ଏଇ ଗୁହମୂତରେ ପାଣ୍ଡି ହେଇ ଗାଲ-ଝିଙ୍ଗାସରେ ପଡ଼ିରହିବାକୁ ମନ ହଉଥିଲା । ଏଥର ଆଉ ସେ ସବୁ ନାହିଁ । ସୂତ୍ରଆଡ଼ୁ ବନ୍ଧନ ଛିଣ୍ଡିଗଲଣି । ଏଥର ଏଇ ମଙ୍ଗଳବାରକୁ କଣ୍ଠ । ସେଇଦିନ ନ ମଲେ ମତେ କହିବୁ ।"

"ଜାଣିଶୁଣି ଯେବେ ମରୁଚୁ, ଆଉ ଦିନେ ଗଡ଼େଇ ଦଉନୁ । ବୁଧବାରେ ମଲେ ଏକାଦଶୀ ପାଇବୁ । ଏଇଟା ନିର୍ମଳା ଏକାଦଶୀ—ଭାଗ୍ୟରେ ଥିଲେ ମିଳେ ।"

ବୋଉ ହସିଲ : "ଅଭିଲ ଆଉ କାହାକୁ କହନ୍ତି ? ଭଉଣୀକୁ ଭାଇ, କେହି କାହାକୁ ଊଣା ନୁହନ୍ତି । ହଇ ହେ, ତମ ଭଉଣୀ କ'ଣ ପଇତାପର ଯିବେ କି ? ଏମିତି ଦିନ, ବାର, ବେଳା ବୁଝି ଖଡ଼ଖଡ଼ି ସଜାଇ ହବ, ସୁଣି ବଜେହେବେ ?"

ଅପିନାମି ହସିଲ ନାହିଁ । ସେମିତି ପରିଷ୍କାର କ୍ଷୀଣସ୍ୱରରେ କହିଲ, "ସେଇ ତ' ବଡ଼ ପଇତାପର ! ତୋ ବେଳାରେ ତୁ' କ'ଣ ନଯିବୁ କି ? …ହଉ, ଭାଇନା; ତୁ ଯେମିତି କହିଲୁ ସେମିତି ହେବ । ମୁଁ ବୁଧବାର ଚାଲିଯିବି । ଏ ସବୁ ତିଥି ବାର ମାନିଲେ ଭଲ; ନହେଲେ ସେଥିରେ କିଛି ନାହିଁ ।…ଆଖି ବୁଜିଦେଲେ ତ ସୋମଦ୍ର—ସେଠି ତିଥି ନା ବାର ? ମୁଁ ସବୁ ଜାଣିଚ ! ମୁଁ କ'ଣ ମରିନାହିଁ କି ? କେତେ ଥର ମରିଚ ! ଏଇନେ ତ ମରୁଚ ! ମୋର ଗୋଡ଼ ଦି'ଟା ଅଣ୍ଟାଠଉଁ ମରିଗଲେଣି । …ସେଇଠୁ ଏ ମାଦଳା ଖଣ୍ଡି ନହେଲି ଆଉ ଦିନେ ଅଧେ ଧୁକୁଧୁକୁ ହବ ! ହେଲି, ସେଇ ବୁଧବାର ସ୍ଥିର ହେଲି !"

ସବୁ କେମିତି ସ୍ତବ୍ଧ ହୋଇଗଲ । ବାହାରେ ବର୍ଷା ପବନ ମଧ୍ୟ ରୋଧ ହୋଇଗଲ । ମୁଁ ଅସୁସ୍ଥ ବୋଧକଲି । ସେଇଠୁ ଉଠିବାକୁ ଇଚ୍ଛାହେଲ ନାହିଁ । କୁଆଡ଼େ ଯିବାକୁ, କ'ଣ କାମ କରିବାକୁ ମନ ବଳାଇଲ ନାହିଁ । କ'ଣ ହବ ଔଷଧ ଅପିନାମିର ? ଯାତ୍ରା ପାଇଁ କ'ଣ ଅବା ପ୍ରସ୍ତୁତ ହେବାର ଅର୍ଥ ?

…"ମଙ୍ଗଳବାର ରାତିରେ ତ ପ୍ରଳୟ ! ତୁ, ଭାଇନା ଜମା ଅନିଦ୍ରା ରହିବୁ ନାହିଁ । ତୋ ଦିହ ଦିହପରି ନୁହେଁ । ମତେ ସେ ଢେଙ୍କିଶାଳ ପାଖ ବଖରାରେ କବାଟ ଆଉଜେଇଦେବୁ । …ସେଇ ରାତିରେ ସମସ୍ତେ ଏକାଠି ଆସିବେ ! …ବୋଉ ଆସିବ— ନାକ କାନ୍ଦୁରି, ସକସକ—ଏଡ଼େ ସିନ୍ଦୂର ମୁଣ୍ଡୁଳା, ଏଡ଼େ ନୋଥ, ଚତାକୁଟା ବୁକୁ ! ସେ କେତେ ଥର ଆସିଲାଣି ! …ନନା ଆସିବେ । ଚାହିଁଦେଇ ଆଉ ପଳେଇଯିବେ ନାହିଁ ! କାନ୍ଧରେ ପାକଲ ଗାମୁଛା ପକେଇ, ଅନ୍ତଲପେଟ ଦେଖେଇ ନିର୍ମାସ୍ଥା ପୁରୁଷ ଠିଆହେବେ । ମତେ ନିଶ୍ଚଳ ଚାହିଁ ଠିଆହେବେ ! ବିଧବା ହେଲାଦିନୁ ଝିଅର ଫୁଙ୍ଗୁଲା ହାତଗୋଡ଼କୁ, ତା' ମେଲ କପାଳକୁ ସେ ଚାହିଁ ପାରୁ ନଥିଲେ ତ—ସେଦିନ ଚାହିଁବେ ! ନିଶ୍ଚଳ ଠିଆ-ହେବେ !…ଗୋବିନ୍ଦ ଦାସେ ଆସିବେ । ଲଜ ଲଜ ହେଇ ଚାହିଁବେ । ତୋ ବଡ଼ପୁଅ ଆସିବ । ସେ ମତେ ଆଦରଯାଇଥିଲି । ଏ ଅଲକ୍ଷଣୀ, ଆଣ୍ଠୁକୁଢ଼ୀ ଧାସରେ ଝାଉଁଳିଗଲ । ସେ ଆସି ଠିଆହବ ପାଟି ପାକୁ ପାକୁ କରିଦ କଥା କହିବାକୁ ।"

ବୋଉ ଧୁକ୍‌ଧୁକ୍ କାନ୍ଦିପକେଇଲି । ନନା ସେମିତି ଯୋଡ଼ରେ ହାତ ରଖି ନୀରବ ରହିଲେ ।

ଅପିନାମୀ ସେମିତ ଗମ୍ଭୀରକୁ କହିଚାଲିଲା, "ଘାଡ ପାହିଲାବେଳକୁ ଯଦି ପାଟି ପଡ଼ି-ଯାଇଥିବ, ମେଲାକର ଗଙ୍ଗାଜଳ ମନ୍ଦେ ଇଡ଼ିଦବ । ମୁଁ ଗୁହିଁଥିବ । ମତେ ସେତେବେଳେ ଅସୁମାର ଜଗତ ଦିଶୁଥିବ । ମୋ କାନକୁ ଶୁଭୁଥିବ ଅସୁମାର କଥା ।···ଗଙ୍ଗାମାଟି ମୋ କୋଥଳାରେ ରଖିଚ—ଢଳାକ କରେଇଦବୁ । ମୋ ଜପାମାଳା ବେକରେ ଗଳେଇଦବୁ । ସେଇ କୋଥଳାରୁ ଏକାଷ୍ଟନ୍ଦ କାଢ଼ି ମୟୂରପକ୍ଷୀ ଚନ୍ଦ୍ରଠଉଁ ଆଉ ଅଧାଏ ଗାଇଦବୁ । ମତେ ସବୁ ଶୁଭିବ ନାହିଁ । ଯୋମଦ୍ର ମାଡ଼ିଆସିବ । ଗୋଟିଏ ହେକା ଉଠିବ । ସେଇ ଟେକନବ ଆରପାର !"

ଅପିନାମୀକୁ ପୁଣି ଥରେ ଶୂନ୍ ମାରନେଲା । ସେ ଶୋଇଗଲା ଦୁଇ ମିନଟ୍ ।

"ହଇହେ, ସ୍ୱେ କ'ଣ ସବୁ ଦେଖିଲାପରି କହିଲଣି । କ'ଣ କରିବା ସେଇଠି ? —କେମିତି କ'ଣ ସବୁ ହବ ?—କିଏ କିସ୍ତା ଧରିବ ?—କେମିତି ଶୁଦ୍ଧିଘର ହବ ?—ପଇସା କାହିଁ ?"

ଶୁଦ୍ଧିଘର କ'ଣ ଏମିତି ବଗ୍ଘର ହୁଏ ? ଶୁଦ୍ଧିଘର ଆଉ ବାହାଘର କ'ଣ ଏକା କଥା ? ମରିବା ବଞ୍ଚିବା କ'ଣ ଏକା କଥା ?—କେମିତି ?···ମୋ ପାଦ ତଳପା ସିର୍ ସିର୍ କରୁଥାଏ, ତଣ୍ଟିପାଖର ଗୁଲାଟାକୁ ଯେତେ ଢୋକଲେ ସୁଦ୍ଧା ଖସୁ ନଥାଏ ତଳକୁ !

ଅପିନାମୀ ଗମ୍ଭୀର ପାଣିରୁ ଉପରକୁ ଭସିଆସିଲା । ମଝିରେ ସେ ବୁଡ଼ିଯାଇଥିଲା ବୋଲି ତା'ର ଧାରଣା ବୋଧହୁଏ ହେଉନଥିଲା । କହିଲା, "ଖଣ୍ଡେ ନୂଆ ଲୁଗା ମୋ ଟଣଙ୍କ ଭିତରେ ଅଛି ।···ସେଇଟା କୋଉ ଖଣ୍ଡ କହିଲୁ ? ଗୋବିନ୍ଦ ଦାସର ପୁଣ୍ଡୁରୀ ବାହାହେଲା ବର୍ଷ ମତେ ଖୁଡ଼ୀ ମାନ୍ୟରେ ସଙ୍କୁଳା ନଥିଲା ?—କୋଡ଼ିଏ ବର୍ଷ ହେଇଗିବ ପରା !—ସେଇ ସେ ଖଣ୍ଡ ଦେଇଥିଲା । ସେମିତି ଅର୍ଖ ନୂଆ ଥୁଆହେଇଚ । ସେଇଟାକୁ ମତେ ଗୁଡ଼େଇଦବ । ଆଉ ଗୋଟାଏ କନାବୃକୁଳା ବନ୍ଧାହେଇ ଥୁଆହେଇଚ । ସେଇଟା ହାତ ମାରଲେ ଛୁଣ୍ଡି ପଡ଼ୁଚ—ମୋ ବଭାଘର ବଉଳପାଟ । ତାକୁ ସେମିତି ବଣ୍ଡା କରି ମୋ ମୁଣ୍ଡତଳେ ଥୋଇଦବ । ଆଉ ଶିରକାପଡ଼ା ଖଣ୍ଡେ ବେକରେ ପକେଇଦେଇ କାର୍ମାକ୍ କଣିକାଟାଏ ପାଟିରେ ମାଡ଼ିଦବ । ସଇଲା ! ତା' ଉପ୍ରରୁ କୋକେଇ ଟେକ ନେଇଯିବ । ସେଇ ଯେ ପୁଣ୍ଡୁରୀ ନୁହେଁ—ତାକୁ ମୁଁ କହିଚ । ସେଇ ମୋ କିସ୍ତା ଧରିବ । ତା' ପିଗ୍ରୁ ଭୁ ପଇସାଟିଏ ସାରବୁ ନାହିଁ ।"

ଅପିନାମୀର ଟ୍ରଙ୍କ, ତା' କୋଥଳା ଆମେ ସବୁବେଳେ ଫିଟେଇଚୁ । ସେ ବାଘୁଣୀ ପରିକା ଝାମ୍ପି ଆସି ହାତରୁ ଛଡ଼େଇ ନେଇଯାଇଛି । ଗାଲ ତୋଡ଼ିଦେଇ ପେଲିପକେଇଛି । ମୁଁ ତା' ଗଙ୍ଗାଢଳାକକୁ ଖଡ଼ି ବୋଲି ଭାବି ସବୁବେଳେ ନେଇ ଯାଉଥିଲି । ଭୂଇଁରେ, କାନ୍ଥରେ ଗିର୍ ଟାଣିବାରେ ସେଇଟା ଫାଲୁ ଫାଲୁ ସରିଯାଉଥିଲା । କାହାକୁ କୁହାବୋଲା କରି ଅପିନାମୀ ପୁଣି ଖଣ୍ଡେ ଯୋଗାଡ଼କରି କୋଥଳାରେ ରଖିନେଉଥିଲା । ତା' ସୂତାଲଗା ଚଷମା ମୁଣ୍ଡରେ ଗଳେଇ ଦେଖିଲେ ପାଦତଳ ପାତାଳକୁ ଅପସରିଗଲା ପରି ଦିଶୁଥିଲା ।···ଏ ସବୁ

ପିଲାଦିନ କଥା । ତା'ପରେ ପାଠ ପଢ଼ିବା ଆଳରେ ଗୁଡ଼ଗୁଡ଼ ହୋଇଗଲା । ଅପିନାମା ଘୁଞ୍ଚାଏ ପରି ଖାଲି ପଦର ଯାଉଥିଲା ।···ହେଇ, ଗାଁରୁ ଧାନ ଅମଳ କରି ଫେରୁଛି ।··· ହେଇ, ଗୁହାଳ ଛପର କରିବାକୁ ଲୋକ ନେଇ ଆସିଛି ।···ନହେଲା ବେଳକୁ ସ୍ତ୍ରୋପଘରେ ପଶି ରନ୍ଧାବଢ଼ା କରୁଛି । ଘୁଞ୍ଚୁଣୀ ଧରି ଘର ଗୋଟାଯାକ ଓଳେଇପକଉଛି । କାନ୍ଥରୁ, ଛାତରୁ ବୁଢ଼ିଆଣୀ ଜାଲ, ମେଞ୍ଚା ମେଞ୍ଚା ଅଳନ୍ଧୁ ଝାଡ଼ି ଦେଇ ନିର୍ମଳ କରିଦେଉଛି ।··· ଖରାରେ ସିଝିଗଲେ ଅପିନାମା ମୁହଁ ରଙ୍ଗା ପଡ଼ିଯାଉଥିଲା । ସେ ଆମ ଘରେ ସବୁଠୁ ଗୋରା ତ ! ବୁଢ଼ୀକାଳରେ ଚମ ଲୋସ୍ମ ଲୋସ୍ମ ହୋଇଗଲା ସିନା, ଏବେ ସୁଦ୍ଧା ବାହୁଉପରେ ସେ ଯେଉଁ ନେଳିରଙ୍ଗର ଚିତା କୁଟେଇଛି, ରାଉରାଉ କରୁଛି ରାତିରେ !

ବୋଉ କହୁଥିଲା, କେମିତି ତା'ଦିନେ ଅପିନାମା ନିଆଁପରି ଝଟକୁଥିଲା । ପିଚ୍ଛିଳ ପଡୁଥିଲା ଦେହ । ମୁହଁବାଟେ ବୟସ ଉତୁରି ପଡୁଥିଲା ।···ନେଳନେଳ ଆଖି । କଳା ଭଅଁରପରି ଗୋଛାଏ ଗୋଚ୍ଛାଏ ବାଳ । ଗଣ୍ଠିଟାଏ ପକାଉଥିଲେ ତାଳ ଫଳ ପରି ଦିଶୁଥିଲା । ଦେହରେ ଖାଲି ଧଡ଼ିମୁହଁ ନଥିବା ଧଳା କନ୍ତା । ହାତ ପାଦ ପଦ୍ମପାଖୁଡ଼ା ପରି, ଅଳତାପତ୍ର ପରି ନାଲି । ଆଙ୍ଗୁଠିଗୁଡ଼ାକ ଚମ୍ପାକଢ଼ ପରି । ତାକୁ ଉପରେ ଦାଣ୍ଡକୁ କାଢ଼ୁ-ନଥିଲେ ତା' ଭାଇନା ଭାଉଜ । ଥରେ ଗୁଳିଗଲେ ଗାଁଯାକ ଅଣ୍ଡିରା, ମାଇକିନିଆ ଉଚ୍ଛୁଳେଇ ହୋଇ ପଡ଼ୁଥିଲେ ରାସ୍ତାରେ । ସମସ୍ତଙ୍କ ଆଖି ଖୋସିହୋଇଯାଉଥିଲା । ସେଇ ରୂପ କୋଡ଼ିଏଖଣ୍ଡ ଗାଁକୁ କୋଡ଼ିଏ ବର୍ଷ କାଳ ମଜ୍ଜିପକାଇଥିଲା । ଯାହା ତୁଣ୍ଡରେ ଶୁଣିବ ସେଇ କଥା, ଖାଲି ସେଇ କଥା ।

ଅପିନାମା ତା' ନିଅଣ୍ଡିଆ କପାଳକୁ ନେଇ ଭାଇଘରେ ଆସି ଆଶ୍ରାନେଲା । ସେଇ ହାତରେ ଗୁହାଳ ଗୋବର ପୋଛିଲା । କୂଅରୁ ପାଣି କାଢ଼ି ଶାଗ ପଟାଳିରେ ମଡ଼େଇଲା । ଖରାଦିନେ କଣ୍ଟାରୁ ଗଛ ପାଳିଲା । କୌଣସି ପରିଶ୍ରମକୁ ସୀଉକାର ନକଲା ବୋଲି ଲୁହେଁ । ଭାଇ ଭାଉଜକୁ [illegible]ନାକରିଆସିଲା ପଚିଶ ବର୍ଷ । ଖାଲି ମାଇକିନିଆ ଜନ୍ମ ପାଇଥିଲା ବୋଲି ସିନା, ନହେଲେ କେଉଁ କଥାରେ ସେ ମରଦ ଠଉଁ ଊଣା ନଥିଲା ।

ଆଜି ସେଇ ଅପିନାମା ବାହାରିଛି ଗାଁକୁ ଫେରିଯିବ । ଗାଁରେ ସାତପୁରୁଷୀ ମାଟିରେ ମରିବାକୁ ଫେରିଯିବ । ଅପିନାମାକୁ ଡର ମାଡୁନାହିଁ ? —ନନାଙ୍କୁ ବୋଉକୁ ଡରମାଡ଼ୁ-ନାହିଁ ? ଦୁଃଖ ଲାଗୁନାହିଁ ? କେଜାଣି !

ବୋଉ ବରଂ ଅଳ୍ପ ହସିଲା ପରି କହିଲା, "ଅଲଜୁକା, ନିଜେ ସବୁ ଯୋଗାଡ଼ ଆସିଚ ଘଇତାଘର ଯିବ ବୋଲି । ହେଲେ ଏ ଚଉମାସ୍ୟାରେ କାହିଁକି ହମହମ ହେଲୁ ଗୋବିନ୍ଦ ଦାସ ପାଖକୁ ଚିଠିବାକୁ ? ଝଡ଼ ବର୍ଷା ଲାଗିରହିଲେ ତୋ ରଇ ଜାଳବ ସେ ତୁ ଯିବୁ ?"

"ସତେ ତ, ଏ ଦୁର୍ଦ୍ଦିନରେ କି ହଟହଟା ନହେବ ମଣିଷ !" କହିଲେ ନନା ।

"ନାଇମ' ଖଇନା ! ଆଉ ସୂର୍ବ ଭଲ ଅଛୁ କି ? ମୁଁ ଯାଇ ଦେଖିଆସିଚି ପରା ! ମଶାଣିରେ କି ସୁନ୍ଦର ସବୁ ପକ୍କା ଘର କରିଦେଲେଣି । ସିମିଣ୍ଟି ଉପରେ ରଇ ଜଳିବାକୁ ଜାଗା କରିଦେଇଛନ୍ତି । ଖରା ଶୀତଳ ଜାଗା । ସେଠିକି ଯୋଉ ପବନ ପଡ଼ୁଛି, ଯାହାର ହେଲେ ମନ ହେଇଯିବ ମରିବାକୁ ।"

"ମଲୁ ଲୋ ମଶାଣିଚଣ୍ଡୀ ।" କହିଲା ବୋଉ ! ଅପିନାମାକୁ ଆଉ କ'ଣ କହିବାର ଥିଲା ?

"ହୁ ତା' ହେଲେ କ'ଣ ସତକୁ ସତ ବାହାରିଲୁ ?—ସବୁ ଡୋର ଛୁଟେଇଦେଲୁ ?"

"ଯାଉନୁ—କୋଉ ଅଡୁଆ କଥା କହୁଚୁ ବା ଖଉଜ ! ସେ ଡୋର ତା'ର ନା' ମୋର ?—ମୁଁ ମୋର ଝପିଯିବ । ଏ ପୋଗୁ ଦହଣ୍ଡେ ପଡ଼ିଥିବ ପୁରୁଣା କୋତରା ମେଞ୍ଚାଏ ଡୋର ପରି ।"

"ଏମିତ ଠୋ-ଠା ସବୁ କହିଦଉଚୁ । ତତେ କ'ଣ ଯମ-ଯାତନାକୁ ଡର ମାଡ଼ୁନାହିଁ ! ବାଟଘାଟ ନଥିବା ସେ ଅପନ୍ତରା ଭିତରେ କେମିତ ପଶିବୁ ? ଯମ ଆଗକୁ କେମିତ ଯିବୁ ?"

"ଯାଉନୁ, ମୁଁ ସେ ରଇଜଲାକୁ ଡରିଚି ? —ସେ କ'ଣ ମତେ ଯାନ୍ତ୍ରନା ଦବ ବା' ? ମୁଁ କୋଉ ଯାନ୍ତ୍ରନା ନ ଭୋଗିଚି ଯେ ଆଉ ବାକି ଅଛି ? ମୁଁ ନିଆଁରେ ଶୋଇଚି ! ସୋମଦ୍ରରେ ବୁଡ଼ିଚି । କ୍ଷୁରଧାରରେ ଚାଲିଛି । ମୋ ଯାନ୍ତ୍ରନା କଥା ଶୁଣିଲେ ଯମ ଅଲପେଇଷର ଚେତା ବୁଡ଼ିଯିବ । ମୁଁ ତ ଜୀଇଁବାକୁ ଡରିନାହିଁ, ଏଇଲାଗେ କ'ଣ ମରିବାକୁ ଡରିବ ?"

"ଏମିତ ଉକୁଟାଣ କଥା କହନା । ମରଣକୁ ନଜାଣି ମରଣକୁ ସ୍ତବ କରନା ! ଶାବଳ ପରି ଦାନ୍ତ, ହୁଲା ପରି ଆଖି, ବିକଟାଳ ରୂପ ଆସି ଦଉଡ଼ିରେ ବାନ୍ଧି ଟେକିନେବେ । ତାଙ୍କଠଉଁ ଉବୁରିବା ପାଇଁ କାହାର ଆୟୁଷ ଅଛି ?"

"ହଅଥ ! ସେଗୁଡ଼ାକୁ ମୁଁ ଦେଖିସାରିଚି ! ନଇତ ରାତିରେ ସେଥିରୁ ପୁଣ୍ଡାଏ ଘୋଷଟା ଆସି ଖିଙ୍କାରି ହୁଅନ୍ତି । ମୁଁ ତାଙ୍କୁ କଟମଟ କରି ଚାହିଁଦେଲେ ସବୁ ଡରିଲା ଯାଆନ୍ତି । କିଏ ଦଶେ କେଦାର ଢଆଡ଼ୀ ପରି, ଆଉ କିଏ ବାଞ୍ଛା ପାଇକରା ପରି । ସବୁ ଦାନ୍ତ ନେଫେଡ଼ି ହାତ ମକଚି ନଙ୍ଗର-ପଙ୍ଗର ହୁଅନ୍ତି । ଖଲୁପରି ରୁମ ସାଲୁବାଲୁ ନଙ୍ଗଳା ଅଣ୍ଟିରା ଗୁଡ଼ାଏ । ଥୁ' କରି ମୁଁ ଲଣ୍ଡାଏ ଛେପ ପକାଇ ଦେଲେ ତେଲୁଣିପୋକ ପରି ସେମାନେ ହୀନମାନ ହେଇ ଉଭେଇଯାଆନ୍ତି । ଆଜି ବୋଲି ନୁହେଁ, ମୁଁ କାହିଁ କୋଉକାଳୁ ସବୁ ରାତିରେ ଏଇ ଯମଦୂତମାନଙ୍କ ସାଙ୍ଗେ ବଞ୍ଚିଆସିଚି; ଲଢ଼ି ଆସିଚି । ମୋତେ କେତେଥର ସେମାନେ ମାରି-ପକେଇଚନ୍ତି । ମୁଁ ତାଙ୍କୁ କେତେଥର ଯୋଡ଼ା-ଯୋଡ଼ା କରି ଭଣିପକେଇଚି । ନନ୍ଦ ଖଞ୍ଜିଲିବେଲକୁ ମରଣ ନାହିଁ । ମୁଁ ସେ ଅଲକୁକ, ଥୋବଡ଼ା, ରଇଜଲାଙ୍କୁ ଜାଣିଚି ! ଗୋବିନ୍ଦ ଦାସ ମାଇପକୁ ସେମାନେ କ'ଣକରି ଚାଇଲେ କି !"

ଅଡିନାଶୀର ଆତ୍ମାଭିମାନ, ତା'ର ବାଣ୍ଟା ହଟ୍ଟପଣ, ତା' ଦମ୍ଭ ଦେଖି ମୁଁ ଥ' ହୋଇ ଚାହିଁରହିଲି । ମୋର ବିଶ୍ୱାସ ହୋଇଗଲା ଯେ ଅଡିନାଶୀ ଚାହିଁଲେ ଯମ ସାଙ୍ଗେ ଲଢ଼ି-ଯାଇପାରେ । ମରଣ ତା' ପାଇଁ କ ଛାର ! ତାକୁ ସେ ପାଦରେ ମର୍ଦ୍ଦିଦେଇପାରେ । କାହାର ସତେ ସାଧ୍ୟ ଏ ନାଗୁଣୀ, ବାଘୁଣୀ, ଦର୍ପିଣୀ ସତୀ ନାରୀକୁ ଯୋଷାଣ ନେଇଯିବ ? ମୋ ଭୂକୁ ରୁଦ୍ଧ ହୋଇଗଲା ତାଠାରା ନିଃଶ୍ୱାସରେ । ଆଖି ନାକରୁ ଡବଡବ ପାଣି ବଗିଡ଼ି-ଗଲା । ରୁମ ଠିଆ ହୋଇ ରହିଲା ଦେହସାରା ।

ବୋଉ ପୁଣି ହସିଲା—"ଭୂଷା ଏତ୍ତିକ ସତୀ ଟି ! ଗୋବନ୍ଦ ଦାସକୁ କାହିଁକ ଯମ ନେଇଗଲା, ଛଡ଼େଇ ଆଣିଲୁ ନାହିଁ ?"

ଅଡିନାଶୀ ସେମିତ ସାଉଁ ସାଉଁ ହସିଲା—"କ'ଣ କହିବ ତତେ ମ' ଭା ଭଜ ! ତତେ ମିଛ, ମତେ ସତ ! ସେ କ'ଣ କୁଆଡ଼େ ଯାଇଚ କ ? ସେ ପରା ମୋ ଦାହକଯାକ ଏଇଠି ଏଇ ଘରେ ଲୁଚିଛି । ଲାଜକୁରା ମଣିଷଟା ! କେତେବେଳେ ଆଉ ମୁହଁ ଟେକ ମତେ ଚାହିଁ ଦେଇନାହିଁ । ଯେତେବେଳେ ଦେଖିବ ସେଇ ଧୋବସରସର ମୁହଁ ତଳକୁ ପୋତ ଆଡ଼ହେଇ ଯାଉଚ । ମୁଁ ପରା ଶ୍ରଣ ପକେଇଚ, ଏଇଥର ଗୋବନ୍ଦ ଦାସର ଲାଜ ଛଡ଼େଇବ ! ମାଇଗୁଲିଆ ଆସିବ; ମୋ ହାତ ଧରି ଡାକବ, ତେବେଯାଇ ମୁଁ ଯିବ ନା—ଝାଲି ଏମିତ ପଲେଇବ ତା ପଛେପଛେ ?"

"ଆଲେ, ଜଗନ୍ନାଥଙ୍କୁ ଡାକୁନୁ, ତୋ ବେଳ ଆଖର ଯଦ ଜାଣୁଚୁ ? ଏଥିରୁ ଗୁଡ଼େ ଛାଇ ପଛରେ କାହିଁକ ଧାଇଁଚୁ ? କ ଗୋବନ୍ଦ ଦାସ, କଏ କୋଉଠି ନାହାନ୍ତ । ସେ ସବୁ ତତେ ସେମିତ ଦଶୁଛି ! ମନ ଓହରେଇ ଆଣ । ନାମ ଜପ କର । ତୋ ଭାଗ୍ୟ ତୋ ଜ୍ଞାନ ବୁଡ଼ୁନାହିଁ ! ଏମିତ ଜ୍ଞାନରେ ରହି ମରିବୁ ଯଦ, ହେମିତ କାହିଁକ ସ୍ୱପନ ଦେଖୁଚୁ ?"—ନନା ଠଆଶଲା ପରି ଏତକ କହିଦେଇ ଉଠିଗଲେ ଭିତର ପିଣ୍ଡାଆଡ଼େ । ଅଡିନାଶୀ ଏକାଲାସ୍କରେ ତା' ଆଇନାକୁ ଚାହିଁରହିଥାଏ ।

"ଆରେ, ରକ୍ଷିଆ ବା' !' —ମୁଁ ତୋ ଜଗନାଥିଆକୁ ଜାଣି ନାହିଁ ? ସେଇ ପରା ମୋ ଶତ୍ରୁ ! ଦାହକଯାକ ଅହନ୍ତା କରି ମୋ ସାଙ୍ଗେ ଲଗିଚ ! ଯୁଆଡ଼େ ଦେଖିଲେ ଖଡେଇ ହେଲା ପରି ଚଗ୍ରେଇ ଚାହିଁଚ । ସମସ୍ତଙ୍କୁ ଛଡ଼େଇ ନେଇ ମୋ ସଂସାର ଉଚ୍ଛନ୍ନ କରିଚ ପରା ସେଇ ! ବାପ, ଭାଇ, ଭାଉଜ, ଘଇତା, ଗୋରୁଗାଈ, ଘର, ସବୁ ଆଡ଼ କରିଦେଇ ତା' ଉପରେ ମଡ଼େଇ ହେଇ ପଡ଼ୁଚ ଫାଲୁଆମୁହାଁ ! ତାକୁ ମୁଁ ଠେଲିଲଗିଚ । ଅଲକ୍ଷୁ ଝାଡ଼ିଲା ପରି ଝାଡ଼ିଲଗିଚ । ସେ ଲଷିଯାଉଚ ମୋ କାଛରେ ଚହପଟ ଘାଷି । ମୁଁ ତାକୁ ପାରୁନାହିଁ ପରା ! ମୁଁ ତାକୁ ନେହୁରା ହେଇ ହାତ ପତେଇ ମାଗିଲି ଆଡ଼ ହେଇଯିବାକୁ; ମୋତେ ମୋ ସଂସାର ଫେରେଇ ଦେବାକୁ ! ସେ ମୋ ଆଙ୍ଗୁଳାରେ ପଶି ଯେମିତ ମଟମଟ ଅନେଇଲେ ! ମୋତେ ସେ ଛାଡ଼ିବ ନାହିଁ ମୁଁ ଜାଣେ ! ମୋତେ ଉଚ୍ଛନ୍ନ କରିବ, ତେବେଯାଇ ତା ମନ

ମାନବ ! ଏବେ ମତେ କ'ଣ ଉତ୍ତର ମାଗୁଛ ଜାଣିଚୁ ? —ଗୋବିନ୍ଦ ଦାସ ମୋ ହାତ ଧରି ଡାକିଲାବେଳେ ତ ମୋତେ ଅନେଇବ ! ସେତିକିବେଳେ ତା' ଆଖିରେ ଯଦି ମଟକା ନ ପଡ଼େ ? —ଯଦି ତା' ଧୋବ ସରସର ମୁହଁ କଳା ମଚମଚ ହୋଇ ଯୋପିପଡ଼େ ? ! —ମୁଁ କ'ଣ କରିବି କି ? !!"

ନନା ଭିତରୁ ଡାକିଲେ, "ଆରେ ସଜ ହୋଇ ଯାଅ, ଯିବ ପରା ! ସେ ବାଇଧର ଟୋକା ଗଲା କୁଆଡ଼େ ?"

ମୁଁ ବେକୁବ୍ ଭଳି ଆବାକାବା ହୋଇ ଘରେ ପଶିଲି । ଅପିନାମା ମୁହଁକୁ ଚାହିଁ ପାରିଲି-ନାହିଁ । କାହା ମୁହଁକୁ ଚାହିଁ ପାରିଲିନାହିଁ । ଭିତର ପିଣ୍ଡାରେ ସେମିତି ଚୁପ୍ ହୋଇ ଠିଆ-ରହିଲି । ମୋତେ କି ଜଣା ଅପିନାମାର ସେ ଯାତ୍ରା ପାଇଁ କ'ଣ ସଜ କରିବାକୁ ହେବ !!

---

# କାଇ କୁମ୍ଭାରୁଣୀ

କାଇ କୁମ୍ଭାରୁଣୀକୁ ଯେତେବେଳେ ଦେଖିଲେ ମା'ପରି ଦିଶେ । ଖାଲି ଏଇଠି ବୋଲି ନୁହେଁ, ଏ ଚୌଦଖଣ୍ଡ ଗାଁରେ ଯାହାକୁ ପଚାରିଲେ ସେ ସେଇକଥା କହିବ । ଚିକ୍କଣ କଳାମୁଗୁନିରେ ନିର୍ମିତ ପରି ପାଞ୍ଚହାତିଆ ମର୍ଦ୍ଦାନୀ ଚେହେରା । ଗୋଲାଳ ଗୋଲାଳ ଖମ୍ବ ପରି ହାତଗୋଡ଼ । ଏଡ଼େ ବଡ଼ ଅଥାରି ହାଣ୍ଡି ପରି ମୁହଁ । ନାକରେ କାନରେ ଦୁଇହଳ ବାଡ଼ଆ ନୋଳି । ଆଉ କୋଉଠି କିଛି ନାହିଁ । ଅଳଙ୍କାର ମଣ୍ଡିଦେଲେ ନିଖୁଣ ଗ୍ରାମ-ମାପରି ସେ ପ୍ରକାଣ୍ଡ ନାରୀମୂର୍ତ୍ତି କ'ଣ ଦିଶନ୍ତା କେଜାଣି ! ରଙ୍ଗ ଓଢ଼ଣି, କଟିରେ କିଙ୍କିଣି, ହୃଦେ ଗୁମ୍ଫସରିମାଳି, ବାହୁଟି କଙ୍କଣ, ନୂପୁର, ହଳଦିବସନ୍ତ ପାଟରେ ତାକୁ ବୋଧେ ଚିହ୍ନି ହେବନ୍ତାନାହିଁ । ଏମିତି ଖଣ୍ଡିଏ ମଳିଚିଆ କନ୍ଥା ଶାଢ଼ି ତାକୁ ନଅଣ୍ଟିଆ ହୁଏ । ତା'ର ପ୍ରାୟ ଫୁଙ୍ଗୁଳା ହାତ, ଗୋଡ଼, ବେକ, ବୁକୁରେ, ଆଉ ସେ ଝୋପିପଡ଼ୁଥିବା ଜକଜକ ଚିକ୍କଣ କଳା ମୁହଁରେ ନଇଁଆସିଥିବା ମେଘ ପରି ବିଶାଳ ପଣ୍ଡାବତୀ ଗାଈଟିଏ ସଚେତା ଦିଶିଯାଏ । କୌଣସି ପୁରୁଷ ତା' ପାଖରେ କୋଡ଼ପୋଛା ପୁଅ ପରି, ବାଛୁରୀଟିଏ ପରି ଅକୁଳାନ ଏବଂ ଆଚ୍ଛନ୍ନ ଦେଖାଯାଏ । ତାକୁ ଘୋଡ଼େଇଲା ପରି, ଆବୋରିଲା ପରି, ଉଷର ରହେ ସ୍ନିଗ୍ଧ କଳାଘୁମୁର ପାହାଡ଼ଟିଏ । ପୃଥିବୀଯାକର ମଣିଷ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଯାବତୀୟ ପ୍ରାଣୀମାନଙ୍କର ସେଇ ବୋଧହୁଏ ମାତୃରୂପ । କାଇ କୁମ୍ଭାରୁଣୀ ମା' ନହୋଇ ସତେ ଆଉ କ'ଣ ହୋଇପାରେ ?

କିନ୍ତୁ କାଇ କୁମ୍ଭାରୁଣୀ ଜନ୍ମରୁ ଅନ୍ଧୁଣୀ । ତା'ର ଗୋଟିଏ ହେଲେ ସନ୍ତାନ ନାହିଁ । ସେ ଜମା ଫଳନାହିଁ । ଏଡ଼େ ବଡ଼ ବୃକ୍ଷାଳ ଗଛ ଯେ, ତା'ର ସ୍ୱର୍ଗେ ଲଗେ ଡାଳ ତ ମର୍ତ୍ତ୍ୟେ ଲଗେ ଡାଳ—ଅଥଚ କଞ୍ଚିଟିଏ ନାହିଁ କି ଫଳଟିଏ ନାହିଁ । ଗଭୀର ବିସ୍ମୟରେ ଚୌଦଖଣ୍ଡ ଗାଁଲୋକେ ଏଇ କଥା ବାରମ୍ବାର ଆଲୋଚନା କରନ୍ତି; କିନ୍ତୁ ବୁଝିପାରନ୍ତି ନାହିଁ । ତାକୁ ଦେଖିଲେ, ତା'ର କଅଁଳ କଥା ଶୁଣିଲେ ମୋହହେଲାପରି ସମସ୍ତେ ଅନେଇ ରହନ୍ତି, କାନେଇ ରହନ୍ତି ସତ୍ୟଯୁଗର କି ତ୍ରେତାଯୁଗର ସେ ଅପରୂପା ବସୁଲା ନାରୀଟିକୁ—କିନ୍ତୁ ଜମା ବୁଝିପାରନ୍ତି ନାହିଁ କେମିତି ତା ଆଖିଯୋଡ଼କ ଗଢ଼ିବାକୁ ବିଧାତା ପାସୋରିଗଲା । ସେ ପୂରିଲା ପୂରିଲା ଗାଲ, ସେ ଗଢ଼ିଲା ପରି ଓଠ, ସେ ଠିଆଠାଣି ନାକ, ଘିହଘିଉ ଭ୍ରୂଲତା, ଜକଜକ କପାଳ ସାଙ୍ଗକୁ ଯୋଇଲା ପରି ପଦ୍ମପାଖୁଡ଼ା ଆଖି ହେଲେ କ'ଣ ନ ଦିଶିଥାନ୍ତା ସେ ମୁହଁକୁ ! ଅଥଚ ସେଇ ଅଞ୍ଚଳକୁ ଅନେଇଲେ ଏବେ ଡର

ମାଡ଼ୁଛି । ଆଖିଥିବା ଏପରି ସ୍ୱାଭାବିକ ଏବଂ ସାଧାରଣ, କିନ୍ତୁ ନଥିବା ଏତେ ଭୟଙ୍କର !
—ସତେଯେମିତି ସମୁଦ୍ର ଶୁଖିଯାଇଛି—ଆକାଶରୁ ସବୁ ତାରା ଲିଭିଯାଇଛନ୍ତି । ଇସ୍, ଜାଇ କୁମ୍ଭାରୁଣୀ ଅନ୍ଧୁଣୀ ହେବାର କୌଣସି ଯୁକ୍ତି ନାହିଁ; ଅଥଚ କୌଣସି ଅପରମେୟ କାରଣରୁ ସେ ସେମିତି ଅନ୍ଧୁଣୀଟିଏ । —ବଡ଼ଲୋକେ କହିବାର ଶୁଣାଯାଏ ଯେ କୁଆଡ଼େ ସେ ଆଖି ପାଇବା ଯେପରି ଅସମ୍ଭବ, ଫଳ ଫଳିବା ମଧ୍ୟ ସେମିତି ଅସମ୍ଭବ । କାରଣ ବିଧାତାର ଇଚ୍ଛା ତା' ନୁହେଁ ! କାହିଁକି ନୁହେଁ ?—କେଜାଣି ! ତଥାପି ଜାଇ କୁମ୍ଭାରୁଣୀକୁ ଦେଖିବାକୁ ଭଲଲାଗେ । ତାକୁ ଦେଖିଲେ ଭିତର କେମିତି ତରଳିଯାଏ । ସବୁ ପୌରୁଷ ପ୍ରବୃଦ୍ଧ ଚକିତ ହୋଇ ହଲେ ଆଖିରେ ଆସି ଠୁଳ ହୋଇଯାଏ ତାକୁ କେବଳ ଅନେଇବାକୁ । କୂଳ ଛୁଉଁଥିବା ଭରା-ନଈ ପରି, ଅନାସ୍ୱାସରେ ପଲ୍‌ସିଯାଉଥିବା ସୁଲକ୍ଷଣା ମାଟିର୍ଙ୍ଗା ପରି ଜାଇ କୁମ୍ଭାରୁଣୀ । ତାକୁ ଚାହିଁ ରହିବା ହିଁ ଯଥେଷ୍ଟ—ଚାହିଁ ପାରିବା ହିଁ ପୌରୁଷ ।

ସେଦିନ ସଞ୍ଜବେଳେ ଆମେ ସବୁ ପୋଖରୀକୂଳରେ ପବନ ଖାଉଥାଉ । ଶଙ୍କର ମଉସା ଆମ ଭିତରେ ଖରା ପାକଲ ମସ୍ତର ମଣିଷ । ଆମେ ଯେଉଁ କେତେଜଣ ଟାଠଣାଠ ଛିଡ଼ି ଦିଲ୍ଲୀ କଲିକତା ବୁଲିଆସିଥାଉ, ଯୋମଣା ଝେକ ତଳେଇ ଚାହୁଁଥାଉ ପୃଥିବୀକୁ, ଆମେ ମଧ୍ୟ ଶଙ୍କର ମଉସାଙ୍କ ଆଗରେ ଲଇଁ ଯାଉ । ସେ ଖୁବ୍ ଗମ୍ଭୀର ଅଥଚ ଅଦ୍ଭୁତ ଭାବରେ ସ୍ନେହୀ ଏବଂ କୃପାଳୁ ମଣିଷ । ଗଭୀର ଅନୁଭବରେ ସେ ଅନେକ କଥା ମିଞ୍ଚେଇଛନ୍ତି, ସଂସାରକୁ ଦେଖିଛନ୍ତି, ବୁଝିଛନ୍ତି । ବାରବର୍ଷ ହିମାଳୟରେ ଏକୁଟିଆ ବୁଲିଛନ୍ତି । ଏବେ ମଧ୍ୟ ମନ ହେଲେ ଗାମୁଛା ଖଣ୍ଡେ କାନ୍ଧରୁ ଖସେଇ ଦେଇ ସେ ଏଇଠୁ ହଠାତ୍ ଉଠି ଚାଲିଯିବେ —ଏ ପ୍ରତ୍ୟୟ ପ୍ରାୟ ସମସ୍ତଙ୍କର ଅଛି । ତେଣୁ ଗାଁରେ ତାଙ୍କର ଖରା ମର୍ଯ୍ୟାଦା ।

ପଥର ପାହାଚ ଉପରେ ଗୋଡ଼ ଲମ୍ବେଇ ସେ ବସିଥାନ୍ତି । ଚାହିଁଲେ ପାଦକୁ ପାଣି ଛୁଉଁଛି, ନ ଚାହିଁଲେ ନାହିଁ । ଆମେ ସବୁ ଯେ ଯାହାମନ୍ତେ ବସିଥାଉ ଏବଂ ଗପୁଥାଉ । ଜାଇ କୁମ୍ଭାରୁଣୀ ଉପରେ କଥା ପଡ଼ିଥାଏ । ସମସ୍ତଙ୍କ କଥା ଶଙ୍କର ମଉସା ମନ ଦେଇ ଶୁଣୁଥାନ୍ତି; କିନ୍ତୁ କିଛି କହୁନଥାନ୍ତି । ମଝିରେ ମଝିରେ ଅନ୍ୟମନସ୍କ ହେଲାପରି ଉପରକୁ କିଛି ସମୟ ଚାହୁଁଥାନ୍ତି ।

ଆମ ଭିତରୁ ଜଣେ କହିଲା, "ଏ ବିଷୟରେ ମଉସାଙ୍କ ମତ କ'ଣ ?"

ସମସ୍ତେ ନୀରବରେ ଅପେକ୍ଷା କଲୁ । ପବନରେ ଛୋଟ ଛୋଟ ଢେଉଗୁଡ଼ାଏ ଉଠି ଆସି ପଥର ପାହାଚରେ କଳରବ କଲେ । ସନ୍ଧ୍ୟା ଘନୀଭୂତ ହେଲା । ବେଳେବେଳେ ଆମକୁ ଏମିତି ଅନେକ ସମୟ ଅପେକ୍ଷା କରିବାକୁ ହୋଇଥାଏ । ଶଙ୍କର ମଉସା ମନ ନହେଲେ କିଛି କହନ୍ତି ନାହିଁ ।

ଆଉ ଜଣେ ସେ ସମଗ୍ର ଜନସଟ୍ଟାକୁ ସହଜ କରିବାପାଇଁ କହିଲା—"ଶଙ୍କର ମଉସା ତ ଅନେକ ଦିନରୁ ଜାଇ କୁମ୍ଭାରୁଣୀକୁ ଜାଣିଥିବେ—ନା କ'ଣ ମଉସା ?"

"ହଁ, ଜାଣେ !"

ସାବଲୁ ବୋଧହୁଏ ଏଥର କଥା ଝରିଆସିବ; କିନ୍ତୁ ପୁଣି କେବଳ ସେଇ ଢେଉଗୁଡ଼ିକୁ ନୀରବ ରହି ଗଣିବାକୁ ଲାଗିଲୁ । ଏକଜିଦିଆ ଟୋକା ପୁଣି ଉଖାର ଦେଲା, "କ'ଣ ଜାଣିଚନ୍ତି ସରି ମଉସା ! ଆମକୁ କହୁନାହାନ୍ତି !"

"ନା !"

ଆମେ ଜାଣିଲୁ ଯେ କଥାଟା ସେଇଠି ଛିଣ୍ଡିଗଲା । ଶଙ୍କର ମଉସା ନାହିଁ କଲା ଉତ୍ତରରୁ ତାଙ୍କୁ କଥା କୁହାଇଦେବ, ଏମନ୍ତ ପାରିବାର କେହି ନାହିଁ । ଭାବିଥିଲୁ ସେଦିନ ଗୋଟାଏ ମୌକାରେ ସେ ଅଦ୍ଭୁତ ନାରୀଚରିତ୍ର ଉପରେ ମଉସା ଅତିରିକ୍ତ ଅଦ୍ଭୁତ କଥାମାନ କହିବେ । କାହିଁକି କେଜାଣି ସେ ପଦକରେ ସବୁ ଛାଣ୍ଡିଦେଲେ । ସେ ନିର୍ବିକାର, ସ୍ଥିର ହୋଇ ବସିଥାନ୍ତି । ଆମେ ସବୁ ଖୁସ୍‌ମୁସ୍ ହୋଇ ଗୋଟିଏ ଗୋଟିଏ ଉଠିଲୁ । କେହି କେହି ଅନ୍ୟ କଥା ପକେଇ ଗୁଜୁରୁଗାଜୁରୁ ହୋଇ ଟହଲିବା ପାଇଁ ବାହାରିଗଲେ । ଅ ଉଦିନେ ମଉସାଙ୍କ ମନ ହେଲେ ହୁଏତ କ'ଣ କହିବେ—ବା' ନ କହିବେ ! ଏଭଳି ହାଲୁକା ଢଙ୍ଗରେ କଥାଟାକୁ ପାଗଳ ପବନରେ ପହରେଇ ଦେଇ ସମସ୍ତେ ମାଛଅନ୍ଧାର ଭିତରକୁ ସ୍ରାଧର ଓହ୍ଲେଇଗଲେ । ମୁଁ କେବଳ ଉପର ପାହାଚରେ ଏକୁଟିଆ ବସିରହିଲି । ଲିଭିଆସୁଥିବା ପୂର୍ବ ଦିଗନ୍ତରେ ଅର୍ଦ୍ଧ-ଆକାଶ ଯାଏଁ ଜାଇ କୁମ୍ଭାରୁଣୀ ଉଭାହୋଇ ରହିଲା ପରି ଦେଖାଗଲା । ଏତେ ବିପୁଳ ନାରୀତ୍ୱ; ଏତେ ଅପରନ୍ତ କୂଳ ଶର୍ଙ୍କି ଉଚ୍ଛୁଳି ପଡୁଥିବା ବାତ୍ସଲ୍ୟ !—ଅଥଚ ସେ ଅନ୍ଧୁଣୀଟିଏ—ଅପୂର୍ଣ୍ଣୀଟିଏ ! ସେ କେବଳ ମାଟିକୁ ମୁଠା ମୁଠା ଚକଟିବ, ତାକୁ ସାଉଁଳିବ, ଚକଣେଇବ, ଖରା ଖୁଆଇବ, ପବନ ପିଆଇବ, ନିଆଁରେ ପୋଡ଼ି ଉଷୁମ କରିବ !—ଘଡ଼ିଟିଏ ଉତାରିଲା ପରି ସେ ମଣିଷଟିଏ ଉତାରିପାରିଥାନ୍ତା !—ମୋର ଅଜାଣତରେ ଲମ୍ବା ନିଃଶ୍ୱାସଟିଏ ବାହାରିଗଲା । ମୋ ଅଜାଣତରେ କେତେବେଳେ ତଳ ପାହାଚରୁ ଉଠିଆସି ଶଙ୍କର ମଉସା ମୋ ପାଖରେ ବସିଯାଇଥିଲେ ।

"ସମସ୍ତଙ୍କ ଆଗରେ ସବୁକଥା କୁହାଯାଏ ନାହିଁ ।"

ଏତିକରେ ମୁଁ କୃତକୃତ୍ୟ ବୋଧକଲି । ମଉସାଙ୍କ ନିର୍ବାଚିତ ଶ୍ରୋତା ହେବା କିଛି କମ୍ ଯୋଗ୍ୟତା ନୁହେଁ । ମୋ ଭଳି ସେ ଅନ୍ଧାରିଆ ପୂର୍ବ ଦିଗନ୍ତକୁ ସ୍ଥିରଦୃଷ୍ଟିରେ ଚାହିଁରହିଲେ । ତାଙ୍କୁ କ'ଣ ଦିଶିଲା କେଜାଣି—ସେ ତାଙ୍କ ଢଙ୍ଗରେ, ଖୁବ୍ ଧୀରେ ଅଥଚ ପ୍ରାଞ୍ଜଳ ଭାବରେ ମନକୁ ମନ କଥା ହେଲା ପରି କହିଲେ—

"ଜାଇର ରୂପ ତ ଅଲୌକିକ; ହେଲେ ସେଇଟା ତା'ର ପରିଚୟ ନୁହେଁ । ସେ କୁଆଡ଼େ ଅପହଞ୍ଚ ପାହାଡ଼ ମୂଳକରୁ ଆସିଛି । କିଏ କହିବ ଯେ ରାଜକନ୍ୟା ନୁହେଁ ବୋଲି ! ତା'ର

ଢଙ୍ଗଢାଙ୍ଗ, ଖୁଲ୍‌ଚଲଣ, ତା' ଠାଣି, ତା ଗଉରବ କହିଦେଉଛି ସେ ଅଭିଜାତ-ସମ୍ଭବା । ମୁଁ ଅନେକଙ୍କୁ ପଚାରିଛି—କେହି କହିପାରନାହାନ୍ତି । ମୋର ମନେହେଲା ଯେ,ଛଦ୍ମବେଶରେ ସେ ଏମିତ ଏଠି ଭ୍ରମୁଛି । ମୁଣ୍ଡିଆ ତଳେ କୁଡ଼ିଆ କରି ରହିଛି । କେହି ସେଠିକି ଯାଇ-ନାହାନ୍ତି । ସମସ୍ତେ ଖାଲି ଜାଣିଛନ୍ତି ଯେ ସେ ନିକାଞ୍ଚନ ଥାନରେ କୁମ୍ଭାରୁଣୀ ଘଟିକଳସୀ ନିର୍ମାଣୁଛି । ଦୋକାନିଆ ପାଖରେ ଆଣି କୁଢ଼େଇଦେଲେ ଯେ ଯାହାର ସବୁ ବାଣ୍ଟି-ନେଉଛନ୍ତି । ମାଇକିନିଆମାନେ ତାକୁ ଅସୁରୁଣୀ ଡାହାଣୀ ପୁତଖାଇ କହି ଡରଲେଣି । ପିଲାଙ୍କୁ ଡରେଇଦେଲେଣି । କଞ୍ଚା ମାଉଁସ ଖାଇ ଖାଇ ସେ ହେମିତ ପର୍ବତ ପରି ହେଇଚ ବୋଲି ମଧ୍ୟ ଅପବାଦ କଲେଣି; କିନ୍ତୁ ତାକୁ ଦେଖିଲେ ବୁଝିବା ଲୋକ ବୁଝିଯିବ ଯେ ଏସବୁ ମିଛ ।"

ମୁଁ ତାକୁ ଦେଖୁ ଦେଖୁ ଭାବୁଥିଲି ଯେ ମା' ହେବ ତ ଏମିତ ହେବ । କେଡ଼େ ଚକ୍‌କ୍‌, କେଡ଼େ ନରମ, କେଡ଼େ ବତ୍ସଳାସ୍ତନ ମା'ଟିଏ । ଆଃ, ମୋ ଭିତରେ କେମିତ ଗୋଟାଏ ପୁଲକ ଜାତହେଲା । ମୁଁ ଦେଖିଲି ଯେ ମୋ ଆଡ଼କୁ ମୁହଁ ବୁଲେଇ ଜାଇ କୁମ୍ଭାରୁଣୀ ଅଳ୍ପ ହସିଦେଲା ! ସେ ମୋ ମନକଥା ଜାଣିଲା କେମିତ ?—ମୁଁ ତା' ରୂପକୁ, ତା' ମୁହଁକୁ, ତା' ମୁଣ୍ଡ ଉପରେ କୁଣ୍ଡିକାଳିର ପର୍ବତ ପରି ବୋଝକୁ ଚାହିଁରହିଥାଏ । ସେ କେତେବେଳେ ସେଇଠୁ ପଳେଇଗଲା ଜାଣିପାରିଲି ନାହିଁ । ମୋର ମନେହେଲା, ମୁଁ ସେତକରେ କଣି-ହୋଇଗଲି ।"

"ଇଏ କେବକା କଥା ମଉସା ?"

"କରେ, ବୁଢ଼ିଆ ଟୋକା ହୋଇ ଏମିତ କ'ଣ ପଚାରୁଛୁ ? କୋଉ କାଳର ହେଲେ ମଧ୍ୟ କଥା ତ ସେଇଆ ! ମନେକର, କାଲିକାର । ଏଣିକି ଅସଲ କଥା ଆସୁଚ, ମଝିରେ ଏମିତ ଭଣ୍ଡୁର କରିବୁନାହିଁ ···"

ଶାପିତ ଶିଶୁଟିଏ ପରି ମୁଁ ହତବୁଦ୍ଧି ହୋଇଗଲି । ଅନେଇଲି ମଉସାଙ୍କ ମୁହଁକୁ । ସେ ମୋ ଆଡ଼େ ଚାହୁଁ ନଥାନ୍ତି । ସେ ସେଇ ପୂର୍ବଦିଗଟାକୁ ଚାହିଁ ରହିଥାନ୍ତି । ସେ ସାରା ଅଞ୍ଚଳ ସେତେବେଳକୁ କଟିକଟି ଅନ୍ଧାର । ଆକାଶରେ ଅସଂଖ୍ୟ ତାରା । ପବନ ପଡ଼ିଥାଏ ଦକ୍ଷିଣା ।

···"ମୁଁ ସ୍ଥିରକଲି, ଜାଇ ପଛେ ପଛେ ତା ମୁଣ୍ଡିଆତଳ କୁଡ଼ିଆଯାଏଁ ଯିବି—ସେଇଠି ତା' କୁମ୍ଭାରୁଣୀପଣ ଦେଖି ଆସିବି । ମନକୁ ପାପ ଛୁଉଁଥାଏ । ଡର ମାଡ଼ୁଥାଏ । ସେତକ-ବେଳେ ଖାଲି ତା'ର ସେ ହସଟିକୁ ମନେପକେଇ ଦେଇ ପୁଣି ସ୍ଥିର ହୋଇଯାଉଥାଏ ।—ଶେଷକୁ ତା' ଅଜାଣତରେ ତା' ପିଛା କରିବାକୁ ସ୍ଥିର କଲି । ମୋର କିନ୍ତୁ କେମିତ ମନେହେଲା ଯେ ସେ ସବୁ ଜାଣିପାରୁଚ । ମୁଁ ଏମିତ ଯିବି ବୋଲି ମଧ୍ୟ ସେ ଜାଣି-ଯାଇଛି ।"

"ମୁଁ ଖଣ୍ଡେଦୂର ପଛରେ ରହି ଗ୍ଭଲିଥାଏ । ଉଦୁଉଦିଆ ଦ'ପହର ସମୟ । ହଲ-ଲେଉଟାଣି ତୋରାଣିପିଆ ବେଳ । ଜାଇ ତା'ର କୁଣ୍ଡି, କାଖ ବେତା ମୁଣ୍ଡେଇ ଡାଳଗଛ ପରି ଦିଶୁଥାଏ । ତା' ଢଙ୍ଗରେ ସେ ଅତି ଧୀରେ ପଳସି ଯାଉଥାଏ । ତା'ର ଖୋଜକୁ ମୋର ଗ୍ଭର ପାହୁଣ୍ଡ ନଅଣ୍ଟ ଜଣାପଡ଼ୁଥାଏ । ମନେ ହେଉଥାଏ ସେ ଅତି ବେଗରେ ମୋ'ଠାରୁ ଦୂରେଇଯାଉଛି ।...ଝାଗ୍ରେ ଗଛପତ୍ର ଝଲମଲ ଦିଶୁଥାଏ । ବାଲି ଉପରେ ଦୂରରେ ପାଣି ଛଳଛଳ ଦିଶି ଲିଭିଯାଉଥାଏ । ମୁଁ ଦେଖିଲି ସେ ଜାଇ ଥମିଗଲା । ମୁହଁ ପଛକୁ ବୁଲେଇ କାନ ଡେରିଲା । ପାଏ ବାଟରୁ କାଳେ ମୋ ନିଃଶ୍ୱାସ ବାରିବାକୁ ସେ ଚେଷ୍ଟାକଲା । ସେଇଠୁ ପୁଣି ଆଗଭଳି ଗ୍ଭଲିଲା । ସତ କି ଭ୍ରମ ମୁଁ କହିପାରିବି ନାହିଁ; ମୋତେ ଲାଗିଲା ଯେ ତା' ପାଦ ଆଉ ଭୂଇଁରେ ପଡ଼ୁନଥିଲା । କେମିତି ସେ ତାତିଲା ବାଲି ଉପରେ ପାରିହୋଇ ଯାଉଥିଲା ? ମୁଁ ପାରୁପର୍ଯ୍ୟନ୍ତ ଗୋଡ଼େଇଥାଏ ଅନେକ ପଛରେ, ମୋର ଝାଳ ଫିଟିଯାଉଥାଏ । ଜିଭ ଭିଡ଼ିନେଉଥାଏ ଶୋଷରେ ।"

"ସେଇଠି ପହଞ୍ଚିଲାବେଳକୁ ମୁଣ୍ଡିଆର ବାଙ୍କୁଗ୍ଭ ଗ୍ଭଇଟିଏ କୁଡ଼ିଆକୁ ଘୋଡ଼େଇ ସାରିଥାଏ । କୁଡ଼ିଆକୁ ଘେରି ବିଶାଳ ବିଶାଳ ଗଛ । ମୁଁ ଗୋଟିଏ ଗଛ ଆଢୁଆଳରେ ଛପିଗଲି । ଅନେଇଲି ଆଗକୁ ।"

"ଜାଲି ବୋଝଟାକୁ ଥୋଇଦେଲା । ଭିତରୁ ହାଣ୍ଡିଟିଏ ଟେକିଆଣି ସେଥିରେ ମୁହଁ ଲଗେଇଦେଲା । ସେଇଟା ପାଣି କି ତୋରାଣି ମୁଁ ଜାଣିପାରିଲିନାହିଁ ! ଓଃ, କି ଶୋଷ ତାକୁ ! ପିଇସାରି ସେ ସ୍ଥିର ଭଙ୍ଗୀରେ ଆଗକୁ ମୁହଁ ଟେକି ରହିଲା । ମୁଁ ତାକୁ ଅନେଇ ରହିଲି । କି ବିଶାଳ ନାରୀରୂପ ସେ; କିନ୍ତୁ କି ସୁନ୍ଦର ଚକ୍‌ଚକେ କଳାଭଅଁର ମୂର୍ତ୍ତି । ମୋର ମନେହେଲା ସାଧାରଣ ଅଣ୍ଡିରାଟାଏ ପଡ଼ିଗଲେ ତାକୁ ସେ ବାହୁରେ ପୁରେଇ ପେଷିଦେଇପାରେ । ଗ୍ଭହିଁଲେ ବାଘଟାକୁ ମାଡ଼ିବସି ମାରିଦେଇପାରେ । କି ଅଦ୍ଭୁତ ଶକ୍ତି ତା'ର ସେ ବାହୁରେ, ବୁକୁରେ ଏବଂ ସେ ବର୍ତ୍ତୁଳ ଜଙ୍ଘମାନଙ୍କରେ ! ମୋ ବାବାରେ ! ମୋ ନିଃଶ୍ୱାସ ରୋଧିଲା ପରି ମୁଁ ନିଶ୍ଚଳ ଠିଆହୋଇଥାଏ । ମୋ ବୁକୁ ବାଡ଼େଇ ହେଉଥାଏ । ଜାଇ ଆଣ୍ଠୁରେ ହାତ ଭରାଦେଇ ଉଠିକି ଠିଆହେଲା । କୁଡ଼ିଆ ଭିତରକୁ ନଇଁଲା ପରି ପଶିଗଲା ।"

"ମୁଁ ଆଉ ସେ ଯାଏଁ ଯିବାକୁ ସାହସ କଲିନାହିଁ । ଭଲ କଲି । ନ ହେଲେ ଅଜାଡ଼ରେ ପ୍ରାଣ ହରାଇଯାଇଥାନ୍ତା । ଶୁଣ, କହୁଛି କ'ଣ ହେଲା ।"

ଶଙ୍କରୁ ମଡ଼ୁସା ଆତୁର ବିବଡ଼ଗ୍ଭବରେ, ଅନୁଭବଲା ପରି କହିଲେ —"ମୁଁ ଅନେଇଥାଏ ସେ ଅଗାଟାକୁ । ଗଡ଼ାହୋଇ ଶୁଖୁଥିବା ଅସଂଖ୍ୟ ଛୋଟ ବଡ଼ ହାଣ୍ଡି । ତା' ପାଖକୁ ଥାକମାରି ରଖିଥିବା ମଶିପେ ଢିଅରେ ଚେକା ଚେକା କଞ୍ଚା ମାଟି । ଅଳ୍ପ ଖାଲ ଭିତରେ ରେଳଇଞ୍ଜିନ ଚକପରି ସେ ପ୍ରକାଣ୍ଡ କୁମ୍ଭାରଚକ । ଏଡ଼େ ବଡ଼ ଯନ୍ତ୍ର କୋଉଠି ଅଛି କିଏ

ବୁଲେଇପାରେ ବୋଲି ମୋର ବିଶ୍ୱାସ ନାହିଁ । କେବଳ ସେଇ କର୍ତ୍ତମା ତା'ର ସେ ଅଗା ଭୁଜଦଣ୍ଡରେ ତାକୁ ବୁଲେଇପାରେ । ସେ ପାହାଡ଼, ସେ ସବୁ ବୃକ୍ଷାଳି ଗଛ, ଗଦା ଗଦା ହାଣ୍ଡି ମାଠିଆ ସବୁ ଯେମିତ ମୋତେ ଅକୁଳାନ ବୋଧ ହେଲେ ! ମୋ ମାପ, ମୋ ଆସ୍ବଭର ସେ କେହି ନୁହନ୍ତି । ମୁଁ ଭୂଇଁକୁ ଲଗି ଠିଆହୋଇଥିବା ପାଉ ବାମନଟିଏ ।''

ଶଙ୍କର ମଉସା ସତକୁ ସତ କନ୍ଥ ଯେମିତ ନୁହନ୍ତି । ଖୁବ୍ ଗୁଡ଼ାଏ ଉଚ୍ଚ ନହେଲେ ସୁଦ୍ଧା ପିଟଣାପରି ନଦା ଚଉରସ ମଣିଷ । ସେ ତାଙ୍କ ଅନୁଭବରେ ସେତେବେଳେ ବୋଧହୁଏ ସାଙ୍କୁଡ଼ି ଯାଇଛନ୍ତି । ନହେଲେ ସନ୍ଧ୍ୟା ଅନ୍ଧାରରେ କାହିଁକି ମୋତେ ମଧ୍ୟ ସେଇଭଳି ଲେଗ୍ସ ଦେଖାଯାଇଥାନ୍ତେ ?

"କ୍ରୁଝିଲୁ ପୁଅ''—ମଉସାଙ୍କ ସ୍ୱର ଆତୁର ବାହାଶଆ—''ଏତକବେଳେ କାଇ ସେ କୁଡ଼ିଆ ଭିତରୁ ନଇଁ ନଇଁ ବାହାରିଆସିଲି । ବୁକୁପାଖରେ କ'ଣଟାଏ ଜାକଧରିଥାଏ । ଅତି ଯତ୍ନରେ ଥନ ଉପରେ ମଡ଼େଇ ରଖିଥାଏ । ପିଣ୍ଡାରେ ଆଣି କାନ୍ଥ ଆଉଜା ଦେଇ ଯେତେବେଳେ ସେ ତାକୁ ଥୋଇଲା, ମୁଁ ଚମକି ପଡ଼ିଲି । ମୋତେ ଦଶିଲା ଦାଉଦାଉ ଝଟକଲା ପରି ଦୁଇଟା ଆଖି । ପୁରୁଷ ମୁହଁଟିଏ । ଅତି ସୁନ୍ଦର ଗଢ଼ିଲାପରି ମୁହଁ । ବୁକୁଟା ଓସାର; ଝଟଝଟ ଗୋରା । ମୁହଁ ସେଇ ବୁକୁ ଉପରେ ଆସି ଥୋଇ ହୋଇଥାଏ । କନ୍ଥ ଆଉ କିଛି ନାହିଁ । ହାତ ଗୋଡ଼ ସରୁ ସରୁ ବଳାତାପରି ଶୁଖିଲା ମୁରୁକୁଟିଆ ଡାଳ ପରି ଓହଳି ପଡ଼ିଥାଏ । ନାକୁ ଖାଲି ହାତଗୋଡ଼ର ଚିହ୍ନମାନ । ନପଟ ଅଥବ ପଙ୍ଗୁଟିଏ ! ତା' ଆଖି ଯୋଡ଼ାକରେ ସେ ଜଳୁଥାଏ । ଜ୍ୱାଳାରେ ସେ ବ୍ରହ୍ମାଣ୍ଡ କଳାଦେଉଥାଏ । ବଳୁଲି ପରି ତା' ଡୋଳା ବୁଲିଆସୁଥାଏ ଦଣଦଗ । ଗଛ ପଛଆଡ଼େ କାଠହଣା ଚଢ଼େଇ ପରି ଅଣ୍ଟା କାଢ଼ି ମୁଁ ଠିଆହୋଇଥିବାବେଳେ ସେ ମୋତେ ଦେଖିଦେଇଥିବ ନିଶ୍ଚେ । ମୁଁ କନ୍ଥ ଆଡୁଆଲକୁ ଘୁଞ୍ଚିଗଲି ନିମେଷକରେ । ମୋତେ ଦେଖିଲା ସେ । ଶିମୁଳି ଗଛର ବାରହାତ ଗଣ୍ଡି ଭେଦ ତା ଦୃଷ୍ଟି ମୋ ଦେହରେ ବାଜୁଛି । ମୋ ପିଠି ଉଷୁମ ଲାଗୁଛି । ଝାଳେଇ ଯାଉଛି । ଗୋଟିଏ କେଉଁଠି ଅତର୍କିତ ହାବୁଡ଼ିଗଲାପରି ମୋତେ ଡର ଡର ମାଡ଼ୁଥାଏ । କାହିଁକି କେଜାଣି ମୁଁ ଜାଇକୁ ଏକୁଟିଆ ବୋଲି ଭାବୁଥିଲି । ଆଉ ମଧ୍ୟ କେହି ଏ ଯାଏଁ ଜାଣିନାହାନ୍ତି ଯେ ତା' ସାଙ୍ଗରେ ସେଇଠି ଆଉ ଜଣେ ଅଛି ବୋଲି । ସେ ପୁରୁଷଟା କ'ଣ ତା ଗେରସ୍ତ ? ଏତେ ବଡ଼ ମାଇପିଟିକୁ ସେପରି ପଙ୍ଗୁ ପୁରୁଷଟିଏ ?—କି ଭାଗ୍ୟ ହୋ ! ମୋ ମନ କାହିଁକି କେଜାଣି କୋରହୋଇଗଲା । ବିଗ୍ୱର ଜାଇ ପାଇଁ କେମିତ ଗୋଟାଏ କୋହ ଉଠିଲା ଭିତରୁ । କ'ଣ କରାଯାଏ ?—ବିଧାତା ବିଗ୍ୱରକୁ ମଣିଷ କ'ଣ ଆନ କରିପାରେ ।

"ମୁଁ ଟିକିଏ ଚଲା ବୃହିଁଦେଲି । ଜାଇ ତା' ଶ୍ରେଷ୍ଠ କସ୍ତାଟିକୁ ଦେହ ନ୍ଦୁକୁରୁ ଟେସେଇ-ଅଣି ଅଣ୍ଟାରେ ଚହରପ କରି ଗୁଡ଼ାଇଥାଏ । ତା'ର ଦୁଇହାତ ଓସାର ବୁକୁ ଉପରେ ଚକ

ପୋଡ଼ ଖାଇଥିବା ଦୁଇଟି କ୍ଷୀରପିଆ ହାଣ୍ଡି ଉବୁଡ଼େଇ ହେଲା ପରି ତା ଅନଙ୍ଗର । ଜଙ୍ଘରୁ ଅଧେ ପୋଡ଼େଇ ହୋଇଥାଏ; ବାକି ଅଧକ ଫୁଙ୍ଗୁଲା । ଫୁଙ୍ଗୁଲା ଡେଣା, ଫୁଙ୍ଗୁଲା ଗୋଡ଼ପେଣ୍ଡା । ମୁଁ ଖାଲି ଭାବୁଥାଏ ଯଦି ଏତେ ରୂପ ଅନୁପାତରେ ସେ ଖାଲି ଆକାରରେ ଅଧେ ହୋଇଥାନ୍ତା !—କମ୍ପା ତା'ଠୁ ଆଉ ମୁଠୁକିଏ ଉଣ୍ଡ ଗୋରା ଚକଚକ ଅର୍ଘା ପୁରୁଷଟିଏ ତାକୁ ଆବୋରିଲା ପରି ଠିଆ ହୋଇଥାନ୍ତା ···

"ଏମିତି ଭାବୁଥାଏ । କଥା ଶୁଭିଲା, 'ଶୁଣି ପୁଅ ପାଇଁ ପିମ୍ପା ଗଢ଼ିବୁ ପରା ! ଏକାଥରକେ ଗଢ଼ି ଥୋଇଦେ । ତା' ଉପ୍ରୁ ପଖାଳ ଖାଇବା । ଆଜି ତ ସହଳ ହେଉଛି !'

ସ୍ୱରରୁ ଜଣାଯାଉଥାଏ ଯେ ସେ ହିଁ ଜାଇର ମାଲିକ; ତା ଉପରେ ଘାଉଁତି କରୁଥିବା ଖାଉନ୍ଦ । ଜାଇ ପୁଣି ଏ ଅଚଳ ଗରଣ୍ଡାଟା ପାଖରେ ଏମିତି ଦାସୀ ପରି ଖଟୁଛି ? କାହିଁକି ? କେଉଁ ଗୌରବ ଭଲ ସେ ତା'ଠାରୁ ପାଉଛି ? ଏ ବିଫଳ ଘଇତାପଣକୁ ନେଇ କ'ଣ ତା'ଭଳି ନାରୀ ସନ୍ତୁଷ୍ଟ ରହିପାରେ ? ମୋର ମନହେଲା ପାଟି ଫିଟେଇ କହିଦେବାକୁ ଯେ କେତେବେଳୁ ଗୁଡ଼ି ଲେଉଟିଗଲାଣି । ଜାଇ ଚୌଦଖଣ୍ଡ ଗାଁରେ କୁଣ୍ଡି, କାହିଁ ବିକି ବିକି ହାଲିଆ ହୋଇ ଫେରିଛି । ବାଟରେ ତହତହ ଖରା; ତହତହ ବାଲି । ଶୋଷରେ ତା' ଜିଭ ଭିଡ଼ିନେବାରୁ ସେ ହାଣ୍ଡିଏ ପାଣି ଏକାନିଃଶ୍ୱାସକେ ପିଇପକେଇଲା, ମୁଁ ଦେଖିଛି । ବିଚାରି କଣ ପଖାଳପାଣି ମୁନ୍ଦାଏ ପିଇ ଟିକିଏ ବିଶ୍ରାମ କରନ୍ତାନାହିଁ ? ଗୁ'ଟା ଗୋଟାଏ ଅଣପୁରୁଷିଆ ପଙ୍ଗୁ—ରୁ କ'ଣ ଜାଣୁ ପରିଶ୍ରମ କଲେ କେମିତି ଲାଗେ ? କିନ୍ତୁ ଜାଇ ଖିଲ୍ ଖିଲ୍ ହସିଲା । କହିଲା, 'ଶୁଣି ପୁଅ କ'ଣ ଜାଣେ ? ଏବେ ତ ସମସ୍ତେ ଖାଲି ମାଗୁଛନ୍ତି ପିମ୍ପା ଦିଅ, ପିମ୍ପା ଦିଅ । ପିମ୍ପା ଗଢ଼ିଦେଲେ ସେଥିରେ ସେମାନେ ମଦ ଭର୍ତ୍ତିକରିବେ । ସମସ୍ତେ ପିଇବେ । ଗୀତ ବୋଲିବେ, ନାଚିବେ ।' ଏତକ କହିଦେଇ, ପୁଅ, ସେ ତ ତାଳି ମାରି ନାଚିଲା ପିଲାଙ୍କପରି । ହସି ହସି ଲେଟିଯାଉଥାଏ । ଦୁମ୍‌ଦୁମ୍ ଡେଇଁଥାଏ । ଭୁଇଁ ଦୁଲୁକୁଥାଏ । ଶିମୁଳିଗଛର ଚେର, ତା ମର୍ମ ଫଡ଼କୁଥାଏ । ଜାଇର ଜାନୁ, ଜଙ୍ଘ, ଅନ କମ୍ପୁଥାଏ ଥରଥର ହୋଇ । ମୋତେ ପୁଅ, ବାହାରପାଣି ଦେଖେଇଲା ଁ। ମୋ ଦେହ ଥରିଲା ଗୋଟାପଣେ । କି ସେ ଦୃଶ୍ୟ ! ପିଣ୍ଡା ଉପରୁ ସେ ଆଖିହଲକ ସବୁ ଦେଖୁଥାଏ, ଅଳ୍ପ ହସୁଥାଏ କ୍ଷଣକରେ ! କହିଲା, 'ହେଲା, ହେଲା । ଏମିତି କାହିଁକି ଗୁଡ଼ାଏ ଉଭୁଚୁ ? ଯା' ଚକ ପାଖକୁ ।

"ଜାଇ ବୋଲ ମାନି ଲାଜେଇଲା ପରି ଚକ ପାଖରେ ପହଞ୍ଚିଲା । ତା' ପାଦ ଥାପିଲାବେଳେ ସେ ବାରିଦେଉଥିଲା ତା' ଭୂମିକୁ ! ପାଦରେ ସେ ଦେଖୁଥିଲା ଉଚ୍ଚ ନୀଚ, ବାଁ ଡାହାଣ ! ଚକ ପାଖରେ ଦୁଇ ଗୋଡ଼ ଓସାରି ସେ ଠିଆହେଲା, ଚକ ଶରଣ ପଶିଲା ତା' ପାଦମୂଳେ । ଜାଇ ନଇଁପଡ଼ି ଅରଗୁଡ଼କୁ ଆଉଁସିଲାପରି ହାତ ମାରିଦେଲା । ମନ୍ତ୍ର ପଢ଼ି ଜୀବନ୍ୟାସ ଦେଲା ପ୍ରାୟ ମୋତେ ଲାଗିଲା । ତା' ଉପ୍ରୁ ତ ପୁଅ ! ସେ ହାତ ଲମ୍ବେଇ

ଦୂରରେ ଥିବା ଅରଟାକୁ ତା' ପାଖକୁ ଓଟାରିଆଣିଲା । ଦୁଇ ହାତରେ, ବକୁଳବେଗରେ, ମହାବିକ୍ରମରେ ଭିଡ଼ିଲା ସେ ଅରମାନଙ୍କୁ । ଚକ ବୁଲିଲା ଗୁଇଁ ଗୁଇଁ । ଜାଇର ବାଲଗଣ୍ଡାକ ମୁକୁଳିଗଲା । କାନ୍ଧ ପାଖରୁ ଅସଂଖ୍ୟ ହାତ ଚକ୍ରାକାର ବୁଲିଲାପରି ଦିଶିଲା । ଅଣ୍ଟାରୁ ଉପରକୁ ଗୋଟାଏ ବୃକ୍ଷ ଛନ୍ଦରେ ଚକ ଉପରେ ଲପଲପ ହୋଇ ତଳ ଉପର ହେଲା । ଚକ ସାଙ୍ଗରେ, ତା' ଅସଂଖ୍ୟ ବାହୁ ସାଙ୍ଗରେ ବୁଲିଲା ଏ ସସାଗରା ପୃଥ୍ୱୀ । ମୋ ମୁଣ୍ଡ ବୁଲେଇ-ଦେବାରୁ ମୁଁ ଆଖି ବୁଜିଦେଲି । ଚକର ସାଇଁ ସାଇଁ ଶବ୍ଦ କାହିଁ କୋଉ ଭିତରୁ ପାହାଡ଼ ଗର୍ଭରୁ ଗୁମୁରିଲା । ଜାଇର ଜଠର ଭିତରେ ସେ ପ୍ରକାଣ୍ଡ ଚକ ବୁଲୁଥିଲା କି ? ସେ ବାହୁ-ବଳରେ ତାକୁ ତା' ଗର୍ଭକୁ କ୍ଷେପିନେଇଗଲା କି ? ଚକର ଗାଉଁ ଗାଉଁ ଶବ୍ଦରେ ସବୁ ଦୁରୁଦୁରୁ କମ୍ପିଲା । ଗଛ ଭୂଇଁ ମୋ ହାଡ଼ପଞ୍ଜୁରି ନାଡ଼, ରକ୍ତ, ମାଂସ ଥରଥର ହେଲା । ମୁଁ ପୁଣି ଚାହିଁଲି । ଜାଇ ସେମିତି ଲଇଁରହିଥାଏ । ବେଗ ହେତୁରୁ ଏତେବେଳେ ଚକ ସ୍ଥିର ଚଟଟିଏ ପରି ଦିଶୁଥାଏ । ତା' ମଙ୍ଗ ଦିଶୁଥାଏ ଧୂଆଁଳିଆ । ମୋ ଆଖିରେ ପଲକ ପଡ଼ୁ-ନଥାଏ । ମୋ ଅନ୍ତନାଡ଼ି ଦୁଲୁଦୁଲୁ ହେଉଥାଏ । ସେ ଭିତରେ ଚକଟାଏ ବୁଲୁଥାଏ । ଗଛ ଭିତରେ, ପାହାଡ଼ ଭିତରେ ସେମିତି ଅସଂଖ୍ୟ ଚକ ବୁଲିଲାପରି ଶବ୍ଦ ହେଉଥାଏ ।

ପିଣ୍ଡାରୁ ଶୁଭିଲା—'ହଉ ହେଲା, ଏଣିକି ମାଟି ମଡ଼େଇ ଦେ' । ସେତିକିରେ ସେ ଗହଳି ଭିତରୁ ମାସ ଯୋଡ଼ିଏ ହାତ ଗୋଟେଇ ଆଣି ଟଳିଲାପରି ଠିଆହେଲା ଜାଇ । ଆଖି ନଥିବା ମୁହଁ ଉପରେ ଅଲରା ବାଳ ଅଜାଡ଼ି ହୋଇ ପଡ଼ିଥାଏ । ତା ବୁକୁ, ପେଟ ଉଠୁଥାଏ ପଡ଼ୁଥାଏ ଘନ ନିଃଶ୍ୱାସରେ । ଝାଳ ଛିଡ଼ି ପଡ଼ୁଥାଏ ମୁହଁ ଉପରୁ । ବେକ ବୁକୁ ଦେଇ ନିଗିଡ଼ି ଯାଉଥାଏ ଧାର ଧାର । ଜାଇ ଦାନ୍ତ ଦେଖେଇ ହସିଲା । ଅଦ୍ଭୁତ ଗେରସ୍ତ-ଘୁଆଗରେ କୁଡ଼ୁବୁଡ଼ୁ ଲଡ଼ପଡ଼ ମାଇପିଟିଏ ! ସେ ହସ, ପୁଅ, ମୁଁ କୋଉଠି ଦେଖିନାହିଁ ! କେମନ୍ତ ନିଜକୁ ସମର୍ପିଦେଲାପରି, ନିଆଁକୁ ହଁ, ପାଣିକୁ ହଁ କଲାପରି ସେ ହସ !! ପିଣ୍ଡାରେ ଥାଇ ସେ ତାକୁ ଶାସନ କରୁଥାଏ । ସେ ମଧ୍ୟ ନିଃଶବ୍ଦରେ କେମିତି ପ୍ରାଣ ଉଚ୍ଛୁଳାଇ ପରି ହସୁଥାଏ । ତା' ଢଙ୍ଗ ଦେଖି ତ ମୁଁ ଅବାକ୍ ! ଆରେ ସେ କ'ଣ ଖାଲି ପଙ୍ଗୁ ପୁରୁଷଟିଏ ? ତା' ହସ, ତା' ଚାହାଣିରେ ସେ ଜାଇକୁ ଆବୋରି ରଖିଥାଏ । ଜାଇର ଅଙ୍ଗ ତା' ଅଙ୍ଗ ! ଜାଇର କର୍ମ ତା' କର୍ମ, ତା ହସ, ସ୍ତ୍ରୀ ହସ ଗୋଟିଏ । ସେ ଆଖିପଲକ ଜାଇ ମୁହଁ ଉପରେ ଯୋଖିହୋଇ ଯାଉଥାଏ ।···କେମିତି ଗୋଟାଏ ଏକାକାର ହେଲାପରି ଲାଗିଲା । ଭାବିଲି ଗେରସ୍ତ ହେବ ତ ଏମିତି ହେବ ! ସେଇଠୁ ଦାଉଁକିନା ମନେପଡ଼ିଗଲା ଯେ ସେଇଟା ପଙ୍ଗୁଟାଏ ! ଜାଇ ଅନ୍ଧୁଣୀଟିଏ । ମୋ ଭିତରେ ପୁଣି ପୁରୁଣା ଦୁଃଖ ଛଟପଟ ହେଲା ।

"ଜାଇ ସେଇଠି ଠିଆ ହୋଇ ହାତ ବଢ଼େଇଲା ମାଟି ଚେକାଉପରକୁ । ହାତରେ ଛୁଇଁଗଲା, ବୁଝିଗଲା, ଶୋଇଥିବା ମାଟିପିଣ୍ଡଗୁଡ଼ିକୁ ସଳ୍‌ସଳ୍ କରି ସେମାନଙ୍କ ନିଦ ଭାଙ୍ଗି ଦେଲା । ଠାରିଲା ପରି ସେମାନଙ୍କୁ ଡାକିଲା ନାଁ କ'ଣ !

"ଉପର ଚେକା କାଢ଼ିଦେ । ସେଇଟା ମଲମାଟି । ସେଥିରୁ ପାଣି ନଗିଡ଼ି ଯାଉଛୁ ।' ···ତା' ତଳ ଚେକାଟିକୁ ଜାଈ ଦୁଇ ହାତରେ ପିଲ୍ ଫେଲେଇଲା ପରି ଉଆଁଇଲା । ନଦ୍‌କନା ପକେଇଦେଲା ଚକର ନାହି ଉପରେ । ଆଉର ଗୋଟାଏ ଚେକା ସେମିତ ପକେଇଲା । ଯାଆଁଲା ମାଟିପିଣ୍ଡ ଯୋଡ଼ିକ ଚକ ଉପରେ ଘିରଘିର ବୁଲିଲେ । ପାଖ କୁଣ୍ଡରୁ ଆଞ୍ଜୁଳାଏ ପାଣି ନେଇ ଜାଈ ମାଟି ଉପରେ ଛପେଇଦେଲା । ହାତ ମଡ଼େଇବାରୁ ପଚ୍‌ପଚ୍ ଶବ୍ଦ ହେଲା । ଚକ୍‌କଣ ଚକଟା ଅଠାଳିଆ ଶବ୍ଦ । ଜାଈ ଅଞ୍ଜୁଳା ପାଣି ପକେଇ ମାଟି-ପିଣ୍ଡଟିକୁ ସାଉଁଳି ଆଣୁଥାଏ । ପାଣି କାଦୁଅ ଚଟ୍‌ଚଟ୍ ଛିଟିକ ଆସୁଥାଏ ତା' ଉପରକୁ । ପିଣ୍ଡା ଉପରୁ ଆଖିଯୋଡ଼ିକ ସ୍ଥିରହୋଇ ଅନେଇଥାନ୍ତି । ମଝିରେ ମଝିରେ ଖାଲି ହୁଙ୍କାରିଲା ପରି ଶବ୍ଦ ଶୁଭୁଥାଏ । ସେଇଟା ବୋଧହୁଏ ଜାଈ ଶୁଣିବାକୁ ଚାହୁଁଥାଏ । ଚକକୁ ବୁଲେଇ ଦେଇ ତା' ନାହି ଉପରେ ପୁଣି ପାଣିହାତ ମଡ଼େଇ ଦେଉଥାଏ । ଦୁଇ ହାତରେ ମାଟିର ମଙ୍ଗକୁ ଟେକି ଆଣୁଥାଏ । ପୁରୁଷ କମ୍ପୁଥାଏ; କହୁଥାଏ, 'ମଝିରୁ ମାଟି ଟେକ ଆଣ ! ଆହୁରି ! ଆହୁରି !' ଜାଈ ଶୁଣୁଥାଏ ପ୍ରତି ଲୋମକୂପରେ । ହାତରେ ଅନୁଭବ କରୁଥାଏ ମାଟିକୁ ଆଉ କଥାକୁ ।···'ଇସ୍ ଗୋଡ଼ଟାଏ !' ସେ କହିଲାବେଳକୁ ଜାଈ ତା' ହାତରେ ତାକୁ ଦେଖି ଫିଙ୍ଗି ଯାଉଥାଏ । ପିଣ୍ଡାରୁ ସେ ଆଖିରେ ମାଟିକୁ ଛୁଉଁଥାଏ । ଜାଈ ତା' ହାତରେ ମାଟିକୁ ଦେଖୁଥାଏ । ମାଟି ଲଳିତ ହେଉଥାଏ ମଝିରେ । ଅଞ୍ଜୁଳା ଅଞ୍ଜୁଳା ପାଣିରେ ଚକ୍‌କଣ ହୋଇ ଗଢ଼ି ହେଉଥାଏ । ଦୁହେଁ ବଖେର ହୋଇ ଘଟ ଗଢ଼ୁଥାନ୍ତି । ମୋର ମନେହେଲା ଆଖି ହେଲାକ ଅନ୍ଧୁଣୀର । ହାତ ହେଲାକ ପଙ୍ଗୁର । ସେ ଦୁଇଜଣ ଦୁଇ ନୁହନ୍ତି···ଏକ୍ ।

"ପିମ୍ପା ଗଢ଼ି ଉଠିଲା । ଆହୁରି ଚକ ବୁଲିଲା । କାଦୁଅରେ ଲଟପଟ ହେଲା ଜାଈ କୁମ୍ଭାରୁଣୀ । ଦୁଇ ପାପୁଲିରେ ଚପିଲା ପରି, ଆଦରିଲା ପରି ସେ ଡାକ ଆଣିଲା ପିମ୍ପାର ମଙ୍ଗକୁ, ଉପରକୁ, ଆହୁରି ଉପରକୁ । ପେଟୁଆ ହୋଇ ଏଡ଼େ ବଡ଼ କୁମ୍ଭ ଠିଆହେଲା ଚକ ମଝିରେ । ଜକଜକ ଦିଶିଲା । ଜାଈ ଶେଷକୁ ତା' ବେଢ଼ି ମୁହଁ ଗଢ଼ିଦେଲା । ପାଣିହାତରେ ଚକଣେଇ ଦେଲା ପିମ୍ପାର ଅଙ୍ଗକୁ । କାଳୁଆ ଚଟଚଟିଆ ଶବ୍ଦ ଆଉ ହେଲାନାହିଁ । ପିମ୍ପା ଭିଡ଼ିନେଲା ସବୁ ପାଣି । ପିମ୍ପା ଦେହ ମଣିଷ ଦେହ ପରି ଦିଶିଲା ।···ସେଇଠୁ ଏକ ବିଚିତ୍ର ଦୃଶ୍ୟ ଦେଖାଗଲା । ହାତ କାଢ଼ି ଜାଈ ଯେତେବେଳେ ଠିଆହୋଇଗଲା, ତା' ଗୋଡ଼ ସେମିତି ଫରକଟେଇ ହୋଇ ରହିଥାଏ । ଚକ ସେମିତି ବୁଲୁଥାଏ । ମାତ୍ର ସେ ବିରାଟ ପିମ୍ପାଟା ଦିଶିଲା ଜାଈର ଓହଳି ରହିଥିବା ପେଟପରି । ଜାଈ ଦିଶୁଥାଏ ଗର୍ଭବତୀ ଆସନ୍ନ-ପ୍ରସବା ! ସେଇ ପଙ୍ଗୁ ପୁରୁଷର ଇଚ୍ଛାରେ ଯେ ଜନ୍ମଦେବ ଅସଂଖ୍ୟ ଘଟକୁ । ସବୁ ଘଟଗୁଡ଼ିକ ମେଲା—ସମସ୍ତଙ୍କ ମୁହଁ ଉପରକୁ । ସେମାନଙ୍କ ଗର୍ଭକୁ ଚାହିଁରହିଥିବ ପଙ୍ଗୁ । ତା' ଦୃଷ୍ଟି ଭରିରହିଥିବ ସେ ଘଟଗୁଡ଼ିକରେ ।

"ବୁଝିଲୁ ପୁଅ ! ମୁଁ ଏମିତି ଅଭିଲା କଥାଗୁଡ଼ାଏ ଭାବିଗଲି । ମୋତେ ଲାଗିଲା ଯେ ପିମ୍ପା, ହାଣ୍ଡି, ମାଠିଆ, କୁଣ୍ଡି, କାଞ୍ଚ ଏମନ୍ତେ ଜାଈର ଅସଂଖ୍ୟ ସନ୍ତାନ । କିଏ କହିଲା ଜାଈ ଫଳିନାହିଁ ? ଜାଈ କୁମ୍ଭାରୁଣୀ ଭଳି ଆଉ କିଏ ଭଲ ଫଳିଛି ? ନହେଲେ କ ସେ ସେମିତି

ଢଣୁଥାନ୍ତା—ଯୁଆଡ଼ୁ ଦେଖିଲେ, ସେବେ ଦେଖିଲେ ମା'ପରି !···ଆଉ ଶୁଣ୍ ! ମୁଁ ଭାବିଲି ଯେ ମୁଁ ଜଣେ ଯେ ପରିବାରର ଜଣେ । ମୁଁ ବଡ଼ଲୋକ ହୋଇ ଭୁଲିଗଲି ବାକି ସବୁ ।

ମୋର ଚେତା ପଶିଲା ଯେତେବେଳେ, ପିଣ୍ଡାରୁ ଗୋଟାଏ ହେଣ୍ଟାଳ ପରି ଶବ୍ଦ ଶୁଭିଲା । ମୁଁ ମୋ ଅଜାଣତରେ ଆଡ଼ୁଆଳରୁ ବାହାରି ଆସିଥିଲି । ବାଘୁଣୀ ପରି କାଇ ଝେପି-ଯାଇଥିଲା ପିଣ୍ଡାପାଖକୁ । ସେ ମୋ'ର ଆଡ଼କୁ ଟେକ ଧରିଥିଲା ଗୋଟାଏ ଡେଙ୍ଗା ! ବାବାରେ, ମୁଁ ତା'ର ସେ ରୂପ ଦେଖି ତାଟକା ! ସେ ବୋଧହୁଏ ବୁଝିଗଲା ଯେ କୌଣସି ବଣଜନ୍ତୁ ଆସିଗଲା । ସେ ତା' ପଙ୍ଗୁ ଗେରସ୍ତକୁ ଆଢୋଉ ଠିଆହୋଇଥାଏ । କାନ୍ଦୁଥ ସରସର, ଝାଳ ସରସର, ଅଧାନଙ୍ଗଳା, ମୁକ୍ତକେଶା ବିରାଟ କଳାଘୁମର ରୂପ ! ମୋ ମେରୁଦଣ୍ଡ ଠକ୍ ଠକ୍ ହୋଇ ଥରିଲା । ଯଦି ସେ ଡେଙ୍ଗା ଗ୍ଭଡ଼ିଦିଏ, ମୋତେ ନେଇ ମାଟି ସାଙ୍ଗରେ ଗୁନ୍ଥି ଦେବ !

ମୋ ତୁଣ୍ଡରୁ ଅକସ୍ମାତ୍ ବାହାରିଗଲା, 'ମୋ ମା' କଲେ !' କାଇ ତଳେ ପକେଇ ଦେଲା ମୋ ଭାଇକୁ । ଗୃହ ଖେପାରେ ଆସି ମୋତେ ଗୋଟେଇ ଧରିଲା । 'କିଏ ? ସାଆନ୍ତ ପୁଅ ? ତେମେ କେମିତି ଏତେ ବାଟ ଆଇଲ ? ଆହା, ମୁଁ ମରିଯାଉଥିଲି !' —ସେ ମୋତେ ତା' ମାଟି ହାତରେ ମୁଣ୍ଡରୁ ଗୋଡ଼ଯାଏ ଆଉଁସିଗଲା । ମୁଁ ମାଟି ପଲବଲ ହୋଇ ଠିଆହୋଇ ରହିଲି । କାଇ ତା'ର ସେ ଥରଥର କାଅନ୍ତା ହାତରେ ମୋତେ ଆଉଥରେ ଗଢ଼ିଦେଲା । ମୋତେ ଲାଗିଲା, ମୁଁ ତା' ଚକ ଉପରେ ଗଢ଼ାହୋଇଥିବା ମାଟି ଘଟଟିଏ । ଉପର ଚକ୍‌ଚକ, ଭିତର ମେଲା । ମୋ ମୁହଁ ଉପରକୁ ! ମୁଁ ନିଶ୍ଚଳ ହୋଇଗଲି । କାଇର ଆଉଁସା ଖାଇ ନିଶ୍ଚିନ୍ତ ହୋଇଗଲି । ମୋର ସବୁ ଅବୟବ କୁଆଡ଼େ ଲୁଚିଗଲାପରି ଲାଗିଲା । ମୁଁ ପାସୋରିଗଲି ମୋ ନାଁ, ମୋ ପରିଚୟ । ମୁଁ ଅପେକ୍ଷା କରି ରହିଲି ଘଟଟିଏ ପରି । ମୋର ଜଭ ନାହିଁ କହିବାକୁ । ଆଖି ନାହିଁ ଦେଖିବାକୁ । ମୋତେ କାଇ କାଖେଇ ନେଇ ଯେଉଁଠି ଥୋଇବ, ମୁଁ ସେଇଠି ବସିଯିବି । ମୋର କ'ଣ ଥାଏ, ମୋ ଭିତରେ ସେ କ'ଣ ପୂରେଇବ—କ୍ଷୀର କି ମଦ, କି ପାଣି ! ମୁଁ ହଲିଗଲେ ଖାଲି କଲକଲହେବ, ଡବଡବ ହେବ !

ଶଙ୍କର ମଉସା ନିଶ୍ଚଳ ହୋଇଗଲେ, ନୀରବ ହୋଇଗଲେ । ମୁଁ ଅପେକ୍ଷା କରିଥାଏ ଆଉ ଗୋଟିଏ ଘଟପରି ! ଗ୍ଭଢ ଘନେଇ ଆସିଥାଏ । ଉଭୟେ ବୋଧହୁଏ ଚେତା ପାଇଲା-ପରି ଏକସାଙ୍ଗରେ ଦୀର୍ଘନିଃଶ୍ୱାସ ଗ୍ଭଡ଼ିଲୁ । ମୁଁ ଟିକିଏ ଖୁକ୍‌ଖୁକ୍ ହେଲି ।···କ'ଣ ମଉସାଙ୍କୁ ପଗ୍ଭରିବି । ସେଇଠୁ କ'ଣ ହେଲା ବୋଲି ? —ସେ କୁମ୍ଭାରଶାଳରେ କେତେ ସମୟ ରହିଲେ, କେମିତି ଫେରିଲେ, କେତେବେଳେ ଫେରିଲେ ? —ଧେତ୍ ସେଥିରେ କ'ଣ ଥାଏ ! ···ପୁଣି ଖୁକ୍‌ଖୁକ୍ ଲାଗିଲା । ପଗ୍ଭରିଦେବି କି—'ସେ କାଇ କୁମ୍ଭାରୁଣୀ ସତରେ କିଏ ? —ତା' ଗେରସ୍ତ କିଏ ?' —ଲାଭ କ'ଣ ?

ଶଙ୍କର ମଉସା ଗାମୁଚ୍ଛା ଝାଡ଼ି ଉଠି ସାରିଥିଲେ; ଜୋତାପିନ୍ଧି ସାରିଥିଲେ । ତାଙ୍କୁ ଭଲା ଆଉ ଥରେ କିଏ କଥା କୁହାଇ ପାରିବ ?

ଅନ୍ଧାରରେ ଗାଁକୁ ବାଟ ବାରି ଫେରିଲାବେଳେ ମୋର ପ୍ରତ୍ୟୟ ହୋଇଯାଇଥିଲା, କାହିଁକି କାଇ କୁମ୍ଭାରୁଣୀ ଯେତେବେଳେ ଦେଖିଲେ ମା' ପରି ଦିଶେ !

---

# ଦ୍ୱିବାର ମିଥ୍ୟା

ଘୂହୁଁ ଘୂହୁଁ ଅନ୍ଧାର ଘୋଟିଆସିଲ । ଘୁ' ଘୁ' ମାଡ଼ିଆସିଲ ପାଣି ପବନ ବତାସ । କାଠ କୁଢ଼େଇଲ ପରି ଦୁରୁଦୁରୁ ବର୍ଷା ହେଉଥାଏ । ପଚାଶ ହାତ ଦୂରର ଚିଜ ସଷ୍ଟ ଦଶୁ ନଥାଏ ଜମା । ମେଘ ଘୋଟିରହିଥାଏ ଦଶଦିଗ । ବିଜୁଳି ଚଡ଼ଚଡ଼ି କାଟୁଥାଏ ରହି ରହି । ସେ ଖଣ୍ଡମଣ୍ଡଳ ଦୁଲୁକୁଥାଏ, ହାଲୋଳମସ୍ତ ହୋଇ ଚମକ ଯାଉଥାଏ ।

କାହିଁ କୋଉ କାଳର ଭଙ୍ଗା ଘରଟାଏ । କାହାର କେଜାଣି ? ସେ ଅପନ୍ତରାରେ କାହିଁକି ଯେ ଘର ତୋଳା ହୋଇଥିଲା କିଏ କହିବ ? ତା'ର ଭୁଷୁଡ଼ିପଡ଼ିଥିବା କାନ୍ଥ, ହାଁ କରି ରହିଥିବା ଦୁଆର, ଝରକା, ଖିଲଣ ଉପରେ କଚାଡ଼ୁଥାଏ ବର୍ଷା । ମାତ୍ର ବଡ଼ ବଡ଼ ଗୋଟାଏ ଖମ୍ବ ଉପରେ ଗମ୍ବୁଜ ଭଳି ତୋରଣ ଆବୋରି ରହିଥାଏ ଛୋଟିଆ ଖଣ୍ଡେ ଜାଗା । ସେଇଠି ତାଁକୁ ମାତ୍ର ଆଶ୍ରା ନେଇ ଯୋଡ଼ିଏ ଲୋକ ଖମ୍ବର ପିଢ଼ା ଉପରେ ନୀରବରେ ବସିଥାଆନ୍ତି । କାହାରି ମନରେ ସୁଖ ନଥିଲା ପରି ଖୁବ୍ ବିରସ ଏବଂ ଏକ-ପ୍ରକାର ଭୟାର୍ତ୍ତ ମୁହଁ ଯୋଡ଼ିଏ ।

ଜଣେ ହେଥିରୁ ବୟସ୍କ । ମଇଳା ପଞ୍ଜାବି ଭିତରୁ ଚିରା ଗେଞ୍ଜି ବାରିହେଉଥାଏ । ପିନ୍ଧିଥିବା ଦରଓଦା ଧୋତିଟି ମଧ ସେହିପରି ଅପରିଚ୍ଛନ୍ନ । ସେ ଲୁଗା ଟେକିନେଇଥାନ୍ତି ଆଣ୍ଠୁ ଉପରକୁ । ପେଣ୍ଡାଯାଏ ଟାକୁର ରହିଥିବା ବାଳଅଗରେ ଫେଣ ଲାଗିଲା ପରି ଟୋପି ଟୋପି ପାଣି । ତାଙ୍କର ଆଖି ଯୋଡ଼ିକ କ୍ଳାନ୍ତ । ଯୋଡ଼ରେ ଦୁଇ ଦିନର କାଳିଆ କସରା ରୁଢ଼ ! ବୁକୁ ପକେଟରେ ଖୋଳ ଲାଗିଥିବା ଚଷମା । ଧରାଯାଉ ଆଖପାଖ କୌଣସି ପ୍ରାଥମିକ ସ୍କୁଲର ସେ ଜଣେ ଶିକ୍ଷକ । ପ୍ରତିଦିନ ସେଇବାଟେ ଫେରନ୍ତି, ସେଦିନ ଛତା ନ ନେଇ ବାହାରିଥିଲେ । ବର୍ଷାରେ ସେଇଠି ଲଖିଯାଇଛନ୍ତି ।

ଆର ଜଣକ ଏକ ଏକ-ବର୍ଷୀ, ପାଇଟିଆଳ ମଣିଷଟିଏ । କଳା-ମଚମଚ ଦେହ, ଝାମ୍ପୁରା ମୁଣ୍ଡ, ଟାକୁଆ ଗାଲ, ଚେମେଡ଼ିଆ ଟାଣୁଆ ଗୁଳା ଗୁଳା ହାତଗୋଡ଼ ! କେତେଦିନ ଶୋଇ ନଥିଲା ଭଳି ତା' ମୁହଁ, ତା'ର ରଙ୍ଗିଲା ଆଖି । କାଠୁରିଆଟିଏ ହୁଏତ । ଏ ବର୍ଷାରେ କ'ଣ ବୋକଟା ଟିକିଏ ବେଣି ଛୁଏଁ ଫେରୁଥିଲା । ଏଇ ପତରା ଜଙ୍ଗଲ ବାଡ଼ରେ କୋଉଠି ତା'ର କୁଡ଼ିଆଟିଏ ଥିବ । ସେ ଏଇ ଅପ୍ରକନକ ପ୍ରଳୟ ବର୍ଷାରେ ଆଉ ଆଗେଇ ପାରିଲା ନାହିଁ—ଏଇଠି ଅଟ୍ରା ନେଇଗଲା !

ଗ୍ରେଡ଼ଆ ସହରଟି ସେଇଠୁ ଖଣ୍ଡେ ଦୂର । ଲୋକେ କହନ୍ତି ଯେ ବଡ଼ 'ଲାଲ୍ ସାହେବ' କେହି ଜଣେ ସେ କୋଠା ତୋଳେଇଥିଲେ । ପର କାମ ଅଧାରେ ରହିଗଲା । ତାଙ୍କ ସ୍ତ୍ରୀଙ୍କ ଅନାଗ୍ରହ ତାଙ୍କ ଆଖିରେ ପଡ଼ିବାରୁ ସେ ତାଙ୍କୁ ଗୁଳି ଲଗେଇଦେଲେ । ନିଜେ ଲଗେଇଦେଇ ମରିଗଲେ । ସେଇଠି ଭୂତ ରହନ୍ତି ବୋଲି କେହି କେହି କହନ୍ତି । ଓକେଇତଙ୍କ ଗ୍ରେଭିବଧ ବେଳେବେଳେ ଦିଶିଯାଏ ଗ୍ରାଉରେ । ଦିନବେଳେ ବୁଲା ଗୋରୁ ସେଇଠି ଖଣ୍ଟା କଟାନ୍ତି—ପାକୁଳି କରନ୍ତି ।

ସେ ଦୁହେଁ ଦୁଇଟି ଖମ୍ବକୁ ଆଉଜି ତା ତଳେ ପିଣ୍ଡି ଉପରେ ବସିଥାନ୍ତି । କଥାବାର୍ତ୍ତା ନାହିଁ । ଏତିକିବେଳେ ସେ ବର୍ଷା ଭିତରୁ ଖପର ଖପର ଡେଇଁ କିଏ ଜଣେ ଧାଇଁଆସୁଥିବାର ଦେଖାଗଲା । ଲୋକଟି ସେ ଭଙ୍ଗା କୋଠାର ସୀମା ନ ଛୁଇଁବା ପୂର୍ବରୁ ପାଣିରେ ଗୋଟାପଣ୍ରେ ଗାଧୋଇ ସାରିଥାଏ । ସେ କ'ଣ ବର୍ଷା ପରି ବର୍ଷା ! !

ସେ ଆସି ଠିଆହେଲା । ତା' ଦେହରୁ ଧାର ଧାର ପାଣି ନିଗିଡ଼ି ଯାଇ ତଳ ଓଦା ହୋଇଗଲା । ସେ ତା' ଟର୍ରା ଜାମାଟାକୁ ଦେହରୁ ଉତାରି ଚିପୁଡ଼ିଦେଲା । ଦେହ ମୁଣ୍ଡ ସେଥିରେ ପୋଛି ପକେଇଲା । ପିନ୍ଧିଥିବା ଅଧାପେଣ୍ଟ୍ ଖଣ୍ଡିକୁ ତା'ର କିଛି କରୁ ଉପାୟ ନଥିଲା । ସେଥିରୁ ଟପ୍‌ଟାପ୍ ପାଣି ନିଗିଡ଼ି ଯାଉଥାଏ ଅନେକ ବେଳ ପର୍ଯ୍ୟନ୍ତ ।

ସେ ଚାହିଁଲା ଏପାଖ ସେପାଖ । ନାକ ମୋଡ଼ିଲା । ମୁହଁ ମୋଡ଼ିଲା । ଭ୍ରୂଲତା କୁଞ୍ଚେଇଲା । ତା' ମନକୁ ପାଉଲା ଭଳି ମଣିଷ ବୋଧହୁଏ ସେଠି ଦେଖିଲା ନାହିଁ, ସେ ନିଜେ ବୋଧହୁଏ ଫୁଲାଫାର୍କିଆ ଉଦ୍‌ବାସ୍ତୁ ମଣିଷଟିଏ । ଘରଦ୍ୱାର ନଥାଇ, ରାସ୍ତା ଉପରେ ବଡ଼ଖୁଣ୍ଟ ତଳେ ଦିନରାତି କଟାଏ—ଆଜି ଏ ବସ୍ତି ତ କାଲି ସେ ବସ୍ତି ପାଖରେ ନାକେଇ ରହେ । ସାରା ସହରର ଅଧେ ଲୋକଙ୍କ ଗତିବିଧି, ଆଚରଣ, ଗାଡ଼ିମାନଙ୍କର ରଙ୍ଗ, ନମ୍ବର ସବୁ ମନେରଖି ନିଜ ଗୋର୍ଣ୍ଣୀମାନଙ୍କୁ ଦେଖିଲେ ଗପିବା ବୋଧହୁଏ ତା'ର ଏକମାତ୍ର କାମ । କିଛି ଧନ୍ଦା ନଥାଇ ସେ ବଞ୍ଚେ କେମିତି ?—ସେ କ'ଣ ମଝିରେ ମଝିରେ ଗ୍ରେରକରେ ? କେଜାଣି ! କହିହେବନି !

କେହି ଜଣେ ବଡ଼୍ ବଡ଼୍ ହେଲା ପରି କ'ଣ ଶୁଭିଲା । ବୁଲି ଚାହିଁଲାବେଳକୁ ସେଇ ଦରବୁଢ଼ା ମାଷ୍ଟ୍ରେ ସେମିତି ମନକୁ କ'ଣ କହି ମୁଣ୍ଡ ଲାଡ଼ୁଛି । ସେ ଚାହିଁଲା ଆଉ ଖମ୍ବ ଆଡ଼େ । ଫୁଟୁଳା ଦେହରେ ଏକବସ୍ତ୍ରୀ କାଠୁରିଆ ଏକାଲୟରେ ବର୍ଷାକୁ ଚାହିଁ ରହିଛି । ତା'ର କୌଣସି ଆଡ଼େ ନଜର ନାହିଁ । ସେ ଘୁଞ୍ଚିଲା । ସେ ଦରବୁଢ଼ା ମଣିଷଟି ପାଖକୁ ଯାଇ ଲଇଁପଡ଼ି ତା ମୁହଁକୁ ଚାହିଁ ଅଳ୍ପ ହସିଲା ।

କହିଲା—'ହୁସ୍ ! !—ନିଦରେ କାହାକୁ ଏମିତି ପାଠ ପଢ଼ଉଚ ? ଏଠି କେହି ନାହାନ୍ତି ।' ସେ ଶିକ୍ଷକ ଜଣକ ତାକୁ ପ୍ରାସ୍ତ ନଦେଖିଲା ଭଙ୍ଗୀରେ ସେମିତ ମୁଣ୍ଡ ଲାଡ଼ୁଥାନ୍ତି ଏବଂ କହୁଥାନ୍ତି 'ଭୟଙ୍କର ଭୟଙ୍କର ! ମୁଁ ଆଉ ଏ ମଣିଷଜାତିଟାକୁ ବିଶ୍ୱାସ କରିପାରୁନାହିଁ ।'

'ହେ, ହେ, ହେ'—ସେ ବଜାର ଲୋକଟି ହସିଲା ଉଶ୍ବାସରେ ଏବଂ ଥଟ୍ଟାରେ । କହିଲା, "ତା'କୁ ବିଶ୍ବାସ ନକଲେ, ଆଉ କାହାକୁ କରିବ ? ଗୋରୁଙ୍କୁ ? ନା ଛେଳିଙ୍କୁ ?"

କାଠୁରିଆ ଥରେ ବୁଲିପଡ଼ି ଗୁହିଁଲା ଏବଂ ଫଡ଼୍‌କିନା ମୁହଁ ବୁଲେଇ ନେଲା ବର୍ମାଆଡ଼େ !

ମାଷ୍ଟ୍ରେ ଏଥର ଶୁଭିଲଭଲି ସ୍ୱରରେ କହିଲେ, "ଏ ମଣିଷଟା ଜାଣ ସବୁଠାରୁ ସାଙ୍ଘାତିକ ଜାନୁଆର—ମୁଁ ତା'ଙ୍କୁ ଜମା ବୁଝିପାରୁନାହିଁ ।"

ବଜାରିର ହସରୁ ଜଣାଯାଉଥିଲା ଯେତେ ବା ସେ କହୁଛି, 'ଆଉ କୋଉ ଜାନୁଆରକୁ ତୁ ବୁଝିଲୁଣି ବେ ବୁଢ଼ା ?'—ସେ କିନ୍ତୁ କିଛି ନକହି ସେମିତି ଅପେକ୍ଷା କଲା ।

ସେ କିଛି ସମୟ ରହି ହଠାତ୍ କହିଲେ, "ଦିନଦିନ ତଳେ ଏଇ ତଳି ଜଙ୍ଗଲରେ ଗୋଟାଏ ଭେଣ୍ଡିଆ ମର୍ଦ୍ଦଟାକୁ ହତ୍ୟା କରାହେଇଛି !"

କାଠୁରିଆ ଏଡ଼େଟାମାନ ଆଖିକରି ଏଆଡ଼କୁ ଗୁହିଁଲା ଏବଂ ଆସ୍ତେ ଉଠି ଚାଲିଆସିଲା ପାଖକୁ ।

ବଜାରି କୌଣସି ପ୍ରକାର ବିଚଳିତ ହେଲାପରି ଜଣାଗଲାନାହିଁ । ବରଂ ସେ ଥଟ୍ଟାଳିଆ ସ୍ୱରରେ କହିଲା, "ହୋଃ, ଗୋଟାଏ ନା ପୁଣ୍ଡାଏ ?—କିଓ, ଏଇ ସହରରେ ପରି ଦୈନିକ ସେଥିରୁ ଗୋଟାଏ ହଣା ହଉଚି ! ମରିବା ମାରିବା ଏବେ ଏଡ଼େ ସହଜ ଦେହସିଆ ହେଇଗଲାଣି ଯେ ସେଥିରୁ କିଛି ନହେଲେ ସୁଖ ଲାଗୁନାହିଁ ! ତମେ ବୁଢ଼ାବାବୁ ଭାରି ମଫସଲିଆ ଜଣାଯାଉଛ ।"

"ହଁ, ତା' ଠିକ୍ । ମୋ ଘର ମଫସଲରେ, ମୋ ବାପ ଗୋସେଇଁବାପଙ୍କ ଗାଁରେ ! ତେବେ ଆଜିକାଲି ଯୁଗ ଯାହା ହେଲାଣି, ମୋ ବିଶ୍ବାସ ସବୁଦିନ ତୁଟିଯାଉଛି ! ହତ୍ୟାଟା ଏବେ ତୁମେ କହିଲାପରି ଦୈନିକ ଘଟଣା···କିନ୍ତୁ ଏଇଟା ତା' ନୁହେଁ !" "ଯେତେନା କ'ଣ ?"—ବଜାରି ମୁହଁରେ ସ୍କୁଲ ପିଲାଙ୍କ ଭଳି ଆଗ୍ରହ ଉଭୁରିଆସିଲା । ସେ ସେଇଠି ତଳେ ବସିପଡ଼ି ଭାରି ରସରସିଆ ଢଙ୍ଗରେ କହିଲା, "କହୁନା କେମିତି କ'ଣ ହେଲା !" ମେଘ ସେମିତି ଗାଳିଦେଉଥାଏ । ଆକାଶକୁ ଗୁହିଁଦେଇ ସେ କ୍ଳାନ୍ତି ହୋଇ ବସିଗଲା ।

···"ତୁମେ ଜାଣିଚ ନା ନାହିଁ କେଜାଣି—ଏଇ ରାସ୍ତାରେ ଉତ୍ତରକୁ କୋଡ଼ିଏ ମାଇଲ୍ ଗଲେ ବାଁକୁ ଆଠଅଙ୍କି ମୋଡ଼ଣିଟାଏ ପଡ଼ିବ । ସେଇଠୁ ପନ୍ଦର ମାଇଲ ଗଲେ ଦେବୀଗଡ଼ । କିନ୍ତୁ ଏଠୁ ଆଉ ଟିକିଏ ଆଗକୁ ବାଁଆଡ଼େ ଗୋଟାଏ ଚୌଡ଼ା ଚଲା ରାସ୍ତା ଦିଶିବ । ସେଇଟା ସିଧାସଳଖ ବାହାରିବ ଯାଇ ଗଡ଼ପାଖରେ । ଏମିତି ଗଲେ ବାଟ ପାଞ୍ଚକୋଶ ଊଣା । ସ୍ୱା'ଙ୍କୁ ଜଙ୍ଗଲ ମହକୁମାବାଲା ଅନେକ ଦିନ ତଳେ କରିଥିଲେ—କିନ୍ତୁ ସାରା ରାସ୍ତା ବଣ ! ବାଘଭାଲୁ ଭୟ ତ ନିଶ୍ଚୟ, ତା'ଠୁ ବେଶି ଭୟ 'ଚନ୍ଦନା' ଡକେଇତ ପାଇଁ !"

ବସିବା ପାଖରୁ ଟକେ ଚମକ ପ୍ରଷୁଗଲ ବଜାଖ୍ରି, "ବାପ୍‌ରେ, ଚନ୍ଦନା—ଜାଉଁଡା ବାଘ ମୋ ବାପାଲେ—ସେ ଗୋଟାଏ ଚଟକଣାରେ ପ୍ରଥମେ ମଣିପଟାକୁ ମାରଦଏ, ତେଣିକ ତା'ର ସେ ଧନହାତଆ ଖଣ୍ଡାରେ ତା'କୁ ହାଣି ଗଡ଼ଗଡ଼ କରବା ତା' ମର୍ଜି !—ଏଇଟା କ'ଣ ତାର କାମ ନା କ'ଣ ?"

"ସେଇ ହତ୍ୟା ଅପରାଧରେ ଧରା ହେଇ ଆସିଛ ପରା ?"

"ହେଁ !" କହ ବଜାଖ୍ରି ତଆଁମାର ଉଠିପଡ଼ଲ । "ଅସମ୍ଭବ—ଆହେ ଯାଉନ, ଆଉ କାହାକୁ ସେ ଗାଲୁ ମାରବ ! ତେମେ ବାବୁ ସେ ଉଗ୍ରଷଣ୍ଡାକୁ ଦେଖିନା—ଦେଖିଲେ ଠିଆରେ ମୂତପକେଇବ ! ତାକୁ କଏ ପୁଅ ହେଲନି ଧରଦବ ! ହୁଃ ! ଚନ୍ଦନା ପୁଣି ଧରାହେଇ ଆସିଚ !"

ମାଷ୍ଟ୍ରେ ପୂର୍ବପର କହଲେ, "ସତ କଥା, ତା'କୁ ଧର ରଖିବା ଯାହା, ଭେଣ୍ଡିଆ ସିଂହକୁ ବାନ୍ଧ ରଖିବା ତାହା । ତା' ଗର୍ଜନରେ ଥାନା କମ୍ପୁଥାଏ, ସେ କହୁଥାଏ···"

ଖପାଙ୍ଗ୍‌କନା ବଜାଖ୍ରି ଆସି ନଜ ଜାଗାରେ ବସିଗଲ ଶୁଣିବାକୁ । ସେ କହୁଥାଏ···

"ଆବେ ଚନ୍ଦନା କ'ଣ ସେମାନଙ୍କ ଭଳ ଡରୁଆ ନା ତୁମମାନଙ୍କ ଭଳ ଛେରୁଆ ଖ୍ରେଟଲୋକ ହେଇଚ । ମୋତେ ତମେ ଫାଶୀଦବ, ବର୍ମ୍ନେକାଲ ଅଖିଆ ପକେଇ ପକେଇ, କଣ୍ଠାହେଇ ଝଡ଼ଗଲ ପରେ । ନହେଲେ, ଶଳେ ସେ ପୁରୁଣା କତାଖଣ୍ଡ ମୋ ଖ୍ରାରେ ଛୁଣ୍ଡିଯିବ ବୋଲ ତମ ଡର···ହା, ହା, ହା···"

ତା' କୁହାଟରେ ସମସ୍ତେ ଡାବ୍‌ଦା ହୋଇଯାଇଥାନ୍ତି । ସେ ଦାନ୍ତ କଡ଼ମଡ଼ କର ଆଖି ତରାଟି ଚମକଗଲେ, ଥାନାବାବୁ ଲଗାତ୍ ଧଡ଼୍‌ପଡ଼୍ ହେଇ ଉଠିଯାଉଥାନ୍ତି । ସେ ହୋ' ହୋ' ହୋଇ ପୁଣି ହସୁଥାଏ ।

"ଆବେ ମୁଁ ନଣାଖାଇ ମୋ ମଜାରେ ନଈପାଣିରେ ମୁହଁ ନଗେଇ ପିଉଥିଲ, ସେଇ ବାଲରେ ଶୋଉଥିଲ । ତମେ ଶଳେ ମୋତେ ବାନ୍ଧ ପକେଇଲ ! ଅ, ଅ, ଅ—ମୁଁ ଏ ଲୁହା ଦ'ଖଣ୍ଡ ଆଉ ଏ ଦଉଡ଼ିଟିକୁ ଟିକ ଟିକ କର ଛୁଣ୍ଡେଇ ଦେବନ ! ନହେଲେ ତମର କଏସବୁ ନାଖ ଖାଇ ହୁଗୁଲେଇ ଦେବନ ! ତମ କାନ୍ଥ କଣାକର, ତମ ଡଣ୍ଡି କଣାକର ମୁଁ କ'ଣ ଗ୍ରହିଁଲେ ବାହାରଯିବନ ! ସେ କଥା ପଛେ, ଏବେ ଶୁଣ—ମୁଁ କ'ଣ କହୁଚ··· ମନହେଲେ ଲେଖିପକା !

"ମୁଁ ଗଣ୍ଡା ଗଣ୍ଡା ମଣିଷ ଏଇ ହାତରେ ମାରଚ ! ମାଛ କାଟିଲପର କାଟିଚ । ଏଠୁ ଗଲେ ଆଉର କାଟିବ । ବେଶି କାଟିବ···ମାତ୍ର ସେ ଲୋକଟାକୁ ମୁଁ ମାରବାକୁ ଗ୍ରହିଁ ନଥିଲ ! ମୁଁ ଗ୍ରହିଁଥିଲ···"

ଚନ୍ଦନା ତଳକୁ ମୁହଁ ପୋତ ରହଲ କଛ ସମୟ···

ଭାର ନରମ ଗଳାରେ କହଲ । ତେବେ ବ ସିଂହ ଗର୍ଜିଲପର ଶୁଭୁଥାଏ···

"ସେ ଟୋକା ତା'ର ସେ ମାଇପଟାକୁ ଧରି ଗୋଟେ ଫଟଫଟିଆରେ ବୁଲୁଥାଏ ଗଡ଼-ଆଡ଼ୁକ । ଦି'ପହର ଗୁଇ ଲେଉଟାଣି ବେଳ ହବ ! ମୁଁ ଗଛ ମୂଳଟାରେ ଶୋଇଥାଏ । ସେ ହାରାମି ଫଟଫଟିଆ ମୋ ନିଦ ଭାଙ୍ଗିଦେଲା ! ମୁଁ ତାକୁ ପଛେ ଛେଚ ଛେଚ ଗୁଣ୍ଡ କରି ଦେଇଥା···ମୋ ନିଦ ଭାଙ୍ଗି ଯିବାରେ ମୁଁ ସେମିତି ଅନେଇଲି । ସେ ମୋ ସାମ୍ନା ଦେଇ ବୁଲିଗଲା । ଖରାଟା ପଡ଼ୁଥାଏ ଦୁଇଜଣଯାକ ଉପରେ । ସେ ମାଇକିନାର ମୁହଁଟା ଦର୍ପଣ ପରି ଚମକିଗଲା । ମୁଁ ଧଡ଼୍କିନା ଉଠି ବସିଲି ଆଉ ଥରେ ଦେଖିବାକୁ ! ଆଉ ଥରେ ଦେଖିଦେଇଥିଲେ ଗୁଡ଼ଦେଇଥାନ୍ତି । ଥରଟେ ଦେଖି ମୋର ପିତ୍ତ ଚଢ଼ିଗଲା ! ଚଲା ରାସ୍ତାରୁ ଧୂଳି ଉଡ଼ୁଥାଏ; ଖାଲ ଢିପରେ ଛେଚକଚ ହେଇ ଫଟଫଟିଆ ଯାଉଥାଏ । ମୁଁ ଝପଟିଗଲି ପଛରୁ ! ଗୋଟେ ପଥର ପାଖରେ ସେ ଆସ୍ତେ ବଙ୍କାଉଥାଏ । ମୁଁ ଚଢ଼ିଗଲି ଖେପାମାରି ସେ ପଥର ଉପରକୁ ! ସେ ଧଡ଼୍କିନା ବନ୍ଦ କରିଦେଲା । ସେମିତି ତା' ଉପରେ ବସି ସେ ମତେ ଅନେଇଲା । ମୁଁ ତା' ମାଇପକୁ ଅନେଇଲି । ଇସ୍···ମୋ ଭିତର ହେଣ୍ଡାଳିଲା ! ଗବଗବ ହେଲା ! ତାକୁ ଖପ୍‌କିନା ଟେକି ନେଇ ପଳେଇବାକୁ ଇଚ୍ଛାହେଲା ! ମାତ୍ର ମୁଁ ତ ଚୋର ନୁହେଁ !"

ଦୁଲ୍‌କିନା ଗୋଟେ ନାଡ ମାଇଲା ତଲେ, ଥାନା ଘର ଥରଥର କମ୍ପିଗଲା—"ମୁଁ ଚନ୍ଦନା କେବେ ଚୋରି କରିନାହିଁ । ଶୁଣିଥା ବେ ଶଳେ; ତମ ବୋପା କହିଲେ ସୁଦ୍ଧା ସତ ମାଣିବନାହିଁ—"

ତା' ମନକୁ ସେ ଥମିଗଲା । କହିଲା—"ମୁଁ କିଛୁ ନକହି ସେ ମାଇପିଟାକୁ ଚାହିଁ ଠିଆ-ହୋଇଥାଏ । ନୂଆ ବାଷ୍ଟ ହେଇଥିବା ଟୋକା ଖଣ୍ଡେ ! ସେ ମୋ ଆଖି, ମୋ ରୂପ, ମୋ ଅଣ୍ଟାର ଭୁଜାଲି ଦେଖି ମୁହଁ ଆଡ଼େଇ ଚର୍‌ଚରେଇ ରଡ଼ ଗୁଡ଼ିଲା । ମୁଁ ତଥାପି ସେମିତି ଠିଆହେଇ ଚାହିଁଥାଏ ।

ସେ ଟୋକା ଖପ୍‌କିନା ଓହ୍ଲେଇ ଆସିଲା । ଭାରି ମନଭୁଲ୍ଲ ଟୋକା । ଭଲ ପିନ୍ଧିଥାଏ, ଭଲ ବାସୁଥାଏ । ସେ ଡାହାଣ ହାତରେ ଗୁପ୍ତିଟାଏ ଧରିଥାଏ । ମୋତେ ଆସି ବାଁ ହାତରେ ଧକାଏ ପକେଇଲା । ମୁଁ ଜମା ଘୁଞ୍ଚିଲି ନାହିଁ । ତାକୁ ଚାହିଁ ହେଁ ହେଁ ହସି-ପକେଇଲି । ସେ ତାଟକା ହେଇଗଲା ।

ମୁଁ ବୁକୁ ଉପରେ ବାହୁ ରଖି ସେ ମାଇକିନାକୁ ଦେଖୁଥାଏ ।

ସେ ଟୋକା କ'ଣ ସବୁ ପାଟିକରି ଶୋଧିଲା । ଗୁପ୍ତି ବାହାର କରି ଟେକିଲା । ମୁଁ ତାକୁ କଣେଇ ଚାହିଁଥାଏ । ମୁଁ ମନ ସ୍ଥିରକରି ତା' ବାଁ ଡେଣାକୁ ଖପ୍‌କିନା ଧରି ବୁଲିପଡ଼ିଲି ।

ସେ ଚଟ୍‌କିନି ଖସିଗଲା । ମତେ ପୁଣି ଧକାଏ ପକେଇଲା । ପୁଣି କ'ଣ ଗାଳିଗୁଲଜ କରୁଥାଏ ଏଡ଼େ ପାଟିକରି ।

ମୁଁ ବାଟ ଉପରୁ ଘୂରିଗଲି ବାଁଆଡ଼କୁ ! ତା'କୁ ସେଇଠୁ କହିଲି, "ଟିକଏ ଏଠିକି ଆସି ଶୁଣିଯିବୁ !" ମୁଁ ସତେ ଚାହୁଁ ନଥିଲି ସେ ମାଇକିନିଆଟି ଆଗରେ ସେ କଥା କହିବାକୁ ।

ସେ କ'ଣ ଭାବି ଆଗେଇ ଆସିଲି । ପଛରୁ ତା' ସ୍ତ୍ରୀ ପାଟିକଲା—"ଯାଅନାହିଁ, ଜମା ଯାଅ ନାହିଁ !"

ସେ ଭୁଲିପଡ଼ି ମର୍ଦ୍ଦାନି ଢଙ୍ଗରେ କହିଲା—"ଆରେ ଚୁପ୍ ରହ ! ମୋର କିଏ କ'ଣ କରିବ, ମୁଁ ଏଇ ସଇତାନଟାକୁ ଦେଖିନେଉଛି ! ତୁ ସେଇଠି ଥା ।"

ସେ ମୋ ପାଖକୁ ଆସିବାରୁ ମୁଁ ତା' କାନ ପାଖରେ କହିଲି, "ମୁଁ ତୋ ମାଇପକୁ ନେବି ।" ତା' ଖୁନ୍ ଗରମ କରିଦେଇ ମୁଁ ଚମକିଗଲି ଆଗକୁ । ସେ ଗୋଡ଼େଇଗଲା ମୋ ପଛେ ପଛେ । ମୁଁ ସେଇଆ ଚାହୁଁଥିଲି । ଖୋଲା ଜାଗା ଦେଖି ମୁଁ ତା' ସାଙ୍ଗେ ଭିଡ଼ିଗଲି । ତା' ହାତରୁ ଛଡ଼େଇ ଫିଙ୍ଗିଦେଲି ସେ ଛୁରି ଖଣ୍ଡ । ସେ ରାଗରେ କମ୍ପୁଥାଏ, ଲଢ଼ୁଥାଏ ବାଘଟାଏ ପରି । ଆବେ ସେ ଟୋକା ଏମିତ ସେମିତ ଟୋକା ନୁହେଁ—ସେ ଏକା ଲଢ଼ିଲେ ଭିମ ଭିତରୁ ସୁଆଁଏ ପାଣିପିଇ ପକାନ୍ତି । ଆଃ ! କି ଲଢ଼େଇ ହେଲା ! ସେ ଆଉ ବେଶି ବେଳ ହେଲାନାହିଁ । ମୋ ପାଖରେ ଦଉଡ଼ି ଖଣ୍ଡେ ସଦାବେଳେ ରଖିଥାଏ । ମୁଁ ତାକୁ ଲେଉଟେଇ ତା' ହାତ ପାଦ ଏକାଠି ମୁଦା କରି ବାନ୍ଧି ପକେଇଦେଲି । ତା' ମୁହଁରେ ଲୁଗା ଖଣ୍ଡେ ଭିଡ଼ିଦେବାରୁ ସେ ଖାଲି ଗାଉଁ ଗାଉଁ ହେଲା—'ହା, ହା, ହା···ହୋ, ହୋ···'

ଚନ୍ଦ ପ୍ରତିମାପରି ବଜାଣି ଅନେଇଥାଏ । ଆଉ ଲୋକଟି ସେଇ ଟିକଏ ଜାଗାରେ ପଡ଼ିତଡ଼ି କାଟୁଥାଏ ।

ମାଷ୍ଟ୍ରେ କହିଲେ—ଚନ୍ଦନା କିଛି ସମସ୍ତ ବସିଗଲା ଗୁମ୍ ମାରି । ତା' ଉଣ୍ଟୁରୁ ଉପରକୁ ଫଣା ଟେକି କହିଲା—

"ମୁଁ ଭୁଲିପଡ଼ିଲାବେଳକୁ ସେ ଟୋକୀ ଛୁରୀଟା ଗୋଟେଇ ଧରି ମୋ ପଛରେ ଲାଗିଗଲାଣି । ସେ ବି କିଛି କମ୍ ନୁହେଁ । ସେ ବାଘୁଣୀପରି ଗର୍ଜୁଥାଏ । ଝାମ୍ପି ପଡ଼ୁଥାଏ । ମୁଁ ଖସିଯାଉଥାଏ । ଖେଳୁଥାଏ ତା' ସାଙ୍ଗରେ । ସେ ଜାଣିପାରୁନଥାଏ । ସେ ପବନକୁ ଛୁରି ମାରି ମାରି, ଧାଇଁ ଧାଇଁ ହାଲିଆ ହୋଇଗଲା । ମୁଁ ତାକୁ ଧରିନେଲି । ସେ ମୋ ହାତକୁ କାମୁଡ଼ିଦେଲା । ମୁଁ ତାକୁ ଆସ୍ତେ ଆସ୍ତେ ଆୟତ୍ତ କରିନେଲି । ସେ ମୋ ବାହୁ ଭିତରେ ଆଉ ହଲିପାରିଲାନାହିଁ । ଆସ୍ତେ ସେ ଛାଡ଼ିଦେଲା ନିଜକୁ । ନରମ ହେଇଗଲା—ନଡପଡ ଢୂଳା କଣ୍ଢେଇପରି । ମହ ମହ ବାସିଲା ତା' ନାକ, ଓଠ, ମୁହଁ ! ମୁଁ ତାକୁ ପିଇଗଲି ମନ ଇଚ୍ଛା । ମୁଁ କେତେବେଳକୁ ବୁଝିଲି ଯେ ସେ ମୋତେ ଭିଡ଼ିଧରି ମୋତେ ପିଉଛି—ହାହା, ହା···ହି ହି ହି···"

ଚନ୍ଦନା ପିଲାଙ୍କ ପରି ତଳେ ଦୁରୁ ଦୁରୁ ଗୋଡ଼ ବାଡ଼େଇଲା ଖୁସିରେ ! ସେ ମୋ ବାହୁ ଭିତରୁ ମୁହଁ ବୁଲେଇ ଚାହିଁଲା । ଭୂଇଁରେ ମୁଦାହୋଇ ବନ୍ଧାପଡ଼ିଥିବା ଟୋକା ଆଖିରୁ ଜଳ ଛୁଟିକି ପଡ଼ୁଥାଏ । ସେ ଖୁରେଇ ହେଉଥାଏ । ଗାଉଁ ଗାଉଁ ହେଉଥାଏ । ସେ ଟୋକା ସେଇଆଡ଼େ ଚାହିଁ କହିଲା, "କିଛି ତ ଫଇସଲା ହୋଇ ପାରିଲାନାହିଁ —" ମୁଁ ଇସାରା ବୁଝିଗଲି । ତା'ର ଛୁରୀଟା ଧରି ସେ ଟୋକା ପାଖରେ ଠିଆହେଲି । ସେ ଆଖି ବୁଜିଦେଇ ଟାଣିହେଇଗଲା । ମୁଁ ଦଉଡ଼ିଟା କାଟିଦେଇ କହିଲି, "ନେ ତୋ ଛୁରୀ ।"

ଘାଉଡ଼ା ବାଘ ପରି ସେ ମୋ ଉପରକୁ ଡେଇଁ ପଡ଼ିଲା । ଆମେ ଢେର ବେଳ ଲଢ଼ିଲୁ । ଶେଷରେ ଗୋଟାଏ ଲଇରେ ଛନ୍ଦ ହୋଇ ସେ ଚିତ୍ତମାଡ଼ି ପଡ଼ିଗଲା । ସେ ପାଟି ମେଲି କରି ଆଖି ବୁଜି ପଡ଼ିଯାଇଥାଏ । ଧକଉଥାଏ । ମୁଁ ବି ହାଲିଆ ହେଇଯାଇଥାଏ । ମୁଁ ଛୁରୀକାଲିଟାକୁ ଶେଷରେ ବସେଇଦେଲି ।

ଚନ୍ଦନା ତଳକୁ ଚାହିଁ ରହିଲା । କହିଲା—ମୁଁ ତାକୁ ମାରିବାକୁ ବାଧ ହେଲି । ମୁଁ ଲଢ଼ିଲି । ତାକୁ ଲଢ଼ିବାକୁ ସୁଯୋଗ ଦେଲି । ଆମ ଭିତରୁ ଜଣେ ନଷ୍ଟେ ମରିଥାନ୍ତା, ସେ ମରିଗଲା ! ଗୋଟାଏ ମାଇକିନା ପାଇଁ ଆମେ ଲଢ଼ିଥିଲୁ; କିନ୍ତୁ ମୁଁ ବୁଲି ଚାହିଁଲି ବେଳକୁ ସେ ସେଇଠି ନଥିଲା । ସେ ବୋଧେ ଚାଲ୍ ଖେଳି ମୋତେ ଭୁଡେଇଦେଲା । ଆମକୁ ଲଢ଼େଇ ଦେଇ ଖସିଗଲା । ସେ କେତେ ବାଟ ଏମିତ ଯାଇଥାନ୍ତା ! ମୁ ଚାହିଁଥିଲେ ତାକୁ ଧରି ପକାଇ-ଥାନ୍ତି । ମୁଁ ଆଉ ଚାହିଁଲି ନାହିଁ । ମୋର ମନ ହେଲାନାହିଁ···

"···ଧୀରେ ଧୀରେ ମୁଁ ରାସ୍ତା ଆଡ଼କୁ ଆସିଲି । ଗୋଡ଼ ଲମ୍ବେଇ ସେଇ ଗଛ ମୂଳେ କିଛି ସମୟ ବସି ସେ ଫଟଫଟିଆଟାକୁ ଚାହିଁଲି । ତା' ଉପରେ ମୋର ପ୍ରବଳ ରାଗ ହେଲା—ସେଇଠୁ ଉଠିଯାଇ ତାକୁ ଛେଚ ଛେଚ ଗୁଣ୍ଡ କରିଦେଲି ।"

ଡକୋଟି ମଣିଷ ନିଶ୍ଚଳ ହୋଇ ଠିଆରହିଥାନ୍ତି । ମେଘ ଡାକୁଥାଏ । ବର୍ଷା ଛେଚୁଥାଏ । ମାଷ୍ଟ୍ରେ ପୁଣି ପିଣ୍ଡି ଉପରେ ବସିପଡ଼ିଲେ । ବର୍ଷାଭିତରକୁ ଚାହିଁ କହିଲେ, "କଥାଟା କିନ୍ତୁ ଏମିତ ଆଦୌ ନୁହେଁ !"

ବଜାଗ୍ୱ ହାତ ଯୋଡ଼ାକ ପଛକୁ ଫିଙ୍ଗି ଲେଡ଼ାମାରି ହାଁ କରି ଚାହିଁଲା, "ମାନେ, ଏମିତ ନୁହେଁ ତ ଆଉ କେମିତ ?"

କାଠୁରିଆ ଭୂରୁ କୁଞ୍ଚେଇ ବୁଲି ଚାହିଁଲା । ଅଦ୍ଭୁତ ଢଙ୍ଗରେ ଟିକିଏ ହସିଦେଲା । ପାଖେଇ ଆସିଲି ଶୁଣିବାକୁ; କିନ୍ତୁ ସେ ଛନଛନ ହେଉଥାଏ । ଟାଣିଲିପରି ରହିଥାଏ । ଡରିଲା ପରି ଚାହୁଁଥାଏ ।

ମାଷ୍ଟ୍ରେ କହିଲେ—ଭୟଙ୍କର ଏ ମଣିଷ ଜନ୍ତୁ । ତାକୁ ମୁଁ ଆଦୌ ବୁଝିପାରୁ ନାହିଁ— ଏଇ ଘଟଣାରୁ ସେ ଟୋକା ଆସିଥିଲା କାଲି ସେଇ ଥାନାକୁ । ତାକୁ ଜେର୍ କଲାବେଳେ ସେ ଭାଉଁ ଭାଉଁ କାନ୍ଦୁଥାଏ । ତା' ବାଳ ମୁକୁଳା । ପାଗଳ ମଣିଷଙ୍କ ପରି ଆଖି ତରାଟି ସେ ବାଲୁ ବାଲୁ ଚାହୁଁଥାଏ । କହୁଥାଏ···

"ମତେ ମରିଯିବାକୁ ଦିଅ । ମତେ ମାରିଦିଅ । ମୁଁ ମରିବି । ମୁଁ ପ୍ରାଣ ହାରିବାକୁ ପାଣିକୁ ଡେଇଁଲି, ମୁଣ୍ଡ ପିଟିଲି ପଥରରେ । ମଲି ନାହିଁ !···ଜମା ମଲି ନାହିଁ···ମଲି ନାହିଁ !!" କିଛି କାଳ ଛେଚି କୋଡ଼ି ହୋଇ ସେ ବିକଳରେ କାନ୍ଦିଲି··· ତା'ପରେ କହିଲି—

"ଏ ମରଦଗୁଡ଼ା କୁକୁର ! ଏଗୁଡ଼ାକ ଦେହରେ ବଳ ଅଛି ବୋଲି ବଳାତ୍କାର କରୁଛନ୍ତି । ଏମାନଙ୍କର ହୃଦୟ ନାହିଁ, ବୁଦ୍ଧି ନାହିଁ । ଏମାନେ ବିଚାର କରିପାରନ୍ତି ନାହିଁ । ଏଗୁଡ଼ାକ ସମସ୍ତେ ସ୍ଲେଟଲୋକ, ସମସ୍ତେ ପଶୁ···

···କ'ଣ ହେଲା ଏବେ ସେଦିନ ! ସେ ମୋ ସ୍ୱାମୀ—ମୋତେ ଚାରିଟାମାସ ତଳେ ପ୍ରେମକରି ବାହା ହୋଇଥିଲେ ! ବାପା ମା'ଙ୍କ ଇଚ୍ଛା ନଥାଇ ବାହାଘର ହେଲା—କାରଣ ମୁଁ ତାଙ୍କ କଥାରେ ବିଶ୍ୱାସ କରିଥିଲି । କେଡ଼େ ଆଦରରେ ଗେଲକରି ସେ କହୁଥିଲେ ଯେ, ମୋତେ ପ୍ରାଣଠାରୁ ବଳି ଭଲପାଆନ୍ତି—ହୁଁଃ···ମିଥ୍ୟାବାଦୀ, କାପୁରୁଷ, ବେମରଦିଆ ଲୋକ । ଦେବୀଗଡ଼ ମୋ ମାମୁଁଘର । ମଟରସାଇକଲରେ ଚାଲିଲ ପହଞ୍ଚିଯିବେ ବୋଲି ବାହାରିପଡ଼ିଲେ । ଏ ଜଙ୍ଗଲିଆ ରାସ୍ତାରେ ଡକେଇତ ରହନ୍ତି ବୋଲି ମୁଁ ପାରୁପର୍ଯ୍ୟନ୍ତ ଭାଗିଦା କଲି । ସେ ଖାଲି ଡେଣାଫୁଲେଇ ବାହାଦୁରି ଦେଖେଇଲେ !

ଆମେ ପଡ଼ିଗଲୁ ଚନ୍ଦନା ବାରୁଡ଼ରେ । ସେ କୁଆଡ଼େ ନାମଜାଦା ଡକେଇତ—ସ୍ଲେଟ-ଲୋକ—ନାଲିଏକ ଜନ୍ତୁ ସେଇଟା—ହି, ହିହି······

ସେ ଖାଲି ପାଗଳୀ ପରି ହସିଲା । ଆଖିରୁ ରାଗରେ ଲୁହ ଝରି ଯାଉଥାଏ । ସେ କାନ୍ଦୁଥାଏ କି ହସୁଥାଏ କହିହେବ ନାହିଁ । ପ୍ରଳାପ କଲାପରି ଝାଙ୍କି ହେଉଥାଏ । ଦାନ୍ତ କଡ଼ମଡ଼ କରୁଥାଏ—

"ତା' ସାଙ୍ଗରେ ଆମେ ଲଢ଼ିଲୁ । ସେ ଖୁବ୍ ଲଢ଼ିଲେ । ତାଙ୍କୁ ସେ ଛେଳିପରି ବାନ୍ଧି ପକେଇଲା । ମୁଁ ତାଙ୍କ ଆଖିଆଗରେ ପାରୁପର୍ଯ୍ୟନ୍ତ ଲଢ଼ିଲି । ପାଟିକଲି, ଛୁରୀଧରି ଲଢ଼ିଲି । ତାକୁ ଗୋଇଠା ମାରିଲି । ତା' ଉପରେ ଛେପ ପକେଇଲି । ସେଇଟା ଜଙ୍ଗଲି ଜନ୍ତୁଟାଏ । ମୁଁ ଆଉ ପାରିଲିନାହିଁ; କେତେବେଳେ ମୁଁ ବେହୋସ ହୋଇ ପଡ଼ିଗଲି । ମୁଁ ଚେତା ପାଇଲା ବେଳକୁ ସେ ସେଇଠି ନାହିଁ—ମୁଁ ସେ ଗୁପ୍ତି ଛୁରୀ ଧରି ଚିତ୍କାର କରି କରି ତାକୁ ଡାକିଲି । ଦୌଡ଼ିଲି ଚାରିଆଡ଼େ । ସେଇଟା ଗୋଟାଏ ଅମଣିଷ ଡରକୁଳା ଜନ୍ତୁ !"

"ମୁଁ ମୋ ସ୍ୱାମୀଙ୍କ ଉପରେ ଆସି କାନ୍ଦି କାନ୍ଦି ଅଜାଡ଼ି ହେଇ ପଡ଼ିଲି । କାନ୍ଦିଲି ଅନେକ । ମୋତେ ହଠାତ୍ ଲାଗିଲା ମୁଁ ଗୋଟାଏ କାକର ସାପକୁ କୁଣ୍ଢେଇ ଧରିଚି । ମୁଁ ଘୁଞ୍ଚିଆସି ତାଙ୍କ ମୁହଁକୁ ଚାହିଁଲି । ସେ ମୋତେ ଜମା ଚାହୁଁ ନଥାନ୍ତି । ମୁଁ ପାଦ ଧରି ଅନେକ ମୁଣ୍ଡ ପିଟିଲି । ମୁଁ ଜାଣିଲି ସେ ମୋତେ ତ୍ୟାଗ କରିଦେଲେ । ତାଙ୍କ ଆଖିରେ ମୋର ଆଉ ଇଜ୍ଜତ ନାହିଁ, ଚରିତ୍ର ନାହିଁ । ମୁଁ କଳଙ୍କିନୀ !···ନାଲିଏକ, ଇଡ଼ିଅଟ୍, ମୂର୍ଖ, ଦେକୁବ ଶାଲା କାଓ୍ୱାର୍ଡ !! ମୁଁ ସେ ଗୁପ୍ତିଛୁରୀ ଗୋଟେଇ ଆଣି ଦଉଡ଼ି କାଟିଦେଲି । ନୈହୁରି ହୋଇ

କହିଲି ମୋର କିଛି ଦୋଷ ନାହିଁ, ମୋର ଆସ୍ପୃହା ନାହିଁ, ମୋତେ ଦୟାକର । ମୋତେ ସେମିତି ଚାହଁନାହିଁ । ମୋତେ ବରଂ, ବରଂ···ଏଇ ନିଅ ଛୁରି, ନିଜ ହାତରେ ହତ୍ୟାକର । ଇଜ୍ଜତ ରକ୍ଷିବାକୁ ବହୁ ପୁରୁଷ ଏମିତି ହତ୍ୟା କରନ୍ତି—ତୁମେ ହତ୍ୟା କର ।"

ଶୂନ୍ୟକୁ ଚାହିଁ ସେ ଦୀର୍ଘଶ୍ୱାସ ଛାଡ଼ିଲା—କିଛି ଫଳ ହେଲାନାହିଁ, ପଥର ତରଳିଲା ନାହିଁ ! ସେ ପାପ ଆଖି ଯୋଡ଼ାକ ସେମିତି ଅଶ୍ଳୀଳ ଦୃଷ୍ଟିରେ ଚାହିଁରହିଲେ । ମୁଁ···ମୁଁ ସେ ଲୋକଟାକୁ ତତ୍‌କ୍ଷଣାତ୍ ଭୟଙ୍କର ଘୃଣା କଲି । ମୁଁ ବାରମ୍ବାର ଚିତ୍କାର କଲି, "ସେମିତି ଚାହଁନାହିଁ···ମୁଁ କହିଦେଉଚି···ସେମିତି ଚାହଁନାହିଁ···"ମୋ ଅଜାଣତରେ ମୁଁ ପାହୁଣ୍ଡେ ପାହୁଣ୍ଡେ ପାଖେଇ ଯାଉଥିଲି । ମୋ ହାତରେ ସେ ଦାନ୍ଥିଆ ଗୁପ୍ତି···ମୋ ଦେହ ଥରିଲା । ମୋତେ ଚତୁର୍ଦ୍ଦିଗ ଅନ୍ଧାର ଦିଶିଗଲା । ମୋ ମୁଣ୍ଡ ଭିତରେ କ'ଣ ସବୁ ଫେଣ ଗଜ ଗଜ ହୋଇ ଉଠୁଥିଲା । ମୁଁ ଚେତାହରା ସାମ୍ନାକୁ ପଡ଼ିଗଲି···ସେଇ ଶେଷ···

ହଁ···ହଁ···ହୋଇ ସେ ଗୁଡ଼ାଏ କାନ୍ଦିଲା । ପୁଣି ଠପ୍‌କରି ରହିଗଲା । ଏଡ଼େଟାମାନ ଆଖିକରି ଶୂନ୍ୟକୁ ଚାହିଁ କହିଲା—

—"ମୁଁ ଆଖି ଫିଟେଇ ଚାହିଁଲା ବେଳକୁ ତାଙ୍କ ବୁକୁରେ ଗୁପ୍ତିଟା ସମ୍ପୂର୍ଣ୍ଣ ପଶିଯାଇଚି ।" ସେ ମୁହଁ ଘୋଡ଼େଇ ଫୁଲି ଫୁଲି କାନ୍ଦିଲା ।

"ଆଶ୍ଚର୍ଯ୍ୟ ! —ଏଥିରୁ ତା'ହେଲେ କୋଉଟା ସତ !" ମେଘ ଢୁଲୁକିଲାବେଳେ ବଜାଖି ବଡ଼୍ ବଡ଼୍ ହେଲାପରି ପଚାରିଲା । ହାତକୁ ହାତ ଘଷି ସେ ଚାହିଁଲା ମାଷ୍ଟ୍ରଙ୍କ ମୁହଁକୁ । ବୁଢ଼ା ବିଚରା କିଛି ବୁଝିପାରୁ ନଥିବାରୁ ତାକୁ ଆମୋଦ ଲାଗିଲା । ଭାରି ବଢ଼ିଆ ଲାଗୁଛି କହି ସେ ଦେଉଏ ବୁଲିଗଲା । ବର୍ଷାକୁ ଚାହିଁ ତାଳି ମାରିଲା । ପାଟି ଘୁଆଦେଇ କହିଲା, "ମୋତେ ଉଭୟ ସତପରି ଲାଗୁଛି !"

ମାଷ୍ଟ୍ର ଜଣକ ସେମିତି ବହଳ ହୋଇ ଚାହିଁଥାନ୍ତି ଅନ୍ୟମନସ୍କ । ଅଳ୍ପ ବିଦ୍ରୂପ କଲାପରି କହିଲେ—ସତ କ'ଣ ? ମିଛ ପୁଣି କ'ଣ ?—ମଣିଷ ପାଇଁ ସତ୍ୟର ଆବଶ୍ୟକତା କ'ଣ ? ଆଜି ଶୁଣ, କ'ଣ ଘଟିଲା ।

"ଆମ ପାଖ ଲୋକେ ମୋ'ର ଭଲ ଏ ବିଷୟର ଅଲକ୍ଷ୍ମ ପାଉନାହାନ୍ତି । ଜଣକ ଘରେ ଗୁଣିଆଟିଏ ଅଛି । ସେ ମଲା ଲୋକଙ୍କୁ ଡାକଲେ ସେମାନେ ଆସି ଜଣକ ଦେହରେ ପ୍ରବେଶ କରିଯିବେ । ତାକୁ ପଚାରିଲେ ସବୁ ସତକଥା କହିଯିବେ ।

"ଆଚ୍ଛା ?"

"ଆଜି ସକାଳଓଳି ଉଜନରଙ୍ଗର ମୁରୁଜରେ କୋଠି କାଟି ମନ୍ଦାରଫୁଲ ଥୋଇ ସେ ତାକୁ ଡାକିଲା । ଗୋଟାଏ ମାଇକିନିଆକୁ କାଳସୀ ଲଗେ । ତା'ର ଭିତରେ ସେ ଟୋକା ପ୍ରବେଶ କଲା । ଗୁଡ଼ାଏ ସମସ୍ତ ଗାଉଁ-ଗାଉଁ ଗର୍ଜିଲା । ତା'ପରେ ତା' ଆଖି ଖୋସିହୋଇଗଲା । ସେ ଥରିଲା । ଗୁଡ଼ାଏ ଝୁଣି ହେଲା ଆଉ ଚେତାହରା ପଡ଼ିଗଲା ।

ଗୁଣିଆ ପଚାରିଲା—ଆସିଲୁ ?

ମଲ୍ ମଣିଷର ସ୍ୱରଭଳି ଶୁଭିଲା—'ହଁ' ।

ଗୁଣିଆ କହିଲା—''ତୁ ଯାହା ଜାଣିଚୁ ସବୁ କହିଯା ।''

ସମସ୍ତେ ସ୍ତବ୍ଧ ହୋଇ ରହିଥାନ୍ତି । ପିଲାଏ କେତେବେଳୁ ଖସି ପଳେଇଥାନ୍ତି । ସେ ଥରେ ଫଡ୍ ଫଡ୍ ହାତଗୋଡ଼ ଛାଟିଲା । ତା'ପରେ କହିଲା—

"ମୋତେ କେହି ମାରିନାହାନ୍ତି । ମତେ କଏ କାହିଁକି ମାରିଥାନ୍ତା—ମୁଁ ସହିପାରିଲିନାହିଁ ! ସେ ମାଇକିନିଆ ପାଇଁ ପ୍ରାଣ ହାରିଦେଲି । ସେ ମୋତେ ଛାଡ଼ି ଚାଲିଯିବାରୁ ମୁଁ ସହିପାରିଲି ନାହିଁ..."

''କିରେ ତୁ ପରି ତା' ସ୍ୱାମୀ—ସେ ତତେ କେମିତି ଛାଡ଼ିଗଲା !''

''ଆମେ ଗୋଟେ ଡକେଇତକୁ ଭେଟିଲୁ ।...ସେ ମୋ ମାଇପକୁ ନବାକୁ କହିଲା... । ମୁଁ ତା' ସାଙ୍ଗରେ ଲଢ଼ିଲି...ମୁଁ ତାକୁ ପାରିଲିନାହିଁ । ସେ ମୋତେ ବାନ୍ଧି ପକେଇଲା ।... ସେ ମୋ'ଠୁ ବଳୁଆ ହେଲାରୁ ଏ ମାଇକିନିଆ ତାକୁ ଆଉଜିଗଲା ବୋଲି ମୁଁ ଭାବିଲି... । ତାକୁ ମୁଁ ଆଉ ଦେଖିଲିନାହିଁ । ସେ ଡକେଇତ କ'ଣ ଭାବି ମୋ ଦଉଡ଼ି କାଟି ମତେ ମୁକୁଳେଇଦେଲା । ତା' ଉପରୁ ଟହେଟହ ହସି ଧାଇଁପଳେଇଲା । ମୁଁ ଗୋଡ଼େଇଯାଇ ଅଧ ବାଟରେ ଅଟକିଗଲି । ମୋତେ ଶୁଭିଲା ଦୁଇଜଣ ଧାଇଁ ଚାଲି ଯାଉଥାନ୍ତି । ମୁଁ ସେ ମାଇକିନିଆକୁ ମୋ ରକ୍ତ-ନଳୀ କରିଥିଲି । ସେ ଶେଷକୁ ଆଉଜଣକୁ ଆଦରି ଚାଲିଯିବ—ଏକଥା ମୁଁ ସହିପାରିଲିନାହିଁ । ମାଇପଟାକୁ ସମ୍ଭାଳି ପାରିଲିନାହିଁ, ଧିକ୍ ମୋତେ ! ଗୋଟାଏ ଡକେଇତକୁ ମାରି ତାକୁ ଉଦ୍ଧାରି ପାରିଲି ନାହିଁ—ଧିକ୍ ମୋତେ ! ମୋତେ କାନ୍ଦମାଡ଼ିଲା ଏମିତି ଧିକ୍କାରରେ । ଲୁହ ବୋହିଯିବା ଆଗରୁ ମୁଁ ନିଜ ଛୁରୀ ମୋ ଛାତିରେ ଭୁସିଦେଲି । ମୋ ଆଖିକୁ ଅନ୍ଧାର ମାଡ଼ିଯିବାବେଳେ ମୋତେ ସେ ମାଇକିନିଆର ଲୁହ ସରସର ମୁହଁ ଦିଶିଗଲା । ମୁଁ ସେ ଦୋଚାରୁଣୀକୁ ଛେପ ପକାଇବାକୁ ବେଳ ପାଇଲିନାହିଁ—ଓଃ, ମୋତେ ଏ ଅନ୍ଧାରରୁ ମୁକୁଳାଅ ! ମୁଁ ରୁନ୍ଧିହେଇ ଯାଉଚି...ଓଃ..." ସେ ଗର୍ଜିଲା ଭୀଷଣ ଯନ୍ତ୍ରଣାରେ ।

ଗୁଣିଆ ପାଣି ଚଳେ ତା' ମୁହଁକୁ ଛାଟିଦେଇ କହିଲା, "ଯାଃ, ଯା ଚାଲିଯା, ଯା ।"

କାଳସୀ ଲାଗିଥିବା ମାଇକିନିଆ ଜଡ଼ସଡ଼ ହେଇ ଉଠି ଖୁବ୍ ହାଲିଆ ହେଲାପରି ବେଳାଏ ପାଣି ପିଇ ସାଷ୍ଟମ ହେଲା । ଗୁଣିଆ ଚାହିଁଲା ଆମମାନଙ୍କ ମୁହଁକୁ । କହିଲା, ''ମଣିଷ ଯିନା ମିଛ କହେ, ଭୂତପ୍ରେତ ମିଛ କହନ୍ତିନାହିଁ । କ'ଣ ପ୍ରକୃତ ଘଟଣା ଶୁଣିଲେ ତ ସମସ୍ତେ !''

ସେଇଠୁ ଚାଲିଆସି ମୁଁ ବହିଲା ହୋଇ ଚାହିଁ ରହିଛି ମଣିଷକୁ; ତା'ର ଜୀଅନ୍ତା ଆଉ ମରନ୍ତା ରୂପକୁ । ତା'ର ଛନ୍ଦ-କପଟରେ ଲଟପଟ ହେଉଥିବା ସ୍ୱାର୍ଥକୁ ।

"ତା'ହେଲେ ତ ଏ ପ୍ରେତ କଥାଟା ହିଁ ଶେଷକଥା ନା କ'ଣ ?"—ପଚାରିଲା ବଳାସୀ ।

ତା'ମନବୈତନ ସେଇ ମାଷ୍ଟ୍ରଙ୍କ ଉପରେ । ଏଣୁ ତା' ପଛରୁ ଯେତେବେଳେ ଶୁଭିଲା 'ନା', ସେ ଚମକ ଚାହିଁଲା । ମାଷ୍ଟ୍ରେ ମଧ୍ୟ ଚମକ ଚାହିଁଲେ ।

ସେ ଏକବସ୍ତ୍ରୀ ଲୋକଟି ବର୍ଷାଆଡ଼େ ଚାହିଁରହିଥାଏ । ସେଇ କହିଲା 'ନା' !—କେମିତି ? ସେ କ'ଣ ଆଉ କିଛି ଜାଣେ ?

ବଜାଣ୍ଡ ଉଠିପଡ଼ି ସେ ଲୋକର ଆଖିକୁ ଅନେଇଲା—କହିଲା, "ଆହେ ଭାଇ ! ଏତ କ'ଣ ଆଉର ଅଦ୍ଭୁତ ହେବାକୁ ବସିଲାଣି—ତୁମେ ଆଉ କ'ଣ ଜାଣିଛ କି ?"

ସେ ଏକବସ୍ତ୍ରୀ ମଣିଷ ମାଷ୍ଟ୍ରଙ୍କୁ ଚାହିଁ ପଚାରିଲା—"ଆଚ୍ଛା, ଥାନାରେ ଏକଥା କିଏ ଖବର ଦେଇଥିଲା ?"

"ଗୋଟାଏ କାଠୁରିଆ—ସେ କାଠ କାଟିବାକୁ ଯାଇ ପ୍ରଥମେ ସେ ଲୋକର ମୁର୍ଦାର ଦେଖି ଏକା ନିଃଶ୍ୱାସରେ ଦୌଡ଼ି ପଳେଇ ଆସିଥିଲା ଥାନାକୁ ।"

"ମୁଁ ସେଇ କାଠୁରିଆ···"

ଏ ଦୁହେଁ ତା' ପାଖରୁ ପାଦେ ଲେଖା ଘୁଞ୍ଚିଗଲେ ।

"ମୁଁ ସବୁକଥା ଥାନାରେ କହିନାହିଁ—ମୁଁ କିନ୍ତୁ ସବୁ ଦେଖିଛି !" ଏତିକ କହି ସେ ମୁହଁ ଫେରେଇ ଏମାନଙ୍କୁ ଚାହିଁଲା । "ବାବା, କି ସେ ଭୟାର୍ତ୍ତ ଆଖି ! ତାକୁ ବଜାଣ୍ଡ ନେଇ ବସାଇଲା, ଟିକେ ସୁସ୍ଥକଲା । ତା'ପରେ ତାକୁ ଭରସା ଦେଲାପରି କଥା ଆଦାୟ କରିବାକୁ କହିଲା—"ଜଣାଗଲା, ସତ ସବୁ ଏଇଠି । ସେ ନିଜେ ଆଖିରେ ଦେଖିଛି, ତା'ଠୁ ବଳି ଆଉ ସାକ୍ଷୀ କିଏ ଅଛି ? ତା'ହେଲେ ଭାଇ ଏସବୁ କୌଣସିଟା ସତ ନୁହେଁ !"

"ନା, କୌଣସିଟା ସତ ନୁହେଁ··· । ମୁଁ ପ୍ରଥମେ ମାଇକିନିଆଟିଏ କାନ୍ଦିବାର ଶୁଣିଲି । ଅନ୍ଧେ ପାଖେଇଲି ମୁଣ୍ଡିଆ ଉପରଆଡ଼ୁ । ଗୋଟାଏ ହୁଡ଼ା ପଛରେ ଲଇବଣ । ସେଇଠୁ ମୁଁ ତଳକୁ ଚାହିଁଲି । ଯାହା ଦେଖିଲି ମୁଁ ବିଶ୍ୱାସ କରିପାରିଲିନାହିଁ ।

ସେ ମାଇକିନା ବାପ୍ୟାଣୀପରି ସ୍ୱାମୀ' ପାଖରୁ ତା' ପାଖକୁ ଧାଉଁଛି—କେହି ତାକୁ ଅଣ୍ଡ୍ରା ଦଉନାହିଁ ! ତା' ସ୍ୱାମୀ କହୁଛି—"ତୁ କିଏ ମୁଁ ଜାଣେ ନାହିଁ । ତୁ ଏ ମାଇକିନିଆକୁ ଥରେ ଧରିସାରିଛୁ, ତୁ ତାକୁ ନେଇପାରୁ !"

ଏପଟେ ଡକେଇତ ଖାଲି ଟହଟହ ହସୁଛି । ମଝିରେ ଲୋଟିପଡ଼ି ସେ ମାଇକିନାଟି କାନ୍ଦୁଛି ଭାରି ନିଆଶ୍ରୀ ହୋଇ !···ଛି ଛି···କି ଅଫସାଣ୍ଡ କଥା ! ମୁଁ ଖଲଖଲ ହଉଥାଏ । ହେଲେ ଡକେଇତକୁ ଦେଖି ମୋର ହାଲୁକ ଶୁଖିଯାଉଥାଏ ।

ତା' ସ୍ୱାମୀ ଆସି ସେ ମାଇକିନାଟା ଉପରେ ପାଦ ରଖି କହିଲା—"ମୁଁ ଏଇଟା ପାଇଁ ମୋ ଜୀବନ ଉପରେ ଖେଳିପାରିବିନାହିଁ । ତୁ ଚାହୁଁଛୁ ତ ନେଇଯା, ନହେଲେ ଯାହା ମନ ତା'କର ।"

ଡକେଇତ କହିଲା, "ଆରେ ମାଇକିନାଟାକୁ ଏମିତ କାହିଁକି କୋର୍ ଦେଖଉଚୁ—ସେ ତ ସହଜେ ଦୁର୍ବଳ !"

ସେ ମାଇକିନା ସେଇଠୁ ଫାଉଁକିନା ସାପପରି ଲଙ୍ଗୁଡ଼ରେ ଠିଆ ହେଲା । ହସିଲା ଯେ—ଯାହାର ହେଲେ ମନ୍ତ୍ର ଥରିଯିବ । କହିଲା, "ଛି ଛି, ମୋତେ ଦୁର୍ବଳ କହୁଛୁ, ତୋତେ ଲାଜ ନାହିଁ । ତୁମେ ଯୋଡ଼ାକଯାକ ଅମରଦ । ତୁମର କଲିଜା ନାହିଁ । ଡରୁଆ ··ପ୍ରାଣ ଭୟରେ ଲଙ୍ଗୁଡ଼ ଲୁଚେଇଛ—ତୁମେ ଯୋଡ଼ାକଯାକ କୁକୁର । ମୁଁ ତୁମ ମୁହଁରେ ଛେପ ପକଉଛି—ତୁମେ ଲଢ଼ିବାକୁ ଡରୁଛ—କି ମରଦ ତମେ । ଛି, ଥୁ—"

ଆଗେ ଚନ୍ଦନା ଫାଉଁକିନା କାଢ଼ିଲା ତା' ଜୀଭକାଲ । ତା' ସ୍ୱାମୀ କାଢ଼ିଲା ଛୁରୀ । ସେମାନେ ଦୁହେଁ ଠକ୍ ଠକ୍ ଥରୁଥିବା ମୋତେ ଦିଶୁଥାଏ । ଦୁହେଁ ଶୁଖିଲପତ୍ର ଉପରେ ଗୋଡ଼ ଖସି ପଡ଼ିଯାଉଥାନ୍ତି, ବଳକଲରେ ପୁଣି ଉଠି ଲଢ଼ୁଥାନ୍ତି । ଗୋଟାଏ କଣ୍ଟା ଗଛର ଥୁଣ୍ଟା ପାଖରେ ସେ ମାଇକିନା କଲକଲା ହସରେ ଲୋଟିପଡ଼ୁଥାଏ । ସେଇ ଗଛଟାକୁ ମୁଁ ନିଜେ କାଟିଛି, ମୁଁ ଜାଣେ—ସେ ଜାଗା ।

ସେ ଦୁହେଁ ବୁଲି ବୁଲି ଠିକ୍ ମୋ'ର ସେ ଝୁଡ଼ାତଳକୁ ଚାଲି ଆସିଲେ । ସେ ମରଦଟା ଲେଉଟି ପଡ଼ିଲା । ଡକେଇତ ତାକୁ ଆଉ ଟିକିଏ ସମୟ ଦେଲାନାହିଁ । ତା' ହାତ ଥରୁଥାଏ । ଗୋଡ, ଦେହ, ମୁଣ୍ଡ ଠକ୍ ଠକ୍ ହୋଇ ଥରୁଥାଏ । ସେ ତା' ବୁକୁରେ ବସେଇଦେଲା ଛୁରୀ ।

ମୁଁ ସେଇଠି ମୁହଁ ବୁଲେଇ ଆଣି ଚିପେଇ ଚିପେଇ ପାର ହୋଇଗଲି । ଯେତେ ଜୋର୍ ପାରିଲି ଦୌଡ଼ିଲି—ଆସି କହିଲି ଥାନାରେ ।

ବଳାଖି କଟମଟ ଚାହିଁଥାଏ କାଠୁରିଆ ମୁହଁକୁ । ସେ ଆଖି ଫେରେଇଦେବାରୁ ଅଳ୍ପ ହସିଦେଲା । ତଳକୁ ମୁହଁ ପୋତି କିଛି ସମୟ କ'ଣ ଭାବିଲା ।

ମାଷ୍ଟ୍ରେ କହିଲେ, "କି ବିକଟ ସ୍ୱାର୍ଥ ମଣିଷଟାକୁ ଜନ୍ତୁଠାରୁ ଆହୁରି ହୀନ କରିଦେଲା । ଏତେ ସ୍ୱାର୍ଥପର ଜୀବଟାଏ ବଞ୍ଚିବ କେମିତି ?"

ବଳାଖି ତା' ଶକ୍ତମତେ କଥାରେ ଜୋର୍ ଦେଇ ଉତ୍ତର ଦେଲା, "ସ୍ୱାର୍ଥପର ନହେଇ ଏଇଠି ବଞ୍ଚିବ କେମିତି ? ନିଜେ ନ ଲଢ଼ିଲେ ମୋ ପାଇଁ କିଏ ଲଢ଼ିବ ? କୌଣସି ପ୍ରକାରେ ବଞ୍ଚିବାକୁ ହେବ । ଏଠି ଖାଇବା ପିନ୍ଧିବା ପଶ୍ନ ସହଜ ନୁହେଁ !"

ମାଷ୍ଟ୍ରଙ୍କ ବିହ୍ୱଳଭାବ ଆହୁରି ବଢ଼ିଗଲା । ଏ ଚୋର୍‌ଙ୍କର କଥାପାଇଁ ତାଙ୍କର ଉତ୍ତର କାହିଁ ? ପାଣିର ତେଜ ଟିକିଏ କମି ଆସିଥାଏ—ତଥାପି ବର୍ଷା ଗୁଳିଥାଏ ଝପ ଝପ । ତୋ'ହେଲେ ସଂସାର ଏଇଆ, ମଣିଷ ଏଇଆ, ସ୍ୱା'ର କୌଣସି ଉଦ୍ଧାର ନାହିଁ !

ଏତିକିବେଳେ ଗୋଟିଏ କଅଁଳା ପିଲା ଖୁଣ୍ଟି ଆରପଟୁ କାନ୍ଦିଉଠିଲା । ତିନିହେଁ ଚମକି ପଡ଼ିଲେ । ଏଠି, ଏ ଜାଗାରେ ଏମିତି ସ୍ଥଳେ ଛୁଆଟିଏ କାହୁଁ ଆସିଲା ? ମନେହେଲା ବର୍ଷାରେ ଭିଜିଥିବା ଯେ କୋଠା ଯେମିତି କାନ୍ଦିଉଠିଲା । ହୋଇପାରେ ଏଇଠି ଶିଶୁହତ୍ୟା

ହୋଇଯାଇଛି । ତା'ର ଆତ୍ମା ଏମିତ ବଳପୂଚ୍ଛ । ମାଷ୍ଟ୍ରଙ୍କ ପିଠିରେ କୁଳ କୁଳ ଶୀତ ଅକାଡ଼ ହେଉଥାଏ; ବର୍ଷାବତାସୀ ଝାଙ୍କୁଥାଏ ପୂର୍ବଭଳ ।

ପ୍ରଥମେ ବଜାଷ୍ମ କୁଦାମାର ଗଲ ଦେଖିବାକୁ । ତା'ର ଗୃଶଦଉଡ଼ିକଣ୍ଠା ଜୀବନରେ ଅନେକ ସାହସ । ସେ ପିଲ୍ଟି କନ୍ଦୁ ଆହୁର ଜୋର୍‌ରେ କାନ୍ଦଲ । ମାଷ୍ଟ୍ରେ ଧାଇଁଯାଇ ପହଞ୍ଚିଲେ । କାଠୁରିଆ ପହଞ୍ଚିଲା ତାଙ୍କ ପଛେ ପଛେ । ଦେଖିଲାବେଳକୁ ସତକୁ ସତ ପିଲ୍ଟିଏ ଖଣ୍ଡିଏ କନା ଉପରେ ଶୋଇଛି ଗୋଟିଏ କୋଣରେ । ବଜାଷ୍ମ ସେ ପିଲ ଉପରୁ ଦାମୀ କୋଟ୍ ଖଣ୍ଡେ ଆଉ ଭଲ ଲୁଗା ଖଣ୍ଡେ ଓଟାର ନେଇ ଜାକଧରିଛି ।

"ହେ, ହେ, ଏତେ ନିଷ୍ଠୁର ହ' ନା, ଏତେ ସ୍ୱାର୍ଥପର ହ, ନା ।" କହିଲା କାଠୁରିଆ । ମାଷ୍ଟ୍ରେ ସେ ରଡ଼ିଗୁଡ଼ୁଥିବା ପିଲ୍ଟିକୁ କୋଳକୁ ଟେକିନେଲେ ।

କାଠୁରିଆ ବଜାଷ୍ମର ଡେଣା ଧରି ପ୍ରତିରୋଧ କଲା—"ଏମିତ କ'ଣ ସ୍ୱାର୍ଥପର ହୁଅନ୍ତି ?"

ସେ ଦାନ୍ତ ଦେଖେଇ ଖିଙ୍କାରି ଆସିଲା । କହିଲା, "ଆବ୍‌ବେ ରଖିଥା ତୋ' ଉପଦେଶ ! ମୁଁ ଯଦ ମୋ ପିଠି ଘୋଡ଼େଇବାକୁ ସ୍ୱା'ଠୁ ଲୁଗା କାଢ଼ିନେଲି କ'ଣ ଭାସିଗଲା ? ମୁଁ ତ ତା' ପ୍ରାଣ ନେଇନାହିଁ ! ଏ ବେଧପିଲର ବାପ ମା'ଠୁ କ'ଣ ମୁଁ ବେଶି ନିଷ୍ଠୁର ! ସେମାନେ ତ ଏ ପାଗରେ ଗାଡ଼ିରେ ଆସି ଏ ଅପନ୍ତରାରେ ସେ ପିଲାଟାକୁ ପକେଇ ଦେଇଗଲେ, କାଏ ବାଟୋଇ ଗୋଟେଇନେଉ, ନହେଲେ ବିଲୁଆ କୁକୁର ଲୁଗା ଅଡ଼େଇ ତାକୁ ଗ୍ରେବେଇ ଖାଇଯାନ୍ତୁ । ସେ ଶଳାକୁ ତୋ' ଉପଦେଶ ଶୁଣେଇବୁ ଯା ।"

ତା'ପରେ ଆହୁରି ହଂସ୍ରଭଙ୍ଗୀରେ କାଠୁରିଆକୁ ଗୃହିଁ କହିଲା, "ତୁ ଶଳାଟି କ'ଣ ଏବେ ସତ କହିଲୁ ?—ତୁ କ'ଣ ସେ ଲଢ଼େଇ ଦେଖି ପଳେଇଲୁ ? ତୁ କ'ଣ ଶେଷ ଯାଏ ସେ ମଲମଣିଷ ପାଖକୁ ଯାଇନାହୁଁ ନା ତା' ମୁଣାରୁ ଟଙ୍କା ଗ୍ରେରେଇନାହୁଁ ?"

କାଠୁରିଆ ମୁହଁରୁ ପାଣି ମରିଗଲା । ମାଷ୍ଟ୍ରେ ସେ ଚହିଁକୁ ଥିବା ପିଲ୍ଟିକୁ ଧରି ହାଁକରି ଅନେଇ ରହିଲେ ।

ବଜାଷ୍ମ ତା' ମୁହଁରେ ତୋ' କନା ଚଟକଣାଟିଏ ମାରି କହିଲା, "ଆଉ କଛ କାହାର କହିବାର ଅଛି ?—ବର୍ଷା ଟିକିଏ ଗ୍ରୁଡ଼ିଛି ! ଏ ସଂସାରରେ ସଜେ କେବଳ ନିଜପାଇଁ ଦାୟୀ । ମୁଁ ଗ୍ଲଲ ।"

କାନ୍ଦୁରା ପିଲଟାକୁ ଧରି କାଠ ମୂର୍ତ୍ତିଟାଏ ପରି ସେ ଶିକ୍ଷକଟି ଠିଆ ହୋଇ ରହିଥାନ୍ତି । ମଣିଷର ବିକଟ ରୂପ ତେର୍ ସେ ଦେଖିପାରିଥାନ୍ତି; ତୁଣ୍ଡରେ ପଡ଼ୁନଥାଏ କଥା । କ'ଣ ଅବା କୁହାଯାଇପାରେ ?

କାଠୁରିଆ କଛ ସମୟ ତଳକୁ ଗୃହିଁ ଠିଆହୋଇ ରହିଲା । ପିଲଟା କାନ୍ଦୁଥାଏ । ସେ ମୁହଁଟେକି ହାତ ପ୍ରସାରି ତାଙ୍କୁ ସେ ପିଲ୍ଟିକୁ ମାଗିଲା । ସେ ଫାଇଁକନା ଭୟରେ, କ୍ରୋଧରେ କହିପକେଇଲେ—"କ'ଣ ସ୍ୱା'ର ମାଇଁସକୁ ତୋ'ର ଲୋଭ ହେଇଗଲା ?"

କାଠୁରିଆ କିଛି କହିଲନାହିଁ । ଡବ ଡବ ଆଖିରେ ତାଙ୍କୁ ଚାହିଁଲା । ମୁହଁ ମୋଡ଼େଇ କାନ୍ଦପକେଇଲା । କହିଲା, "ମୋ ନଜର ଛ'ଟି ପିଲା । ଆଉ ଜଣେ ମିଶି ଗଲେ ମଧ୍ୟ ସେଇ ଅଭାବରେ ସେମିତ ଚଳିଯାନ୍ତା—ମଣିଷ ପିଲାଟା ବଞ୍ଚିଯାନ୍ତା !"

ତା'ର ଲୁହ ସରସର ମୁହଁଟାକୁ ଦେଖି ସେ ଶଙ୍କିଗଲେ । ଓ ତା'ହେଲେ ଏବେ ବି ଆକାଶରୁ ପାଣି ଝରୁଛି ! ବନସ୍ତରେ ଏବେ ବି ଫୁଲ ଫୁଟୁଚି ! କ୍ଷେତରେ ଫସଲ ଉଠୁଚି । ବାପଟିଏ ମାଗୁଛି ଅବୋଧ ପିଲାଟିକୁ ପାଳିବାକୁ !—ତାଙ୍କ ଭିତରେ ଓଲଟ ପାଲଟ ହେଇଗଲା ସବୁ ।

ସେ ତା' ମୁହଁ ପାଖରେ ପିଲାଟିକୁ ଟେକି ଧରିଲେ । ପିଲାଟି ଚହିଁକ ଚହିଁକ କାନ୍ଦୁଥାଏ । କାଠୁରିଆ ଘାର ଅଭ୍ୟସ୍ତ ଢଙ୍ଗରେ ତାକୁ ବୁକୁରେ ଲଗେଇ ଧରିନେଲା । ପିଲାଟି କୁଁ କୁଁ ହେଇ ଚୁପପଡ଼ିଗଲା ।

ଆକାଶରୁ ଭେଲା ଭେଲା ମେଘ ଆଡ଼େଇ ହେଇଯାଉଥାଏ । ବର୍ଷା ଛାଡ଼ିଆସୁଥାଏ । ତଳକୁ ମୁଣ୍ଡପୋତ ମାଷ୍ଟ୍ରେ କହୁଥାନ୍ତି "ମୋତେ କ୍ଷମାକର ! କ୍ଷମାକର ! ମୁଁ କିଛି ବୁଝିନାହିଁ—ଏ ପାଖ ବୁଝିନାହିଁ କି ସେ ପାଖ ବୁଝିନାହିଁ । ମୋତେ କ୍ଷମାକର, କ୍ଷମାକର !"



# ଆଉ କ'ଣ ଅଛି ଡରିବାକୁ ?

"ବୁଝିଲ, ଭାଇନା ! ତୁମକୁ ଆଜି ଖୁବ୍ ବ୍ୟକ୍ତିଗତ ପ୍ରଶ୍ନଟିଏ ପଚାରିବି—କିଛି ଭାବିବ ନାହିଁ ! ଏଇ କେତେ ବର୍ଷ ହେଲା ବଡ଼ପୁଅ ସାଙ୍ଗରେ ତୁମର ସମ୍ପର୍କ କ'ଣ—ମାନେ ଏଇ ଯେବେଠୁଁ ସେ କଲେଜରେ ପଢ଼ିଲାଣି ? ଯେବେଠୁଁ ସେ ତୁମ ଜାମା ଜୋତା ପିନ୍ଧି ଚାଲିଗଲେ, ଆଉ ବାପାଙ୍କର ପିନ୍ଧିଛି ବୋଲି ବାରି ହେଉନାହିଁ ? ମୁଁ ତୁମଠୁ ଦି' ଚାରି ବର୍ଷ ସାନ ହେବି ବୟସରେ; କିନ୍ତୁ ଆଉ କାହା ଆଗରେ ମୋ ମନ ଭିତରର ଗୋଟାଏ ଗହନ ଅନୁଭବ ଫିଟେଇ କହିପାରୁନାହିଁ—କାରଣ ଏତେ ମେଳ ଆଉ କାହା ସାଙ୍ଗରେ ପଡ଼ୁନାହିଁ । ମୋତେ ଏଇ କେତେ ଦିନ ହେଲା ଭାରି ଅଡ଼ୁଆ ଲାଗୁଛି । ବାବୁଲିର ପଚାଶଟା ଦିନକୁ ଚାହିଁଦେଲେ ଆଗଭଳି ଆଉ ପିଠି ଥାପୁଡ଼େଇ ଦେବାକୁ ନିଃସଙ୍କୋଚ ହାତ କାଢ଼ିପାରୁ ନାହିଁ । ଆଗଭଳି ତା' ଆଖି, ତା' ଭୂରୁ, ତା' ଗାଲ ସବୁ ତା' ବୋଉର ନକଲ ପରି ଦିଶୁଛି ସତ; କିନ୍ତୁ ତା' ଦେହରେ ଆଉ ଗୋଟାଏ କ'ଣ ଫୁଟି ଦିଶୁଛି, ଯାହା ଏଥିପୂର୍ବେ ନଥିଲା । ମୁଁ ନିଜକୁ ନିଜେ ଖୁବ୍ ବୁଝେଇ ଲାଗିଛି—ଆରେ, ଏଇ ପିଲା ସେଦିନ ଲଙ୍ଗଳା ହୋଇ ତୋ' କାନ୍ଧରେ ବସୁଥିଲା, ଗୋଡ଼ ବାଡ଼େଇ କାନ୍ଦୁଥିଲା । ସ୍କୁଲକୁ ପଠା କାଖେଇ ଧରି ଖରାଦିନ ସଞ୍ଜବେଳେ ତୁ ଶୁଆଉଥିଲୁ । ଏଇ ସେଇ, ଏଇ ସେଇ ! ଏଇଲାଗେ କ'ଣ ଟିକିଏ ବଦଳି ଯାଇଛି ବୋଲି ସେ କଣ ବାବୁଲି ନୁହେଁ ? ହେଲେ ଭାଇନା, ମୋର ଆଉ ଧ୍ରୁବ ପାଉ ନାହିଁ । କ'ଣ ସବୁ ଭୁଷୁଡ଼ି, ଭାଙ୍ଗି ପଡ଼ିଲା ପରି ଲାଗୁଛି । ମୁଁ ଏବେ ଜୀବନରେ ଏମିତି ଗୋଟାଏ ମୋଡ଼ ପାଖରେ ଠିଆହୋଇଛି ଯେ, ସେଇଠୁ ମୁଁ ବୁଝିପାରୁ ନାହିଁ ନିଜକୁ, ସଂସାରକୁ ଏବଂ ଅନାଗତ ଭବିଷ୍ୟତକୁ ।"

ଖୁବ୍ ନିସ୍ତବ୍ଧ ଅପରାହ୍ନ ସମସ୍ତ । ଡାକବଙ୍ଗଳାରେ ଦୈବାତ୍ ନୁର ଭଞ୍ଜ ସାଙ୍ଗରେ ଦେଖା ହୋଇଗଲା । ପଚାଶ ବର୍ଷର ପୁରୁଣା ସାହି ସାଙ୍ଗ—ହେଲେ ସେତେବେଳକୁ ତା' ସାଙ୍ଗରେ ଦଶ ବାର ବର୍ଷ କାଳ ଦେଖା ହୋଇ ନଥିଲା । ସେ ଆଗ ଅପେକ୍ଷା ଅନେକ ବଢ଼ିଯାଇ-ଥାଏ । କୋରାପୁଟର ପୁରୁଣା ଗଛ ଆଉ ପାହାଡ଼ମାନଙ୍କ ନିକାଞ୍ଚନ ଗହଣରେ ସେ ଶୀର୍ଣ୍ଣ ହୋଇଯାଇଥାଏ ହୁଏତ ! ସେଇଠି ସେ ବୋଧହୁଏ ଚାଳିଶା ଚଷମା ପିନ୍ଧିଛି । ତା' ମୁହଁ ଉପରେ ବୋଝେଇ ହୋଇ ଯାଇଛି ସରୁ ସରୁ ଗାର । ମୁଣ୍ଡରେ ଶୁଖିଲା ପାଲଧୁଆ ପଙ୍କପରି ପାଭଲ ଟାଆଁସା ଧଳା ବାଳ । ମୋତେ ଦେଖି ସେ ଗହ ଗହ ହେଲା କିଛି କାଳ । ତା' ଭିତର ଓଲଟପାଲଟ ହେଇଗଲା । ସେ ଅନେକ କଥା ଗପିଗଲା । ସେଥିରୁ ବୁଝିଲି ଯେ

ତା' ସ୍ତ୍ରୀର ଦେହ ଭଲ ରହୁନାହିଁ । ତା' ବ୍ଲଡ଼ ପ୍ରେସର ବଢ଼ିଯାଉଛି । ଖାଇଲେ ହଜମ ହେଉନାହିଁ । ରାତିରେ ନିଦ ହେଉନାହିଁ । ତା' ଝିଅଟି ଖୁବ ସୁନ୍ଦର; ଭଲ ପଢ଼େ । ଘରର ସବୁ କାମ କରେ । ପୁଅର ଏ ବର୍ଷ ବି.ଏ. । କିନ୍ତୁ ତାହାର ପାଇଁ ନୁରର ସବୁପ୍ରକାର ଦୁଶ୍ଚିନ୍ତା ।

ନୁର ପୁଅ ବାବୁଲ ଆମ ବୁବୁଠଉଁ ପାଞ୍ଚ ଛ' ବର୍ଷ ସାନ । ତାକୁ ମୁଁ ପିଲା ଦିନେ କେବଳ ଦେଖିଥିଲି । ଖୁବ କଅଁଳିଆ ସୁନ୍ଦର ପିଲାଟିଏ ହୋଇଥିଲା । ବେଳେବେଳେ ଅଝଟ ହୋଇ କାନ୍ଦୁଥିଲା; କିନ୍ତୁ ଭଲ ପାଠ ପଢ଼ୁଥିଲା ତ ! ମୋତେ ଦେଖିଲେ ଗୁରୁଜନ ମାନ୍ୟରେ ହସି ହସି ଚମତ୍କାର ନମସ୍କାର ହେଉଥିଲା ତ ! ତା' ବାପ ତାକୁ କେତେପ୍ରକାର ପାଠ ଏକାଥରକେ ପଢ଼େଇଦେବାକୁ ଚାହୁଁଥିଲା । ସେ ଚାହୁଁଥିଲା କନ୍‌ଭେଣ୍ଟରେ ପଢ଼ି ବାବୁଲ ଚମତ୍କାର ଇଂରାଜୀରେ କଥା କହି ଶିଖୁ । ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରରେ ପଢ଼ି ଏକାଥରକେ ଶୁଦ୍ଧ, ଚରିତ୍ରବାନ୍, ଭଲ ମଣିଷ ହୋଇ ବାହାରୁ । ଏଣେ କେନ୍ଦ୍ରୀୟ ବିଦ୍ୟାଳୟରେ ହିନ୍ଦୀ କିଛି ମଧ୍ୟ ଶିଖିଯାଉ । ମୁଁ ମନାକରିଥିଲି ଏବଂ ନୁର ମୋ କଥା ନ ଶୁଣିବାରୁ ତାକୁ ଗାଳିଦେଇଥିଲି । ସେ କିନ୍ତୁ ଲୋଭରେ ପୁଅଟିକୁ ସର୍ବୋତ୍ତମ ଶିକ୍ଷା ଦେବାକୁ ଯାଇ ବାରଚୁଡ଼ିଆ କରି ପକେଇଲା । ବାବୁଲ ଏଥିପାଇଁ ଟିକିଏ ଡେରିରେ ସାଧାରଣ ସ୍କୁଲ ଧାଡ଼ିକୁ ଆସିଲା; କିନ୍ତୁ ସେ ଖୁବ ଚାଲାକ ଟୋକା । ଖୁବ୍ ସମଝଦାର୍ । ଖୁବ୍ ସଚ୍ଚୋଟ ଟୋକା ବାବୁଲ । କ'ଣ ଏମିତି ହୋଇଗଲା ସ୍ତ୍ରୀ ଭିତରେ ଯେ ତା' ବାପ ଆସି ଏଭଳି ଖାଇଁ ପଡ଼ୁଛି ।

ମୁଁ ତାକୁ ହିମ୍ମତ ଯୋଗାଇବା ଢଙ୍ଗରେ କହିଲି, "ଶୁଣ ନୁର ! ପ୍ରାୟ କିଛି କାରଣ ନଥାଇ ଛନିଆଁ ହୋଇଯିବା ତୋର ଅତି ପୁରୁଣା ଅଭ୍ୟାସ । ଆମେ ସବୁ ସ୍କୁଲରେ ପଢ଼ୁଥିଲାବେଳେ, ମନେଅଛିନା, କେମିତି କଣେଇ ପଣ୍ଡା ଗୁଚ୍ଛାରେ ବେଲକାଠି ଆଖି ଖୋସି ଦେଇ ସୁଆଙ୍ଗ କରୁଥିଲାବେଳେ ତାକୁ ଦେଖି ତୁ' ସତକୁ ସତ ଭୟରେ ମୂର୍ଚ୍ଛପକେଇଥିଲୁ । ତୋର ଚେତା ବୁଡ଼ିଯିବାରୁ ଡାକ୍ତର ଡାକିବାକୁ ପଡ଼ିଥିଲା ।" ନୁର ଲାଜେଇଲା ପରି ହସିଲା ।

"ହସୁଛୁ କ'ଣ ? ଯାତ୍ରା କଡ଼ରେ ଯାଦୁବାଲା ତା' ଝିଅକୁ ଚାଦର ଘୋଡ଼େଇ ଦେଇ ଯେତେବେଳେ ଛୁରୀରେ ତା' ମୁଣ୍ଡ କାଟି ହାତ କାଢ଼ି ଆଣିଲା, ଆଉ ତା' ହାତରୁ ରକ୍ତ ଝୋପି ପଡ଼ିଲା, ତୋତେ ଝାଇଁ ମାରିଦେଇଥିଲା । ତୁଟା ଗୋଟାଏ ଏମିତି କଣ୍ଡହରଗୁରା ମନ୍ତ୍ରପାଡିଲା ମଣିଷ । ଆବେ, ତୁ ଏମିତି ସବୁ କଥାକୁ ଡରୁଛୁ କାହିଁକି ? ପୁଣି, ବାବୁଲ ଭଳି ପିଲାକୁ ଡ଼ରୁଚୁ ? ପୁଅ ବଡ଼ ହେଇଗଲେ ଆଉ ପିଲାଳିଆ ସ୍ନେହ ସିନା ରହିବ ନାହିଁ—କିନ୍ତୁ ସ୍ନେହ ତ ରହିବ । ତୁ ସେଇଟା ବୋଧହୁଏ ବୁଝିପାରୁନାହୁଁ କିମ୍ବା ସହି ପାରୁନାହୁଁ ।"

ନୁର ମୁହୂର୍ତ୍ତେ ଗମ୍ଭୀରହୋଇ ତଳକୁ ଚାହିଁଲା ।

ମୁହଁ ଟେକ କେମିତି ଗୋଟାଏ ଉଦାସ ଭଙ୍ଗୀରେ କହିଲି, "ତୁମକୁ ସବୁକଥା ଫିଟେଇ ନକହିଲେ ହୁଏତ ତୁମେ ଏଇଆ ହିଁ ବୁଝିବ ! ମୁଁ ତା'ହେଲେ କଥାଟା ଖୋଲିଖୋଲି କହିଦେଉଛି । ଶୁଣିଲି ଉତ୍ତରୁ ମୋତେ ବୁଦ୍ଧି ବଢେଇବ ।"

"ବାବୁଲଟାକୁ ମୁଁ କେତେ ଭଲପାଏ, ଆଉ କଏ ସିନା ଜାଣିବନାହିଁ, ତୁମେ ତ ଜାଣିଛ । ଏଣୁ ତାକୁ କେବେହେଲେ ପଦେ ଟାଣକଥା ମୁଁ କହିପାରିନାହିଁ । ତା' ମା' ବରଂ ତାକୁ ଶାସନ କରିଆସିଛି । ମୋର ସବୁକାଳେ ବିଶ୍ୱାସ ରହିଆସିଛି ଯେ, ବାବୁଲ ମୋତେ ଖୁବ୍ ସମ୍ମାନ କରେ, ବୋଧହୁଏ କିଛିଟା ଡରେ ମଧ୍ୟ । ସେ କଲେଜକୁ ଆସିଲା ପରେ ତା' ପାଇଁ ଥରକୁଥର ଜାମାଯୋଡ଼ ତିଆରି କରିବାକୁ ଅନେକ ପଇସା ସରୁଥାଏ । ସେଥିପାଇଁ ଅନେକ ଅସୁବିଧା ହେଉଥିଲେ ବି ମୋତେ ଖୁସି ଲାଗୁଥାଏ । ବାବୁଲ କଲେଜରେ ପଢୁଛି । ଆମ ପିଲା ଆଉ କାହାଠଉଁ ଊଣାମାନ ନହେଉ, ଏଥିପାଇଁ ସବୁମନ୍ତେ ଚେଷ୍ଟା ଚାଲିଥାଏ । ପିଲାଲୋକ—ଟିକିଏ ମନହେଲେ ସିନେମା ଦେଖିବ, ସାଙ୍ଗ ସୁଙ୍ଗରେ ଚା' ଜଳଖିଆ ଖାଇବ, ସେଥିପାଇଁ ମଧ୍ୟ ବ୍ୟବସ୍ଥା କରିହୋଇଥାଏ । ସେ କିନ୍ତୁ କେମିତି ଚଡ଼୍ଚଡ଼୍ ହେଲା ପରି, ଫିଙ୍ଗି ଲି ଫୋପାଡ଼ିଲା ପରି କଥା କହିବାର ମୋ କାନରେ ପଡ଼ୁଥାଏ । ବେଖାତିରିଂ କରି ମୋ ଆଗରେ ଦୁମ୍ଦୁମ୍ ଚାଲିଯିବାର, ଡାକିଲେ ନ ଶୁଣିବାର ମଧ୍ୟ ଥରେ ଦୁଇଥର ମୋ ଆଖିରେ ପଡ଼ୁଥାଏ । ମୁଁ ତାକୁ ମନକୁ ମନ ବୁଝେଇ ନେଉଥାଏ—'ଆରେ ଏମିତି ନ ହୋଇ ସେମିତି ହୋଇଥିବ, ଯା' ନ ହୋଇ ତା' ହୋଇଥିବ ।' ତଥାପି ମୁଁ ଏ ବେତାଳିଆ କଥାଟାକୁ ଆଉ ଏଡ଼େଇ ପାରୁନଥାଏ··· ।

"ଦିନେ ମୁଁ ପିଣ୍ଡାରେ ବସି ଖିଅର ହେଉଛି, ପାଖ ବଖରାରୁ ବାବୁଲ ଆଉ ତା' ମା'ର ତୁଣ୍ଡ ଶୁଭିଲା । କଥାର ସ୍ୱର କେମିତି ଟିକିଏ ତେଜା ତେଜା ଜଣାଗଲା । ମୋର କାନେଇବାକୁ ଇଚ୍ଛାହେଲା । —ବାବୁଲ ପ୍ରାୟ ଚିଡ଼ିଲାଭଳି କହୁଛି, 'କ'ଣ ହେଇଗଲା, ସେଇଠୁ ?'—ତା' ମା' କହୁଛି, 'ଆରେ ବାପାକୁ ସବୁ ଏଇଟା ଭଲ ଲାଗେନାହିଁ ।' —ବାବୁଲ, କହୁଛି—'ନ ଲାଗୁ ! ଏଠି କ'ଣ ବାପାଙ୍କୁ ଯାହା ଭଲଲାଗେ ସେଇଆ ସବୁ-ବେଳେ ହେଉଥିବ ? —ତାଙ୍କର ଇଚ୍ଛା ଅନୁସାରେ ସମସ୍ତେ ଚାଲୁଥିବେ ? —କାହିଁକି ?' —ମୋତେ ହଠାତ୍ ଦୁର୍ବଳ ବୋଧହେଲା । ମୋ ହାତ ନଇଁଗଲା, ଫେଣ ସାଲୁବାଲୁ ମୁହଁରେ ମୁଁ ଦର୍ପଣକୁ ଚାହିଁ ରହିଲି । ଟିକେ ତୋକ କାନେଇଲି । ତେଣିକି କେବଳ ଗରଗର କଥା, ଦୁମ୍ ଦୁମ୍ ଚାଲି ଶୁଭିଲା । ସେଇଠୁ ଉଠିଯାଇ ଘଟଣା କ'ଣ ବୁଝିବାକୁ ମୋର ପ୍ରବୃତ୍ତି ହେଲାନାହିଁ । ମୁଁ ଅନୁଭବ କଲି ଯେ ବାବୁଲ ଆଉ କୋଡ଼ପିଲା ନୁହେଁ । ସେ ଏଣିକି କ'ଣ କହୁଛି ଶୁଣିବାକୁ ହେବ । ଏକାନ୍ତରେ ତା' ମା'କୁ ଡାକି କହିଦେଲି, 'ବାବୁଲ ଯେମିତି କହୁଛି ସେମିତି କରୁନାହଁ କାହିଁକି ? ମୋ'ଠି କିଛି ଯାଏ ଆସେ ନାହିଁ ।" ତା' ମନ ଉଲ୍ଲାସ କରିବାକୁ ମୁଁ ଟିକିଏ ହସିଥିଲି; କିନ୍ତୁ ସେ କ'ଣ ଦେଖିଲା କେଜାଣି, ଡଳାକୁ ମୁହଁ ପୋତିପୋତି ଆର ବଖରାକୁ ଚାଲିଗଲା ।

ନୁର ନୀରବ ରହି ଶୂନ୍ୟକୁ ଚାହିଁରହିଲା କିଛି ସମୟ ।

ମୋ ଆଖି ଆଗରେ ଭାସିଉଠିଲା ଅସଂଖ୍ୟ ଚଳଚ୍ଚିତ୍ର । ଉଦାସ ଅପରାହ୍ଣ ଖରାରେ ନୀରବ ଧାନକ୍ଷେତ ପର କଅଁଳ କଅଁଳ ସ୍ମୃତି । ନିଷ୍ଚଳ ପାଣିରେ ନିଶ୍ଚଳ ମେଘର ପ୍ରତିବିମ୍ବ । ···ଏଇ ପିଆଜପୁଡ଼ାଟା ରଖିଲି । ତୁମ ମା' ପୁଅଙ୍କ ଶ୍ରଦ୍ଧା ପତ୍ର ! ବୁବୁକୁ କହିବ ଯେ ଏଇଟା ସେଇ ମାଉ୍ରାସ ହୋଟେଲ ଜିନିଷ; ଭାରି ବଢ଼ିଆ ! ···'ବୁବୁ ପରା ଟିକିଏ ଆଗରୁ ଆଣି ସନ୍ଦେଶ ରଖିଯାଇଲାଣି ତୁମ ପାଇଁ ! କେମିତି ସେ ମହୁକଅଁ ମିଠାଗୁଡ଼ାକ ତୁମକୁ ସୁଖଲଗେ କେଜାଣି ? ···ବୁବୁ ଖୁବ୍ ବୁଝିପାରେ ! ପ୍ରଭୁ ତାକୁ ଦୀର୍ଘାୟୁ କରିଥାନ୍ତୁ !"

"ସେଦିନ ଜନ୍ମାଷ୍ଟମୀ !"

ଚମକିଲି ପରି ବୁଜି ହୋଇଗଲା ସ୍ମୃତିପଟଳ । ମୋ ଉପରେ ଅଜାଡ଼ି ହୋଇପଡ଼ିଲେ ନୁରଭାଇ, ପୁରୁଣା ପଥରର ଡାକବଙ୍ଗଳା ଏବଂ ଅପରାହ୍ନ ଆକାଶର ଯେତେ ସବୁ ମେଘ । ମୁଁ ଆଖି ମିଟିକା ମାରି ଚାହିଁଲି, ନୁରଭାଇର ଶିରାଳ ଲୋମଶ ହାତଯୋଡ଼ିକୁ, ତା ସରୁ ବେକ, ହାଡ଼ୁଆ ମୁହଁ ଏବଂ ଗୋଲଗାଲ ଚଷମା ଭିତରୁ ଛଳଛଳ ଦିଶୁଥିବା ଉଦାସ ଆଖିକୁ ! ସେ କହୁଥାଏ—

"ସେ ଦିନ ପିଠାପଣା ହୋଇଥାଏ । ବାବୁଲର ଛୁଟି । ସେ ଘରେ ରହିପାରିଥାନ୍ତା—ରହିଲାନାହିଁ । ସେ କୌଣସି ଛୁଟିଦିନ ଘରେ ରହୁନଥିଲା । ଦି'ପହରେ କ'ଣ ଗଣ୍ଡେ ଖାଇଦେଇ ସେ ତରବର ହୋଇ ଚାଲିଗଲା । ତା' ମା'କୁ କୋଡ଼ିଏଟା ଟଙ୍କା ମାଗିବାରୁ ସେ ତାକୁ ଶୋଇବାଘରେ ମୋ ଅଜାଣତରେ ବଢ଼େଇ ଦେଇଥିଲା—ମୁଁ ପରେ ଜାଣିଲି । ସେ ଦିନ ତାକୁ ଅପେକ୍ଷା କରି କରି ରାତି ହୋଇଗଲା । ଦଶଟାବେଳରୁ ଗୋପଲୀଳା ପାଞ୍ଚ ଅଧ୍ୟାୟ ବୋଲି ସରିଗଲା । କୃଷ୍ଣ ଜନ୍ମବୃତ୍ତାନ୍ତ ମୋତେ ସବୁବେଳେ ବିଚଳିତ କରିଆସିଛି । ମୋତେ ସେଇ ଅନ୍ଧାର ରାତିରେ ଏକ-ବସ୍ତ୍ରିଆ ଦୁର୍ବଳ ବସୁଦେବଟି ଦିଶିଯାଏ । ବସ୍ତ୍ରିବା ମୋରିଭଳି ମଣିଷଟିଏ ତ ! କେମିତି ସପ୍ତଫେଣୀ ମେଘର କୁହାଟ, ଭରାନଈର ଘୁ ଘୁ ଗର୍ଜନ ଭିତରେ ସଦ୍ୟୋଜାତ ପୁଅଟିକୁ ଟୋକେଇରେ ମୁଣ୍ଡେଇ ସେ ଏକୁଟିଆ ବାହାରିଆସିଲା ! କେଡ଼େ ବିକଟାଳ ସେ ରାତି ! କେଡ଼େ ଦୁର୍ଗମ, ନିଛାଟିଆ ସେ ବାଟ—ଅଥଚ କି ପୁଅ ସେ ! —କାହା ପୁଅ ? —କାହାକୁ ପାରିକରୁଥିଲା ବସୁଦେବ ସେ ରାତିରେ ମଥୁରାରୁ ଗୋପକୁ ?"

ନୁର ଭାଇର ଆଖିରୁ ପଲକ ଲିଭିଗଲା । ଦୁର୍ବଳ ବାପଟିଏ ? କେଡ଼େ ବଡ଼ ଆଶା ସତେ ସେ ପୋତି ରଖିଛି ତା' ସ୍ୱପ୍ନଭିତରେ—ନାହିଁ, ମୁଁ ତ କେବେ ଭାବିନାହିଁ ବସୁଦେବ ହେବାକୁ ! —ସେଥିରୁ କ'ଣ ମିଳିବ ? —ବୁବୁ ଏବେ ଅଫିସର୍ ! ତା'ର ଅନେକ ଟଙ୍କା । ପ୍ରଭୁ ତାକୁ ଦୀର୍ଘାୟୁ କରିଥାନ୍ତୁ ।

ନୂର ବୁକୁ ଉପରୁ ପାହାଡ଼ ପରି ଦୀର୍ଘଶ୍ୱାସଟାଏ ଓହ୍ଲେଇଗଲା ।

"ଛାଡ଼ !"—ତା'ର ସେ ଉଦାସ ହୃଦୟଟିଏ ଭିତରେ କ'ଣ ଧରି ନପାରି ସେମିତି ଛାଡ଼ିଦେଉଥିଲା ନୂର ? ସେ ଚୌକିରୁ ଉଠିଯାଇ ବେହେରାକୁ ଡାକପକେଇଲା—

"ଯମୁନା···ଆ···ହେଏ···ଏ—ଯମୁନା···ଆ"

ବଙ୍ଗଳାକୁ ଘେରି ରହିଥିବା ଜଙ୍ଗଲ ଉପରେ ଘୂରିହୋଇଗଲା ସେ ଡାକ । ମୋତେ ସେ ନାଁଟା ଖୁବ କଉତୁକିଆ ଲାଗିଲା । ଯେତେ ବା ନଈଦାଢ଼ରେ ଠିଆହୋଇ ଖଳଖଳ ବୋହିଯାଉଥିବା ବନ୍ୟାକୂଳ ସ୍ରୋତକୁ କେହି ଜଣେ ବଡ଼ ପାଟିରେ ଡାକୁଛି । ଅନ୍ଧାରରାତିରେ ବିଜୁଳି ଚମକୁଚି ରହି ରହି । ବର୍ଷା ବତାସୀରେ ଏକୁଟିଆ ମଣିଷର ସେ କରୁଣ ଡାକଟି ମିଳେଇ ଯାଉଛି । ମୁଁ ଟିକିଏ ହସିଦେଲି । ନୂର ଭଳି ଫକମିତ କରିପାରେ । ନୂର ଗୃହିଥିଲେ କବିଟିଏ ହୋଇପାରିଥାନ୍ତା ! କାହିଁକି ହେଲାନାହିଁ ?

ଡାକବଙ୍ଗଳାର ବୁଢ଼ା ବେହେରା ଯମୁନାକୁ ଦୁ' କପ୍ ଚା' ବରାଦ କରି ନୂର ଫେରିଆସିଲା ତା' ଚୌକି ଉପରକୁ । ମୁଁ ବୁଝିଗଲି ଯେ, ବାକି କଥା କହିବା ପୂର୍ବରୁ ସେ ସେଇଭଳି ମଧ୍ୟାନ୍ତରଟିଏ ଗୃହୁଁ ଥିଲା !

"ରାତି ଯେତେବେଳକୁ ବାରଟା ପାରିହୋଇ ସାରିଥାଏ । ମୋତେ ବଳେଇବାରୁ ମୁଁ କ୍ଷୀରିପୁରି କିଛି ଖାଇଦେଇ ଆରାମଚୌକିରେ ଢୋଳାଉଥାଏ । ଚମକିଲା ପରି ଗୁଣୁ ଗୁଣୁ ଲାଗୁଥାଏ । ତା' ମା' ନଖାଇ ଗୃହିବସିଥାଏ ଦାଣ୍ଡଘରେ । ବାବୁଲି ପାଠ ପଢ଼ୁନାହିଁ । ସେ ଛତରା ପିଲାଙ୍କ ସାଙ୍ଗେ ମିଶୁଛି । ରାତିରେ ବିଳମ୍ବରେ ଫେରୁଛି । ମୁଁ ଦିନେ ପଗୁରିଦେଲି । ସେ ଗୋଟାଏ କ'ଣ ଫୋପା ଉତ୍ତର ଦେଇଦେଲା । ମୋ'ଟଉପରେ ସୂଚନା ଦେଇଦେଲା ଯେ ସେ ନିଜେ ତା' କଥା ବୁଝିବ—ତା' ପାଇଁ ଆଉ କାହାରି ମୁଣ୍ଡଗଡ଼େଇବାର ପ୍ରୟୋଜନ ନାହିଁ । ମୁଁ ମଧ୍ୟ ଏକପ୍ରକାର କଥାଟାକୁ ବୁଝିଗଲି । ଭାବିଲି, ବୋଧହୁଏ ସେ ଭାବିଚିନ୍ତି କାର୍ଯ୍ୟ କରୁଥିବ । ସେ ତ ଆଉ ପିଲା ନୁହେଁ ।"

"ସେଇ ରାତିରେ ବାରଟା ପରେ କବାଟରେ ଥପ୍ ଥପ୍ ପାପୁଲି ବାଡ଼େଇବାର ଶବ୍ଦ ଶୁଭିଲା । ମୁଁ ଚେଇଁଗଲି; କିନ୍ତୁ ନଉଠି ଅପେକ୍ଷାକଲି । ···ବାବୁଲି ଫେରିଲା ନିଷ୍ଟୟ । ତା' ସାଙ୍ଗରେ ଆଉ ଜଣେ କିଏ ହୁଏତ ଆସିଥିଲା । ସେଇ ବୋଧହୁଏ କହିଲା—'ବାବୁଲି ଖାଇ ପିଇ ଆସିଛି ମାଉସି ! ତାକୁ ନେଇ ଶୁଆଇଦିଅନ୍ତୁ । ମଉସାଙ୍କୁ ଉଠାନ୍ତୁନାହିଁ ।'

"କବାଟପଡ଼ିଲା । ସେ ଆର ଜଣକ ଗ୍ଲଲିଗଲା । ତା'ପରେ ସକ୍‌ସକ୍ କାନ୍ଦଣା ଶୁଭିଲା । ବାବୁଲି ବୋଉ କାହିଁକି କାନ୍ଦଲା ବୋଲି ମୁଁ ବୁଝିବାକୁ ଉଠିପଡ଼ୁଥିଲି, ବାବୁଲିର ପାଟି ଶୁଭିଲା । ମୁଁ ଚମକିଲାପରି ପୁଣି ଚୌକିରେ ପଡ଼ିଗଲି । ସେ ନିଶା ଖାଇ ଫେରିଥିଲା । ତା' ପାଟି ଖନମାରୁଥିଲା । ଜନ୍ମାଷ୍ଟମୀ ଉପାସରେ ପୁଅର ଫେରିବା ବାଟକୁ ଗୃହିଁ ବସିଥିଲା ତା' ମା' ! ତା'ର ଏଭଳି ଅବସ୍ଥା ଦେଖି ସମ୍ଭାଳି ପାରିଲାନାହିଁ, କାନ୍ଦିପକେଇଲା । ମୋ ବୁକୁ ଦାଉଁ ଦାଉଁ ହେଲା । ମୁଁ ଚୌକି ଉପରୁ ଝପ୍‌କିନା ଉଠି ଚହିଁକି ଗଲି । କ'ଣ ଅଘଟଣ

ଘଟିଯିବ ବୋଲି ବାବୁଲିକୁ ଆବୋରିଲା ପରି ତା' ମା' ମୋତେ ବାଟ ଜଗି ଠିଆହୋଇଗଲି । ମୁଁ ହାତ ଉଠେଇଥିଲି ବାବୁଲି ଉପରକୁ । ମୁଁ ସେ ଯାବତ୍ ତା' ଦେହରେ ଟିପ ଲଗେଇ ନଥିଲି । ମୋ ଭୂଣ୍ଡରୁ ଗୁଡ଼ାଏ ଗାଳି ଗୁଳିଜ ବାହାରି ବାହାରୁନଥାଏ । ବାବୁଲି ସେମିତି ନିଷ୍ଚଳ ଠିଆହୋଇଥାଏ ।

"ମୋ ପାଟି ଶୁଣି ସାଇ ପଡ଼ଶାରୁ ଲାଇଟ୍ ଲଗେଇ ଲୋକେ ଚାହିଁଲେ । ମୋର ହାତ ନଇଁଗଲା, ସ୍ୱର ନରମି ଗଲା । ମୁଁ ବି କାନ୍ଦି ପକେଇଲି । ବାବୁଲିକୁ ତା' ପଢ଼ା ଘର ଖଟ ଉପରେ ଶୁଆଇ ଆସିଲାପରେ ତା' ମା' ମୋତେ ବାଟ କାଟି ଚାଲିଗଲା, ଓପାସରେ ନଖାଇ ରାତସାରା କାନ୍ଦିବାକୁ । ମୁଁ ବି କିଛି ନକହି ସେମିତି ସେ ଭିତର ପିଣ୍ଡାରେ ଚୌକି ଉପରେ ରାତି ବିତେଇଦେଲି । ଘଡ଼ିଘଡ଼ିକେ ନାନାପ୍ରକାର ଦୁଃସ୍ୱପ୍ନ ମୋ ଉପରେ ମଡ଼େଇହୋଇ ପଡ଼ୁଥାଏ । ରାତି ସରୁନଥାଏ କି ଭୟ ସରୁନଥାଏ । ମୋର ବୟସ ପାରି ହୋଇଯାଉଥାଏ ବର୍ଷ ବର୍ଷ ।"

ତା' ଆରଦିନ ସକାଳ ଆଠଟା ସୁଦ୍ଧା ବାବୁଲି ଉଠିଲି । ଘରସାରା ଚୁପଚାପ୍ ରହିଥାଏ । ସେ ମୁହଁ ଧୋଇ ଚା' ପିଇଲା । ରାତସାରା କାନ୍ଦି କାନ୍ଦି ତା' ମା'ର ଆଖି ମୁହଁ ଫୁଲିଯାଇଥାଏ । ବାବୁଲି ବି ଦିଶୁଥାଏ ରୋଗିଣା । ତା' ମୁଣ୍ଡ ବାଳ ରୁଖୁରା । ତା' ଆଖି ତଳେ ଗଞ୍ଜିର କଳା ଦାଗ । ଓଠ ଶୁଖିଲା । ସେ ମୋତେ ଥରେ ଚାହିଁ ଦେଇ ଉଠୁଥିଲା ସେଇଠୁ ଚାଲିଯିବାକୁ । ମୁଁ ତାକୁ କହିଲି—"ତୁ ଶେଷକୁ ଏମିତି ହେବୁ ବୋଲି ମୁଁ ଜାଣି ନଥିଲି । ମୁଁ ଆଉ କାହା ଆଗରେ ମୁଣ୍ଡ ଟେକି ଠିଆହୋଇ ପାରିବିନାହିଁ । ମୁଁ କିନ୍ତୁ କେତେ କ'ଣ ଆଶା କରିଥିଲି । ବିବେକାନନ୍ଦ ବୋଲି ନାଁ ଦେଇଥିଲି, କାଳେ ସତକୁ ସତ ମୋ ଘରେ ମହାପୁରୁଷ ହୋଇ ତୁ ଜନ୍ମିଥିବୁ । ସବୁ ମାଟିରେ ମିଶିଗଲା ।

ଭାବିଥିଲି ତାକୁ ଯେଚ୍ଛାତା ଶୋଧିବ ବୋଲି; କିନ୍ତୁ ରାତସାରା ତା' ନାଁରେ ଦୁଃସ୍ୱପ୍ନ ଦେଖି ଦେଖି ମୋର କେବଳ ସେମିତି ରୋଦନ କରିବାକୁ ଇଚ୍ଛାହେଲା । ତା' ମା' ତଳକୁ ମୁହଁ ପୋତି ଭୂଇଁରେ ଆଖି ରଖିଥାଏ । ଝିଅ ଷ୍ଟୋର ଘର କବାଟ ଆଢୁଆଳରୁ ଚାହିଁଥାଏ ଆମ ସମସ୍ତଙ୍କୁ । ତାକୁ କେମିତି ନୂଆ ନୂଆ ଲାଗୁଥାଏ । ମୁଁ ଥରେ ଉପରକୁ ତା' ଆଡ଼େ ଚାହିଁଦେଲି । ତା' ଆଖିରେ ଅସୁମାରି ଭୟ ।

ବାବୁଲି ମୁହଁ ଟେକି ସିଧା ସଳଖ ମୋ ମୁହଁକୁ ଚାହିଁଲା । ଖୁବ୍ ସ୍ପଷ୍ଟ ଭାବରେ, ଜମା ଇତସ୍ତତଃ ନକରି କହିଲା, "ଆପଣଙ୍କୁ ମଧ୍ୟ ଆଜି କିଛି କହିବାକୁ ମୁଁ ସ୍ଥିର କରିଛି । ଦେଖନ୍ତୁ, ଆପଣ ନିଜକୁ ସବୁବେଳେ ସବୁ କଥାରେ ବିଚାରକ ବୋଲି ଭାବନ୍ତୁନାହିଁ; କାରଣ ସେଭଳି ହେଲେ ଆପଣ କେବଳ ନିଜକୁ ନିର୍ଭୁଲ୍ ଭାବି ବାକି ସମସ୍ତଙ୍କୁ ଭୁଲ୍ ବୋଲି ଧରିନେଉଛନ୍ତି । ମୁଁ ଆପଣଙ୍କୁ ଦୋଷ ଦେଉନାହିଁ । ଆପଣଙ୍କ ବୟସର ସବୁ ବାପ ପ୍ରାୟ ସମାନ । ଆପଣ ନିଜ ସମୟର ରୁଚି, ବିଶ୍ୱାସ, ଆଚରଣ, ମୂଲ୍ୟ ଆଦି ଏବେ ଆମ ଉପରେ ପ୍ରୟୋଗ କରିବାରୁ ଆମର ତ କିଛି କ୍ଷତି ହେଉନାହିଁ; କିନ୍ତୁ ଆପଣ ବିନା କାରଣରେ ଦୁଃଖ ଭୋଗୁଛନ୍ତି ।"

ମୁଁ ନୁର ମୁହଁକୁ ବିସ୍ମିତ ହୋଇ ଅନେଇଲି । "ହଇରେ, ବାବୁଲି ଏମିତି କହିଲା,—ନା' ତୁ ଖାଲି ମନରୁ ଖଞ୍ଜି ଏମିତି କହିଦେଉଛୁ ? ଏ ତ ଅତି ଆଶ୍ଚର୍ଯ୍ୟ କଥା ! —ଘୋର ଗହନ କଥା ।"

"ତୁମେ ଖାଇନା, ଶୁଣୁନା—ଏ ତ କିଛି ନୁହେଁ । ଆଉ ସବୁ କ'ଣ କହିଲା ଶୁଣ !" କହିଲା, 'କାଲି ଆମ ବନ୍ଧୁ ମହଲରେ ଗୋଟାଏ ପାର୍ଟି ଥିଲା । ସେଠି ମଦ ନପିଇ କଣ ପାଣି ପିଇଥାନ୍ତି ?' ତା' ମା' ଆଖି ତରାଟି ଚାହିଁଲା, ଚାହିଁକି ଆସୁଥିଲା କଣ କହିଦେଇ ଯିବ ବୋଲି—ମୁଁ ବାରଣକଲି । ବାବୁଲି ତା' ମା' ଆଡ଼େ ମୋ ଆଡ଼େ ଥରେ ଚାହିଁଲା । କିଛି ଯେପରି ଘଟିନାହିଁ, ସେଭଳି ଢଙ୍ଗରେ କହିଚାଲିଲା—'ତା' ବାହାରେ ଖାଇବା ପିଇବା ତ ରୁଚି ଉପର କଥା । ସେଥିରେ ପାପ-ପୁଣ୍ୟ, ନ୍ୟାୟ-ଅନ୍ୟାୟ ଯୋଡ଼ିବାର ପ୍ରୟୋଜନ କ'ଣ, ଯୁକ୍ତି ବା କଣ ? ମଦ ପିଇଦେଲେ ଜଣେ ମଦୁଆ ହୁଏନାହିଁ । ମଦୁଆର ଆଚରଣ ଯେ ଦେଖାଏ, ସେ ମଦ ଛୁଉଁନଥିଲେ ସୁଦ୍ଧା ମଦୁଆ ।' ମୁଁ ଆଚମ୍ବିତ ହୋଇ ଚାହିଁଥାଏ । ତା' ମା' ମଧ୍ୟ ସେଇଭଳି ହତବାକ୍ । ନିଃଶ୍ୱାସ ଶୁଣାଇଲା ପରି ବାବୁଲି କହିଲା, 'ମୁଁ ମଦ ପିଇଛି ବୋଲି ଲଜ୍ଜିତ ହେବାର କାରଣ ନାହିଁ । ମୁଁ ଅନେକ ଦିନ ହେଲା ପିଉଛି ଏବଂ ପିଇବ ମଧ୍ୟ । ଏଥିରେ ଆପଣ ଏଭଳି ଉଦ୍‌ବ୍ୟସ୍ତ ହୁଅନ୍ତୁନାହିଁ । ଅଯଥା ରକ୍ତଚାପ ବଢ଼ିଯିବ ।"

ନୁର ଭରି ମୁହଁକୁ ମୁଁ ଆବାକାବା ହୋଇ ଚାହିଁରହିଥାଏ । ସେ ମୋ ଅବସ୍ଥା ଦେଖି ଫାଳେ ଓଠ ସନ୍ଧିରୁ ଉଦାସ ହସଟିଏ କ୍ଷଣିକରେ ଭୂଇଁକୁ ଗଡ଼େଇଦେଲା । କହିଲା, "ମୁଁ ତ ଖାଇନା, ସେତେବେଳେ ହସିବି ନା' କାନ୍ଦିବି ଜାଣିପାରିଲି ନାହିଁ । ବାବୁଲି—ହେଇ କାଲିକା ପିଲା ! ସେ ପୁଣି ମୋ ମୁହଁ ଉପରେ ଏମିତି କଥା କହିପାରିଲା ! —ମୋତେ ସ୍ୱପ୍ନଭଳି ଲାଗୁଥାଏ । ତା' ମା ନାଗୁଣୀପରି ଫୁଁଫୁଁକାର କଲା, 'କିରେ, ତୋ ମୁଣ୍ଡକୁ କ'ଣ ପିତ୍ତ ଚଢ଼ିଛି କି ? କେଡ଼େ ସାହସରେ ମୁହଁ ବଢ଼ି ବଢ଼ି କଥା କହୁଛୁ ? ମାରିବି ଚଟକଣା ଯେ ତୋ ଦାନ୍ତ ଝାଡ଼ିଦେବ । ବାଳୁଙ୍ଗା ଛତରା ହେଇ ଦିନରାତି ବୁଲୁଛୁ । ପାଠ ପଢ଼ା ତ' ଚୁଲିରେ ଗଲା । ତୁ ପୁଣି କ'ଣ ମଦ ପିଇଲୁ ! ହଇରେ ହେ !'' —ବାବୁଲି ତାକୁ ଯେମିତି ଢଙ୍ଗରେ ଚାହିଁରହିଲା, ସେଥିରେ ସେ ବଳେ ବାଉଳି ହେଇ ମୁହଁ ଘୋଡ଼େଇ ଘଡ଼ୁ ଘଡ଼ୁ କାନ୍ଦିଲା । ବାବୁଲି ଫଣା ଟେକିଲାପରି ମୁଣ୍ଡ ଟେକି କହିଲା, 'ମୁଁ ପାଠ ପଢୁନାହିଁ କି ଭବିଷ୍ୟତରେ ସେଭଳି ବେକୁବ୍ କାମ କରିବିନାହିଁ । ଶୁଆ ରଟିଲା ପରି ଗୁଡ଼ାଏ ଏଣୁ ତେଣୁ ରଟିବାର ଅର୍ଥ କିଛି ନାହିଁ । ବେମତଲବ୍ ସମୟ ବରବାଦ୍ କରିବା ବୋକାମି । ସେଭଳି ଯେଉଁ ବଳଦଆ' ଗଣ୍ଡେ ପରୀକ୍ଷା ଦେଇ ଚାକିରି କରନ୍ତି, ତାଙ୍କ ଭଳି ପୋଷା କୁକୁର ମୁଁ ହେଇପାରିବି ନାହିଁ । ମାସ ପହିଲାକୁ ଆଙ୍ଗୁଳା ପଡେଇ ଦରମା ନାଁରେ ଭିକ୍ଷାନେଇ ମୁଁ ଚଳିପାରିବି ନାହିଁ କିମ୍ବା ଅଣ୍ଟୁନାହିଁ ବୋଲି ସେଇ ବାହାନାରେ ଲୁଚି ଲୁଚି ଘୋଷ କରିପାରିବି ନାହିଁ । ଆମେ ସେଭଳି ଲୁଙ୍ଗୁରା ଆଚରଣକୁ ମଣିଷପଣିଆ ବୋଲି ବିଚାର କରୁନାଁ । ଆମର ନୀତି ଅଲଗା, ଏଣୁ ଆଚରଣ ମଧ୍ୟ ଅଲଗା ।'

ଠିଆ ହୋଇପଡ଼ି ଆଉ ଟିକିଏ ଚଢ଼ାଗଳାରେ କହିଲା, 'ଆମକୁ କୌଣସି କାମ କରିବାକୁ କିମ୍ବା ନକରିବାକୁ କେହି ବାଧ୍ୟ କରିପାରିବେ ନାହିଁ । ଆମେ ଆମ ଢଙ୍ଗରେ ବଞ୍ଚିବୁ । ସେଥିପାଇଁ ଯାହା ପ୍ରୟୋଜନ ତାହା ଆମେ ବଳାତ୍କାର ନେବୁ । କେହି ସେଥିରେ ବାଧା ଦେଇପାରିବେ ନାହିଁ ।"

ଏତିକ କହିଦେଇ ସେ ଚୁଲିପଡ଼ି ଦୁମ୍ ଦୁମ୍ ଚାଲିଗଲା । ଆମେ ବାଧା ଦେଇପାରିଲୁ ନାହିଁ । ମୋର ପ୍ରାୟ ହୋସ୍ ନଥିଲା । ମୋ ଦେହସାରା ତାତିଯାଇଥିଲା । କାନ ଭାଁ ଭାଁ ଡାକୁଥିଲା । ମୋ ସ୍ତ୍ରୀ ସେତେବେଳେ ଚିରିଚିରେଇଲା ପରି କ'ଣ ସବୁ ବାହୁନି ବାହୁନି ରଡ଼ୁଥିଲା ମୁଁ ବାରିପାରୁନଥିଲି । ମୁଁ ସେ କୁଳାଙ୍ଗାରକୁ ସେଇ ମୁହୂର୍ତ୍ତରେ ଘରୁ ତଡ଼ି-ଦେବାକୁ ସଂକଳ୍ପ କଲି । ତା'ପରେ ମୋତେ ଦିଶିଗଲା ଯେ ସେ ସତକୁ ସତ ବାହାରି-ଯାଉଛି । ସେ ତା' ସାଙ୍ଗମାନଙ୍କୁ ନେଇ ମୋଟର ସାଇକେଲରେ ଡକେଇତି କରୁଛି । ରାସ୍ତା ଉପରେ ମାରିପିଟ କରୁଛି । ନିଶା ଖାଇ ଟଳି ଟଳି ହାତରେ ବେଡ଼ି ପିନ୍ଧି ସେ ଜେଲ୍‌ଯାଉଛି—ତା'ପରେ ହତ୍ୟାପରାଧର ବିଚାର ହେଉଛି—ସେ ଝିପିଝିପି ବର୍ଷା, ଓଦା କଳା ଚଉକାଠରୁ ସାପ ପରି ଓହଳି ରହିଥିବା ଦଉଡ଼ି—ମୁଁ ଆଉ ଚିନ୍ତା କରିପାରିଲି ନାହିଁ । ଏବେ ମଧ୍ୟ ପାରୁନାହିଁ ।"

ନୁର ଖୁବ୍ ବିବ୍ରତ ଜଣାଯାଉଥିଲା, ଯେ କୌଣସି ଅନ୍ୟ ବାପଟିଏ ପରି । ମୁଁ ଚାହୁଁଥିଲି କ'ଣ ଦୁଇପଦ ଆଶ୍ୱାସନା ଶୁଣାଇବାକୁ । ଭାଷା ଯୁଟିଲାନାହିଁ । ମୁଁ ଏକରକମ ଘାବରେଇ ଯାଇଥିଲି । ଧର, ଯଦି ବୁବୁ ଏମିତି ହେଇଥାନ୍ତା—ପ୍ରଭୁ ନକରନ୍ତୁ—ଆମେ କ'ଣ ସହିପାରିଥାନ୍ତୁ ? ନସହି ବା ଅନ୍ୟ ଉପାୟ କ'ଣ ଅଛି ? ସ୍ତ୍ରୀ'କୁ ସହିବା ଅପେକ୍ଷା ମରିଯିବା ବରଂ ଭଲ ଜଣାଯାଉଛି !—ଈଶ୍ୱର ବଡ଼ ଲୋକ, ବୁବୁ ଆମର ଶାନ୍ତ, ବୁବୁ ଭଦ୍ର, ବୁବୁ ମଦ ଛୁଏଁ ନାହିଁ; ସେ ସବଙ୍କାରଣସ୍ଥ ଚାକିରି କରେ । ନୁର ବିଚରା ସତେ କେଡ଼େ ଭାଗ୍ୟହୀନ ।

ନୁର ହଜିଲା ହଜିଲା ଆଖିରେ କିଛି ସମୟ ଚାହିଁଲା ।

କହିଲା, "ମୁଁ ସତ କହୁଛି ଭାଇନା, ମୁଁ ସେଦିନ ଚାହିଁଥିଲି ଛୁରିମାରି ମରିଯିବାକୁ ।··· ନଥିବା···ଗୁଣ୍ଡ଼—ରାଗ ତ ବ୍ରହ୍ମ ଚଣ୍ଡାଳ । ମୁଁ କାହାକୁ କିଛି ନକହି ପଦାକୁ ବାହାରିଗଲି । ଇଚ୍ଛା କ'ଣ ବୋଇଲେ କ'ଣ କରିଦେବ । ବାବୁଲି ମୋ ମୁହଁ ଉପରେ ସେତକ କହିଦେଇ ପଳେଇଥାଏ । ମୁଁ ରାସ୍ତାରେ ଠିଆହେବା ପରେ ଇଚ୍ଛାହେଲା, ତାକୁ ତା' ଆଡ଼୍‌ଡ଼ା ଉପରେ ତା' ଲଫଙ୍ଗା ସାଙ୍ଗମାନଙ୍କ ଆଗରେ ଯାଇ ଧରିବି; ଯାହା ହେବାର ହେବ । ସେ ମୋତେ ଖାଇଯାଉ ବରଂ—ମହାବଳ ବାଘର ଦାଢ଼ି ଧରି ଥରେ ଝିଙ୍କି ନ ଦେଲେ ସେ ଶିକ୍ଷା ପାଇବ ନାହିଁ ।"

ଯମୁନା ଚା' ଦୁଇକପ୍ ନେଇ ବୈଠକ ଘରକୁ ପଶି ଆସିଲା । କିଛି ସମୟ ଚନା ମାଟିର ମୋଟାଳିଆ କପ୍ ଆଉ ପିଆଲା ଠୁଣ୍‌ଠାଣ୍ କଥାବାର୍ତ୍ତା ହେଲେ । ଦୁଇଟି ଅଧାଡ଼ଆ ଅନ୍ୟ-

ମନସ୍କ ବାପ ଫୁଟନ୍ତା ଗ୍ଭ' ସୋଡ଼କବାର ଶବ୍ଦ ଶୁଭିଲା । କଳା ପିଠି ଦେଖେଇ ଅବାଞ୍ଛିତ ସ୍ମୃତି ଭଳି ଯମୁନା ତା' ଖାଲି ପାଦକୁ ଚଟାଣରେ ଖସର ଖସର କରି ଦୂରେଇ ଗଲା । ମୁଁ ମନେ ମନେ କଥାଟାକୁ ନଠେଇ ନଠେଇ ପରୀକ୍ଷା କରୁଥିଲି ।···ମୁଁ ବୁବୁକୁ ଡରୁଛି ତ ! କିଛି ଗୋଟାଏ କରିବା ପୂର୍ବରୁ ସେ କଣ ଭାବିବ, ସେ କ'ଣ କହିବ, ବିଚାର କରିବାକୁ ପଡ଼ୁଛି ତ । ତା' ଇଚ୍ଛା ବିରୁଦ୍ଧରେ କିଛି କରିଦେବା ପାଇଁ ସାହସ ହେଉନାହିଁ ତ ।—ଏଇ ତା' ବିବାହ ଫନ୍ଦାନ୍ତରେ ଯେତେସବୁ ପ୍ରସ୍ତାବ ତାକୁ ନପଚାରି ତ କିଛି କରିହେଉନାହିଁ ।··· ଧରାଯାଉ ବୁବୁ ତା' ଉଚ୍ଚପାହ୍ୟା ଅଫିସରଙ୍କ ସାଙ୍ଗରେ ମିଶି ଘୁଷୁରି ମାଂସ ଏବଂ ମଦ ଖାଇଲା—କୌଣସି ନାରୀବନ୍ଧୁ ସାଙ୍ଗରେ ରାତି ବିତେଇଲା—ମୁଁ ଜାଣେ ବୁବୁ ଏହା କଦାପି କରିବନାହିଁ—ମୋ ପୁଅକୁ ମୁଁ ଜାଣିନାହିଁ ?—କିନ୍ତୁ, ଧର ଯଦି ସେପରି କଲା, ସେ ବିଷୟରେ ତାକୁ ବୁଝେଇ ହେବ କି ? ବରଂ ଆଜିକାଲି ଏଭଳି ଅଫିସରଆ କାଇଦା ଚାଲିଲଣି ବୋଲି ନିଜକୁ ନିଜେ ବୁଝେଇନେବାକୁ ହେବ । ନନାଙ୍କ ଫଟୋ ପାଖରେ କରଯୋଡ଼ ହୋଇ କହିଦେବାକୁ ହେବ ଯେ, ବୁବୁଟା ପିଲାଲୋକ ! ଟୋକା ବୟସରେ ନ ବୁଝି କ'ଣ ଟିକିଏ କରିଦେଇଛି ବୋଲି, ସେ କ'ଣ ସବୁବେଳେ ଏମିତି ରହିଥିବ ? ସେ ପରା ଆପଣଙ୍କ ରକ୍ତ ।

"ବୁଝିଲ ଭାଇନା ! ମୁଁ ସେମିତି ଚମ୍‌ଚମ୍ ହୋଇ ଯାଇ ପହଞ୍ଚିଲି କଲେଜ ପାଖ ଚା' ଦୋକାନରେ । ଅତି ଅସନା ଏକବଖୁରି ଚାଳଘର । ଟେବୁଲ ଚୌକି କଳା ଲଟଲଟିଆ । ମାଛି ଭଣଭଣ । ଗଜା ଟୋକାଙ୍କ ଆଡ୍‌ଡ଼ା । ମଝିରେ ଟିକିଏ ଆଢୁଆଳ କରିଦେଇ ତା' ପଛରେ ଭାଙ୍ଗ ବଟା ହୁଏ । ସେଇଠି ବେଳ ଜାଣି ସେ ଦେଶୀ ମଦ, ଗାଗଚଣା ବିକ୍ରୀ କରେ । ସିଗ୍ରେଟରେ ଗଞ୍ଜେଇ ଭର୍ତ୍ତିକରି ବିକ୍ରୀ କରେ । ଗୋଟାଏ କୋଣକୁ ପାନ ବିଡ଼ି ସାଥିରେ 'ନିରୋଧ' ମଧ୍ୟ ଖୋଲା ଖୋଲା ଥୋଇଥାଏ । ମୁଁ ସେଇଠି ହଠାତ୍ ପହଞ୍ଚି ଯିବାରୁ ସବୁ ଥମ୍ ପଡ଼ିଗଲା । ତା'ପରେ 'ହୋ' କନା ପାଟିଟାଏ ହେଲା—ସତେ ବା ସେମାନେ ମୋତେ ସେଇ ହସରେ ଉଡ଼େଇ ଦେବାକୁ ଚାହୁଁଥିଲେ । ବାବୁଲି ତାଙ୍କ ଭିତରେ ନଥିଲା । ଥିଲେ ସେ ବି ସେମିତି ହସିଥାନ୍ତା, କିମ୍ବା ଗମ୍ଭୀର ହୋଇ ଚଢ଼ିଥାନ୍ତା । ଛୁଡ଼ ସେଗୁଡ଼ାକ ସମସ୍ତେ ସେମିତି । ମୁଁ ମୁହଁ ଫେରେଇ ପଛ କରୁ କରୁ ନାନାପ୍ରକାର ସିଟି, ଅସଭ୍ୟ ଗାଳି ଅଜାଡ଼ିହୋଇ ପଡ଼ିଲା, ସେ ଅସନା କୋଚଟିଆ ଚା'ଦୋକାନରୁ । ସତେ ବା' ଏ ଯୁଗ ନିଜେ ବୁଝିପାରୁନାହିଁ ସେ କେତେ ଅପରିଚ୍ଛନ୍ନ ।—"ହି, ହି, ହି, ହି"—"ହୋ, ହୋ, ହୋ, ହୋ," "ବେ ବୁଢ଼ା ଶଳା"—"ହୋ, ମଉସା"—"ଶଳା ନିରୋଧ କିଣି ଆଇଥିଲା ବେ !" ମୁଁ ମୁଣ୍ଡ ପୋତି ଦୂରେଇ ଗଲି । ମୋର ଡରକୁଳା ସ୍ୱଭାବ ମୋ ହାଡ଼ ହୁଗାଳି ଦେଲା । ବୁଲିପଡ଼ି ସେମାନଙ୍କ ମୁକାବିଲା କରିପାରିଲିନାହିଁ । ଜାଣିଲି, ବାବୁଲି ଏଇଠି ସମୟ ବିତାଏ । ଜାଣିଲି ଯେ ସେତେବେଳେ ସେ ସେଇଠି ନଥିଲା ।

"ଇସ୍ ! ସେ ସମଗ୍ର ଅଞ୍ଚଳ କେଡ଼େ ଭୟାବହ, କେଡ଼େ କରୁଣ । କାନ୍ଥବାଡ଼ରେ କି ନଗ୍ନ ଅଶ୍ଳୀଳତା । ଏଠି ପୁଣି ପାଠପଢ଼ା ହୁଏ ? କି ପାଠ ପଢ଼ା ହୁଏ ? ମୁଁ ଖୁବ୍ ରାଗିଗଲି । ଏ ଦୁଷ୍ଟ, ଘୃଣ୍ୟ ଅନୁଷ୍ଠାନ ହିଁ ବାବୁଲିକୁ ଏମିତ କରିଦେଇଛି । ସେ ଯଦି ଏଇଠି ପାଠ ପଢ଼ିବାକୁ ଇଚ୍ଛା କରୁନାହିଁ, ସେଥିରେ ତା'ର ଦୋଷ କ'ଣ ? ଭାବିଲି ତାଙ୍କ ଦପ୍ତରରେ ପଶି ସେ ଅଳାଜୁକ, ଅପାରଗ ମାଷ୍ଟ୍ର ବୋଲାଉଥିବା ଜୋକରମାନଙ୍କୁ ମନଇଚ୍ଛା ଶୋଧିବି । ଦାବି କରିବି ମୋ ପୁଅ ପାଇଁ କ୍ଷତି ପୂରଣ । ଦୋ' ଦୋ' ପାଞ୍ଚ ହେଲି । ସାହସ କୁଳେଇଲା ନାହିଁ । ଦାନ୍ତ କାମୁଡ଼ି ଏକ ମୁହାଁ ଜୋର୍‌ରେ ଚାଲିଲି । ଥରେ ଦୁଇଥର ଝୁଣ୍ଟିଲି । ହାଲିଆ ହୋଇ ଯିବାରୁ ଦେହ ହାତ ଥରିଲା । ମୁଣ୍ଡରୁ ଝାଳ ନିଗିଡ଼ିଆସିଲା । ଅସୁସ୍ଥ ଲାଗିଲା । ସେଇଠି ଗୋଟିଏ ହେଲେ ଗଛ ନଥିଲା ତା' ଛାଇ ତଳେ ଠିଆ ହୋଇ-ଯିବାକୁ । ଅନେକ ପୁରୁଣା ଗଛର ଥୁଣ୍ଟା ଏଠି ସେଠି ଦିଶୁଥିଲା । ସେସବୁ ହଣା ହୋଇ କେଉଁ କାଳୁ ମରିସାରିଥିଲେ । ମୋତେ ଶୋଷକଲା, ଆଖିକୁ ଅନ୍ଧାର ଦେଖାଗଲା । ବାନ୍ତି ମାଡ଼ିଲା । ଭାବିଲି ବୋଧହୁଏ ଖରାରେ ଚାଲିବାରୁ ସେପରି ଲାଗୁଥିବ । ବାବୁଲି ଏମିତି ପ୍ରତିଦିନ ଖରାରେ ଏଇଠି ଚାଲୁଚି । କୌଣସି ପୁରୁଣା ଗଛର ଛାଇ ଏଠି ନାହିଁ । ଶୋଷ ମେଣ୍ଟାଇବାକୁ ପାଣି ମୁନ୍ଦେ ନାହିଁ । ମୁଁ କିନ୍ତୁ ସ୍ଥିର କରିସାରିଥିଲି ଯେ, ବାବୁଲିକୁ ତା' ଆଡ଼୍‌ଡ଼ାରେ ଧରିବି—ଯାହା ହେବାର ହେବ ।"

ନୂଆ ସଡକହୁଥିଲା । ପୋଖରୀ ଅଣ୍ଡା ପରି ଧଳା ଖୋଳପା ଭିତରେ ଏ ଅନୁଷ୍ଠାନ ସବୁ ସଢ଼ି ଗଲେଣି । ସେ ପରିସର ଭିତରେ ଆଉ ସୁନ୍ଦର, ସାର୍ଥକ କିଛି ଗଢ଼ି ହୋଇପାରିବ ନାହିଁ । ସେଇଠୁ ଉପାଦାନ ନେଇ ଅନ୍ୟ ଯେକୌଣସି କ୍ଷେତ୍ରରେ ମଧ୍ୟ ଆଉ କିଛି କରି ହେବନାହିଁ । ସାରା ସମାଜ ଅଶାଳୀନ, ଅଭଦ୍ର, ଠକ, ଚୋର ବଦମାସ୍‌ଙ୍କ ଆଡ଼୍‌ଡ଼ାସ୍ଥଳୀ ହୋଇଗଲା ।···ତଥାପି ଏବେ ମଧ୍ୟ କୋଟିକେ ଗୋଟିଏ ଭଲ ମଣିଷ, ଭଲ ଶିକ୍ଷକ, ଭଲ ଛାତ୍ର ମିଳୁଛନ୍ତି ତ ! ଭଲ ଅଫିସର ମଧ୍ୟ ଅଛନ୍ତି ତ ! ଆମ ବୁବୁ କ'ଣ ଖରାପ ? ସେ ପୁଣି ସେହିପରି ଗୋଟାଏ ଘୋଡ଼ାଶାଳ ଭିତରେ ବର୍ଷ ବର୍ଷ ବତେଇ ଯୋଗ୍ୟ ହୋଇ ବାହାରିଲା ନା ନାହିଁ ?

ମୁଁ କିଛି ନକହି ଚା' ପିଉଥାଏ । ନୂଆ କିନ୍ତୁ ଶୋଷ କଲପରି କେତେବେଳୁ ଚା' ଢୋକରେ ପିଇ ସାରିଥାଏ । ଏପଟ ସେପଟ ଚାହୁଁଥାଏ । ଡାକ ବଙ୍ଗଳାର ଉଭୟ ପାଖେ ସେଇ ଗୋଟିଏ ମାତ୍ର ଲୁଆଁଣିଆ ଅଫରାହ୍ଣର ନୀରବତା । କଚ୍ଚେଳ ଖରାଟାଏ ଓହଳି ରହିଥାଏ ଆକାଶରୁ ଭୂମି ପର୍ଯ୍ୟନ୍ତ ଧୂଆଁ ପରି ।

କିଛି ଦୂରରେ ବାବୁଲି ବୟସର ପିଲାଗୁଡ଼ାଏ ରାସ୍ତା ମଝିରେ କ'ଣ ସବୁ ଫିଙ୍ଗା ଫୋପଡ଼ା ହୋଇ ପାଟିକରି ଖେଳୁଥାନ୍ତି । ଦେଖିଲାବେଳକୁ ସେଗୁଡ଼ିକ ବନ୍ଧା । ଫିଙ୍ଗିଦେଲା-ବେଳକୁ ପୃଷ୍ଠାଗୁଡ଼ିକ ଫଡ଼୍‌ଫଡ଼୍ ଫିଟିଯାଉଥାଏ । ଉଡ଼ନ୍ତା ପକ୍ଷୀକୁ ଧରିଲା ପରି ଆଉ ଜଣେ ତାକୁ ଦୁଇ ହାତରେ ଧରି କାଦୁଅ ମେଞ୍ଚା ପରି ଚପି ଦେଉଥାଏ ଏବଂ ପୁଣି ଫିଙ୍ଗି

ଦେଉଥାଏ ଶୂନ୍ୟକୁ କିମ୍ବା ଧୂଳିକୁ । ଝଣା ଓଝରୀରେ ବନ୍ଧୁଗୁଡ଼ିକ ପଡ଼ର ପଡ଼ର ହୋଇ ବୁଣି ହୋଇଯାଉଥାନ୍ତି । ତାକୁ ଗୋଡ଼ରେ ଚକଟି, ଡୋପାର ସେମାନେ ଅଧ ଉଲ୍ଲାସରେ ଖେଳୁଥାନ୍ତି । ଆରପାଖରୁ ସାଇକଲ, ସ୍କୁଟର୍ ଚଢ଼ି କେତେଜଣ ଆସି ପହଞ୍ଚିଲେ । ଅଳ୍ପ ହସିଲେ । ଅଳ୍ପ ଆଡ଼େଇ ହେଲାପରି କିଛି ନକହି ପାରହୋଇଗଲେ । ତାଙ୍କ ପଛରେ ପିଲ ପଲ କୁହାଟିଲେ ଅସଭ୍ୟ ଭାଷାରେ । ମାନ୍ୟ ହୁଡ଼ିଲେ । ସେଥିରୁ ମୁଁ ଜାଣିଲି ଯେ, ସେଗୁଡ଼ିକ ତାଙ୍କ ଅଧ୍ୟାପକ ।

ମୋ ମୁଣ୍ଡ ଆହୁରି ବୁଲେଇଦେଲା । ପ୍ରାୟ ଝଲାପରି ଚାଲୁଥାଏ । ସହରର ଦୋକାନ ବଜାର ଆରମ୍ଭ ହୋଇଯାଇଥାଏ । ହଠାତ୍ କଣେ ଆସି ମୋତେ ବାଟ ଜଗି ଠିଆହେଲା । କହିଲା, 'ତୁମେ ଏ ଅଞ୍ଚଳରେ କ'ଣ କରୁଚ ମଉସା ? ତୁମେ ଆଜି ଅଫିସ୍ ଯାଇନାହଁ କି ?' ମୁଁ ତାକୁ ଅଚହ୍ନା ଢଙ୍ଗରେ ଚାହିଁଲି । ସେ ମୋ ମୁହଁକୁ ଚାହିଁ ହସିଲା ଏବଂ କହିଲା, 'ତୁମେ ବିବେକାନନ୍ଦର ବାପା ନୁହଁ କି ?' ମୁଁ ଆହୁରି କାବା ହୋଇ ଅନେଇଲି । ସେ ମୋ ହାତ ଧରି ଗୋଟିଏ ବଗ୍ର ପିଆଜି ଦୋକାନ ଭିତରକୁ ନେଇଗଲା । ଭିତର ବଖରା ପଛଆଡ଼େ କାକର ଅନ୍ଧାର ଗୁମ୍ଫାଟାଏ : ମୋତେ କିଛି ଦିଶୁନଥାଏ । ମନ ହେଉନଥାଏ ସେ ଭିତରେ ପଶିବାକୁ; କିନ୍ତୁ ଛାଇରେ ଟିକିଏ ବସି ନପଡ଼ିଲେ ମୋର ହୋସ୍ ବୁଡ଼ିଯିବ ବୋଲି ଭୟହେଉଥାଏ । ମୋତେ ସେ ଟୋକା ବସିବାକୁ କହିଲା । ହାତଧରି ଅଳ୍ପ ଘୁଞ୍ଚେଇ ନେଲା । ହାତରେ ଦର୍ଶାଣ୍ଡି ମୁଁ ଗୋଟାଏ କାଠ ବେଞ୍ଚ ଉପରେ ବସିପଡ଼ିଲି । ଆଖିବୁଜି ମୁଁ ବସିଥାଏ । ଗ୍ରାସ୍ତା ଉପରେ ଖଣ୍ଡେ ଦୁଇ ଖଣ୍ଡ ଗାଡ଼ି ପାରହୋଇଗଲା । ଶବ୍ଦ ସବୁ ବହୁଦୂରରୁ ଆହୁରି ଦୂରକୁ ଲିଭି ଲିଭି ଗଲା ।

ମୋ ମୁହଁକୁ କାକର ପାଣି ଚଳେ ଛିଟିଦେବାରୁ ମୁଁ ଚମକି ପଡ଼ିଲି । ସେ ପୁଣି ଗ୍ଲାସ୍‌ଟା ମୋତେ ଧରେଇ ଦେଇ କହିଲା, 'ପିଇଦିଅ' । ମୁଁ ଏକା ନିଃଶ୍ୱାସକେ ସେତକ ପିଇଦେଇ ଅନେଇଲି । ଅନ୍ଧାର ଭିତରେ ସେମାନେ ଚାରିଜଣ ଚୁପ୍‌ଚାପ୍ ବସିଥାନ୍ତି । ଏ ଜଣକ କେବଳ କଥା କହୁଥାଏ—'ଶୁଣ୍ ବେ, ମଉସାକୀ ବଚ୍ଚା ।'

ମୁଁ ଚା' ଟାକୁ ଥୋଇ ପାରିଲି ନାହିଁ । ମୋ ହାତରୁ କପ୍ ଖସିପଡ଼ିଲା । ମୁଁ ବାଉଳା ହେଲାପରି ନୁରକୁ ଚାହିଁଲି । "କିରେ, ଇଏ କ'ଣ ସବୁ ତୁ କହୁଛୁ ?"

ନୁର ସ୍ଥିର ଉଦାସ ଢଙ୍ଗରେ କହି ଚାଲିଲା, "ମୁଁ ବି ସେମିତି ଚମକିପଡ଼ି ସେ ବେଞ୍ଚଟାରେ ପଲଖି ହୋଇଗଲି । ସେ ଚାରିଟି କିଷ୍ଟଲ ପ୍ରତିମା ଷ୍ଟ୍ରିଙ୍ଗ୍-ଦିଆ କଣ୍ଢେଇ ପରି ସକ୍‌ଯାକ୍ ଠିଆହୋଇପଡ଼ିଲେ । ପଟ୍‌କିନା ଅଣ୍ଟାରୁ ଚକ୍ ଚକ୍ ଛୁରୀଟାଏ କାଢ଼ି ମୋ ଆଡ଼କୁ ଦେଖେଇ ଜଣେ ଠିଆହେଲା । ତାଙ୍କ ନେତା ଗାରଡ଼େଇ ଚାହିଁ କହିଲା, 'ଏ ହଗୁରା ବୁଢ଼ାକୁ କାହିଁକି ସେସବୁ ଦେଖଉଚୁ ? ଏ ଜାଗା ଅସନା କରିଦେବ ଶଳା !—ଦେଖ ବୁଢ଼ା ଏଠି ଯଦି ଗୁହମୂତ କରୁ, ତତେ ଜିଭ ଲଗେଇ ସେତକ ଚଟେଇ ଦେବୁ । ମୁଁ ତତେ ଏଠିକି ଆଣିବା ମତଲବ୍ ହେଲା ଯେ ମୁଁ ଯାହା କହୁଚି ତୁ ତୋ ସେ ବାଷ୍ଟାର୍ଡ଼ ପୁଅ ବିବେକାନନ୍ଦ ଓରେଫ୍

'ଉଲ୍‌ଫ୍'କୁ କହିଦେବୁ ।···ଆମ ଧନ୍ଦାରେ ସେ ଖଗୁଡ଼ି କରିଦେଲା । ଗୋଟାଏ ନୂଆ ଦଳ ଗଢ଼ିଦେଲା । ସେଥିପାଇଁ ଆମର ଯେତେବେଳେ ମୁହାଁମୁହିଁ ମୁକାବଲା ହବ ଦେଖାଯିବ ! ଏବେ ତାକୁ କହିଦବୁ ସେ ଖଗୁଡ଼ି ଗାର ଡେଇଁବ ନାହିଁ । ଆମ ମନ୍ତ୍ରୀ ଆମର, ସେ ସେଇ ସୀମାନା ମାଡ଼ିବ ନାହିଁ । ଆମ ଛୁରି ଉପରେ ସେ ଛୁରି ଚଳେଇବ ନାହିଁ । ଆମେ ଯେଉଁ ଶ୍ରମିକ ନେତା, ଇଉନିଅନ୍ ନେତା, ଅଫିସର, ଡାକ୍ତର, ପୋଲିସକୁ ପୋଷି ରଖିଚୁ, ସେମାନଙ୍କୁ ସେ କିଣିବାକୁ ଚେଷ୍ଟା କରିବନାହିଁ । ଆମ ମାଡ଼ୁଆଳ ଆମର, ତା ମାଡ୍ଡୁଆଳ ତା'ର । ଆମର କଲିକତା ଗାଡ଼ିରେ ସେ ହାତ ଲଗେଇବ ନାହିଁ । ଆମେ ତା ମାଡ୍ରାସ ଗାଡ଼ିରେ ମୁଣ୍ଡ ପୂରେଇବୁ ନାହିଁ । ଆମ ମାଲ, ଆମ ମାଇକିନା ଆମର । ସେଥିରେ ଯଦି ସେ ଲୋଭକରେ, ତାକୁ ସେଇଦିନ ଏତକ କହି ସେ ଦାନ୍ତ କଡ଼ମଡ଼ କରି ମୋ ବେକ ପାଖକୁ ଝୁଙ୍କି ପଡ଼ିଲା ।—କଣ୍ଠାରେ ଖାଇଯିବ ଯେମିତି ! ତା' ମୁହଁରୁ ସେମିତି କଞ୍ଚା ଆଇଁଷ ଗନ୍ଧ ପିଟିଦେଉଥାଏ । ମୋତେ ଆଉରି ଦାନ୍ତ ମାଡ଼ିଲା । ମୁଁ ଭୟରେ କେବଳ ସମ୍ଭାଳି ନେଉଥାଏ । ସେ ମୋତେ ହାବୁକେଇଲା ପରି ଠିଆକରିଦେଇ କହିଲା, 'ଏବେ ତୁ ଯୁଆଡ଼େ ମନ ସିଆଡ଼େ ଯା ! ଯଦି ଭୁଲରେ ଆମକଥା ଆଉ କାହା ଆଗରେ କହୁ···' ସେ କେବଳ କଟମଟ ଚାହିଁଲା । ବାକ୍ୟର ବାକି ଅଂଶ ସେତିକରେ ତା' ଆଖିରେ ତରିକଲା ପରି ମୁଁ ଦେଖିନେଲି—'ଆଉ, ଶୁଣ ! ତୁ ଆଜି ତୋ' ପୁଅକୁ ପାଇବୁନାହିଁ । ସେମାନେ ଆଜି ଗସ୍ତରେ ଯାଇଛନ୍ତି । ମନେ ରଖ୍, ଆମେ ଏ ସହରର ମାଲିକ—ବାକି ସବୁ ଖେଳ । ସେ ଶଳେ ଜୋକର, ଏକ୍ଟର—ଆମେ ଯେମିତି ନଚେଇବୁ, ସେମାନେ ସେମିତି ନାଚବେ । ନ ନାଚଲେ···କ୍ଲିକ୍ କରି ତୋଟି ପାଖରୁ ସିଧା ଗାରଟାଏ ଟାଣି ଦେଲା । ବାହାରେ ପବନ ଫାଳ ଫାଳ ହୋଇଗଲା । ଭିତରେ ରକ୍ତ ଖଗ ଖଗ ହୋଇଗଲା । ମୁଣ୍ଡ ଖସିପଡ଼ିଲା କାନ୍ଧ ଉପରୁ । ମୁଁ ଗୋଟାପଣେ ଥରୁଥାଏ ; କିନ୍ତୁ ମୋତେ ଭିତରୁ କେମିତି ଗୋଟାଏ ଦମ୍ଭ ଲାଗୁଥାଏ । ଏମାନେ ଯେତେ ଦୁର୍ଦ୍ଦାନ୍ତ ହୁଅନ୍ତୁ ପଛେ, ବାବୁଲାକୁ ଡରୁଛନ୍ତି । ବାବୁଲା ସ୍ୱାଙ୍କର ସମକକ୍ଷ, ସ୍ୱାଙ୍କ ଉପରେ ଗ୍ରେଖଣ୍ଡେ । ମୁଁ ବାବୁଲାର ବାପ । ସେମାନେ କିଛି କରିପାରିବେ ନାହିଁ ।

ମୁଁ ଖରାକୁ ଚଢ଼ିଆସିଲି ଏବଂ ମୋତେ ବେଢ଼ିଗଲା ତାତିଲା ଝାଞ୍ଜି, ଦାଢ଼ୁଆ ଚକ୍‌ଚକ୍ ଖରା । ମୋ ମନରେ ବୋଝେଇ ହୋଇଗଲା ଅସଂଖ୍ୟ ଦୁଶ୍ଚିନ୍ତା । ମୁଁ ଆସ୍ତେ ଆସ୍ତେ ଘରମୁହାଁ ଫେରିଗଲି । ଘରେ ବାବୁଲା-ବୋଉ ନଖାଇ ନପିଇ ମେଞ୍ଚା ହୋଇ ପଡ଼ିଥାଏ । ତାକୁ ଡାକିଲି । ଝିଅକୁ ଡାକିଲି । ଖିଆପିଆ କରିବାକୁ କହିଲି । ବାବୁଲା ଡେରିରେ ଫେରିବ ବୋଲି ମଧ୍ୟ ଖୁବ୍ ସ୍ୱାଭାବିକ ଗଳାରେ କହିଲି । ମୋ ଭିତର ଖଗ ଖଗ ହୋଇଯାଉଥାଏ । ତା' ମା'ର ଅଜସ୍ର ପ୍ରଶ୍ନ; କ୍ରୋଧ ଅଭିମାନ, ତା ଭଉଣୀର ଅବୁଝା ଡୋବା ଡୋବା ଆଖିରେ ଟଳମଳ ଲୁହ, ଦେଖି ନଦେଖିଲା ପରି, ଶୁଣି ନଶୁଣିଲା ପରି, ଗଣ୍ଡେ ଖାଇ ଦେଉ ଦେଉ

ମୁଁ ସେଇ ଆରାମଚୌକିଟାରେ ଶୋଇଗଲି । କେମିତି ଶୋଇଗଲି ଏବେ ମନେପକେଇଲେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।

ମୁଁ ନୁରକୁ ସେଇଠି ମୁହୂର୍ତ୍ତିଟାଏ ପୁଣି ଶୋଇବାକୁ ନଦେଇ କହିଲି, "ଆରେ ବାବୁଲି କେତେବେଳେ ଫେରିଲା ?—କ'ଣ କହିଲା, କ'ଣ ହେଲା ଚଞ୍ଚଳ କହୁନୁ ?" ମୋତେ ଲାଗୁଥାଏ ଆମ ବାବୁ କାହାକୁ କିଛି ନକହି ଚାଲିଯାଇଛି ଗସ୍ତରେ; କୁଆଡ଼େ ଯାଇଛି ଜଣାନାହିଁ । ଘୋର ବନସ୍ତ ଭିତରେ କୁଆଡ଼େ ପଶିଯାଇଛି । ରାତି ହୋଇଗଲାଣି—ସେ ଆଉର ଫେରିନାହିଁ !

ନୁର ସ୍ୱରରେ ମୋର ଏ ସମସ୍ତ ଉଦ୍‌ବେଗର କିଛି ହେଲେ ସ୍ପର୍ଶ ନଥିଲା । ସେ ଖୁବ୍ ଉଦାସ ଭଙ୍ଗୀରେ ଅଥଚ ସ୍ଥିର ସ୍ୱରରେ କହିଲା—"ସେଇ କଥା ପରା କହୁଛି, ଶୁଣ ! ମୁଁ ବାବୁଲି ବିଷୟରେ ପ୍ରାୟ ସବୁ ସ୍ଥିରଭାବରେ ଜାଣିସାରିଥିଲି; କିନ୍ତୁ ଚମକଲାପରି ମଝିରେ ମଝିରେ ମୋ ଦେହକୁ ଝାଳଟାଏ ନିଗିଡ଼ିଯାଉଥିଲା । ଏ କଥା କ'ଣ ପ୍ରକୃତରେ ସତ୍ୟ ? ସତେ କ'ଣ ବାବୁଲି ସେଇଆ ? ଏଇ ଅବିଶ୍ୱାସର ଭଙ୍ଗିତିକୁ ସମ୍ଭାଳିଲା ଭଳି ମୋ ଛାତିରେ ଦମ୍ଭ ନଥିଲା । ମୋର ସବୁ ଆଶା ଭାଙ୍ଗିଗଲା ପରେ ପୁଣି ଥରେ ତାକୁ ଗଢ଼ି ତୋଳିବାର ମୋର ସାହସ ନଥିଲା; ମୁଁ ସମୁଦ୍ରରେ ଭାସୁଥିବା କାଠଗଣ୍ଡିଟାଏ ପରି ଉଦାସୀନ ପଡ଼ି ରହିବାକୁ ଚାହୁଁଥିଲି ।

ବାବୁଲି ସେଦିନ ଫେରିଲାବେଳକୁ ଅନେକ ରାତି । ସେ ଆସ୍ତେ କବାଟ ବାଡ଼େଇବାରୁ ମୁଁ ଜାଣିଗଲି । ନିଜେ ଯାଇ ଫିଟେଇଦେଲି । ରାସ୍ତା ଲାଇଟ୍‌ରେ ବାବୁଲିର ଚେହେରା ପୁରା ଦିଶୁନଥାଏ । ତ' ବଡ଼ ବଡ଼ ଆଖି, ଦୁଇ ଦିନର କଣ ଦାଢ଼ି କିନ୍ତୁ ବାରିହେଉଥାଏ । ଏଇ ତା'ହେଲେ 'ଉଲ୍‌ଫ' । ଅରଣା ଚାରିଦଉଡ଼ିକଟା ତକେଇତ । ମୁଁ ତା' ଆଖି ଭିତରକୁ ଯୋଡ଼ାଏ ନିଃଶ୍ୱାସ ପର୍ଯ୍ୟନ୍ତ ଚାହିଁଲି । ସେ ମୋ ପଛେ ପଛେ ଆସି ଦାଣ୍ଡଘର ଆଲୁଅରେ ମୋତେ ସେମିତି ସଲଖ ଆଖିରେ ଚାହିଁଲା । କହିଲା—ଦୁଇ ମିନିଟ୍‌ରେ ଆସୁଛି ।' ପିଣ୍ଡା ଅନ୍ଧାରରେ ଠିଆହେଲା । ସିଗ୍ରେଟ୍ କାଢ଼ି ଲାଇଟର୍ ଲଗେଇଲା । ମୋତେ ସବୁ ଶୁଭୁଥାଏ— ଆରେ, ଆଉ କ'ଣ ବାକି ରଖିଚୁ ଯେ ମୋ ଆଗରେ ସିଗ୍ରେଟ୍‌ଟାଏ ଫୁଙ୍କିବାକୁ ଏମିତି ଆକଟ ପଡ଼ୁଛି ? ଅଭିମାନରେ ମୋ ଆଖି ଛଳଛଳ ହୋଇଗଲା ।

ବାବୁଲି ଆସି ମୋ ସାମନା ଚୌକିରେ ବସିଲା । କହିଲା, "ଆଜି ଯାହା ଯାହା ହେଇଛି ସବୁ ମୁଁ ଜାଣିଗଲିଣି । ତୁମେ ଏମିତି ଓଲୁଙ୍କ ଭଳି କାମ କରି ପାରିବନାହିଁ । ମୋତେ ଖୋଜିବା ଏଣିକି ଆଦୌ ପ୍ରୟୋଜନ ନାହିଁ । ମୁଁ ଯାହା କରୁଛି ଅନେକ ଚିନ୍ତା ପରେ ବୁଝିବିଚାରି କରୁଛି—ପ୍ରାୟ ବାଧ୍ୟ ହୋଇ କରୁଛି । ମୁଁ ବୁଝି ପାରୁଛି ଯେ ତୁମକୁ ଏ ସବୁ ଅଡ଼ୁଆ ଲାଗୁଥିବ । ତା'ର କାରଣ ହେଲା ଯେ ତୁମେ ଯେଉଁ ବିଶ୍ୱାସ ଆଉ ମୂଲ୍ୟବୋଧ ନେଇ ବଞ୍ଚିଆସିଛ, ତା' ଆମ ପାଇଁ ଅବାନ୍ତର । ଆମେ ତୁମଭଳି ପରମ୍ପରାକୁ ସ୍ୱୀକାର କରି ସମ୍ମାନ ଦେଇ ପୃଥିବୀକୁ ଭାଗ ବାଣ୍ଟି ବଞ୍ଚିପାରିବୁନାହିଁ । ଆମେ ସବୁ ନିଅଣ୍ଡିଆ

ଯୁଦ୍ଧର ଅସଂଖ୍ୟ ମଣିଷ । ଆମେ ପରସ୍ପରକୁ ସ୍ୱୀକାର କଲେ, ନଠକଲେ, ଛକାପଞ୍ଝାରେ ଅନ୍ୟକୁ ପରାସ୍ତ ନକଲେ ବଞ୍ଚିପାରିବୁନାହିଁ । ଏବେ ବଞ୍ଚିବା ଢଙ୍ଗଟା ହିଁ ସମ୍ପୂର୍ଣ୍ଣ ବଦଳି ଯାଇଛି—ତୁମେ ହଠାତ୍ ବୁଝିପାରିବ ନାହିଁ । ତୁମ ପାଇଁ ମଫସଲ ଅଦାଲତ ଦସ୍ତର ଆଜି ଏବେବି ମୂଲ୍ୟବାନ୍ । ଆମ ପାଇଁ ସେଗୁଡ଼ାକ କାଗଜର ସ୍ତୂପ । ନଈଧାରରେ ପୁରୁଣା ଭଙ୍ଗା କବର ପରି ଅର୍ଥହୀନ ଗୁଡ଼ାଏ ଇଟାଘର । ସମସ୍ତ ଦେଶରେ ଏବେ ଆମର ଶାସନ । ମୂଳରୁ ଚୂଳ ଯାଏଁ ଆମେ ହିଁ ଜଡ଼େଇହୋଇ ରହିଛୁ । ଉପରେ ଅଲଗା ଦିଶୁଥିଲେ ସୁଦ୍ଧା ଭିତରେ ଏମାନେ ସମସ୍ତେ ଆମର ଲୋକ । ଆକ୍ଷିମାରିଦେଲେ ଆମେ ଚିହ୍ନିଦେବୁ । ଏଠିସେଠି ଥାଁ-ଥାଁ ପୁରୁଣାକାଳିଆ ବେଲୁନ୍ ଅଫିସର, ମାଷ୍ଟ୍ର, କର୍ଣ୍ଣି ଅଛନ୍ତି—ସେଗୁଡ଼ାକୁ ଆମେ ମାଛି ପରି ଜ୍ଞାନ କରୁ । ସେମାନେ ଏ ଯୁଗରେ ବଞ୍ଚିବା ପାଇଁ ଯୋଗ୍ୟ ନୁହନ୍ତି । ଧନ, ପ୍ରତିପତ୍ତି ସୁଖ, ପଦମର୍ଯ୍ୟାଦା ସବୁ ଆମ ହଦ୍ୟାରେ ସମ୍ଭବ; ତାଙ୍କ ହଦ୍ୟାରେ ନୁହେଁ । ଛାଡ଼, ତୁମକୁ ଏ ସବୁ କହିବାର ଅର୍ଥ ହେଲା ଯେ ତୁମେ ଏଥିରେ ଗୁଡ଼ାଏ ଚମକିତ ହେବାର କାରଣ ନାହିଁ । ତୁମ ଭିତରେ ଯାହା ଲୁଚିରହିଥିଲା ତାକୁ ଆମେ ଖୋଲଖୋଲି ପ୍ରକାଶ କରିଦେଲୁ । ଆମର ସବୁ ଚିନ୍ତା ଆଉ ଚଳଣି କିଛି ନୂଆ କଥା ନୁହେଁ । ତୁମ ରକ୍ତରେ ସେ ସବୁ ଥିଲା । ତୁମେ ତୁମ ସମୟର ମୂଲ୍ୟାଙ୍କୁ ନେଇ ଚାଲିଗଲ । କ'ଣ ପାଇଲ ନପାଇଲ ତୁମକୁ ଜଣା; ଆମେ କିନ୍ତୁ ଆମ ସମୟକୁ ଚିହ୍ନିଛୁ । ସେଥିପାଇଁ ତୁମର ସୃଷ୍ଟିକରିଥିବା ସବୁ ଅଭିଳାଷକୁ ଆମେ ଉପେକ୍ଷା କରିଛୁ । ଏଇଟା ବି ଦିନେ ପୁରୁଣା ହୋଇଯିବ; ପୁଣି ତୁମର ମୂଲ୍ୟ ପ୍ରଚଳିତ ହୋଇଯିବ । ସେଥିପାଇଁ ଆମେ ପ୍ରସ୍ତୁତ ଅଛୁ । ମୁକାବିଲା ହେବ । ଆମେ ସହଜରେ ଛାଡ଼ିବୁନାହିଁ । ତୁମେ ବି ତ ସହଜରେ ଛାଡ଼ୁନାହଁ ।"

...ବାବୁଲି ଚମକିଲା ଠିଆହୋଇପଡ଼ି କହିଲା—"ବକ୍ତୃତା ଦେବା ମୋର ଅଭ୍ୟାସ ନୁହେଁ । ମୁଁ ସୈନିକ । ଯୁଦ୍ଧ ଏଇଟା ମୋର ବୃତ୍ତି । ଏଥିରେ ମାସିକ ହାରାହାରି ଲକ୍ଷେ ଟଙ୍କା । ଆଜି ଗୋଟାଏ ପୁରୁଣାକାଳିଆ ଢୋକା ଅଫିସର ସଙ୍ଗେ ଟକ୍କର ହେବାର ଅଛି । ସେ କାଳିଆ ବେଲୁନ୍କୁ ଆଜି ସଫାକରିଦେବାକୁ ପଡ଼ିବ ।" ଏତିକି କହୁ କହୁ ସେ ସୁଙ୍ଗିଯିବାକୁ ବସିଲା । ଜଦରୁ ଉଠିଆସି ତା' ମା' କ'ଣ କହିବାକୁ ଯାଉଥିଲା—ସେ ହାତ ଟେକି ତାକୁ ଚୁପ୍ କରିଦେଲା—"ତୋ ଝିଅ ବାହାହେବ ନା ନାହିଁ ? ତୋ' ପୁଅ କୋଠା କରିବ ନା ନାହିଁ ? ଗାଡ଼ି ଚଢ଼ିବ ନା ନାହିଁ ? ସେଥିପାଇଁ ପଇସା ରଖିଛୁ ?" ମୋତେ କହିଲା, 'ତୁମେ ସେମିତି ଆଉ ଔଲୁଙ୍ଗ ଭଳି ଏଠିସେଠି ମୁହଁ ଗଳେଇବ ନାହିଁ । ମୋର ଓସବୁ ପସନ୍ଦ ନୁହେଁ । ଚୁପ୍‌ଚାପ୍ ଘରେ ରହି ନିୟମିତ ରକ୍ତଚାପ ଔଷଧ ଖାଇବ ।" ବାବୁଲି ଚାଲିଗଲା । କେଜାଣି କାହିଁକି ମୋର ସାହସ ହେଲାନାହିଁ ତାକୁ କିଛି କହିବାକୁ ! ତା' ମା' ବି ଚୁପ୍ ଠିଆହୋଇ ରହିଗଲା ।

ମୁଁ ସେତେବେଳକୁ କାଠ । କିଏ ସେ ନୀତିବାଦୀ ଢୋକା ଅଫିସର ଯାହା ସହିତ ଏମାନଙ୍କର ମୁକାବିଲା ହେବ ? କେଉଁଠି ହେବ ? କେବେ ହେବ ? ମୁଁ କ'ଣ ବୁଝିବୁ

ସତର୍କ କରି ହଟି ଦେଇପାରିବ ? ତାକୁ କ'ଣ କହିଦେବ ଯେ ଯୁଗର ଗତି-ଧର୍ମ ବଦଳିଗଲାଣି—ଦେଖି ବୁଝି ଚାଲନ୍ତୁ । ତୁମ୍ଭ କ'ଣ ସହଜ ଶୋଭା, ଏମାନଙ୍କ ସହିତ ହାତ ମିଳାଇ ସାବସ୍ ଭଣିବାକୁ ମୁଁ ତାକୁ ଆଉ କେମିତି କହିପାରିବି ? ମୋର ସେ ସାହସ କାହିଁ ?

ନୂଆ ବଂଶକୁ ମଧ୍ୟ କିଛି କହିବାକୁ ମୋର ସାହସ ନଥିଲା । ଯାହା ହେଉଛି ଆମେ କଏ ତାକୁ ରୋକିବାକୁ ? କ'ଣ ବା ଆମେ ଜଗିବୁ—ପୁଅକୁ ନା ଯୁଗକୁ ? ଯାହା ଖସିବାର ଖସିଗଲାଣି । ଯାହା ଭାଙ୍ଗିବାର ଭାଙ୍ଗିଗଲାଣି । ସବୁ ଅଣ୍ଟା ଛାଡ଼ିଗଲାଣି । ଆଉ କ'ଣ ଅଛି ? ଏ ଜଳ ବରଡ଼ାପତ୍ରକ ସବୁବେଳେ ଚଳମୁର୍ଚ୍ଛା । ସେଥିପାଇଁ ଖଣ୍ଡଖଣ୍ଡ ହୋଇ [illegible] ଭାବ ପ୍ରକାଶ କଲେ କେତେ ନକଲେ କେତେ ! ସ୍ନେହ-ମମତା ବାପ ପୁତ୍ରଏ ତ ଉପର ବଢ଼ାଇବାକୁ ନସହି ଦିଏ ବୁଝାଏ, ଆଶୀର୍ବାଦ ନକରି ଦିଏ ବୁଝାଏ ?



# ଯଯାତି

ରାୟଗୁରୁ ପରିବାରରେ ଏମିତ କାହିଁକି ଗଙ୍ଗଶିଉଳି ଫୁଲ ପରି ସମସ୍ତେ ଫୁଟି ଫୁଟି ଝଡ଼ି-ପଡ଼ନ୍ତି, ଆଜିକୁ ସାତପୁରୁଷ ହେଲା, କେହି ଜାଣନ୍ତିନାହିଁ । ଅଭିଶପ୍ତ ଦେବତା, ଗନ୍ଧର୍ବ ପରି ସେମାନଙ୍କ ରୂପ । ଟଳଟଳ ପଦ୍ମପାଖୁଡ଼ାପରି ସେମାନଙ୍କ ଆଖି । ଶାଣିତ ସୁବର୍ଣ୍ଣପରି ରଙ୍ଗ । ଅଥଚ ସବୁଗୁଡ଼ିକ ଅଳ୍ପାୟୁଷ । ଅଚଳାଚଳ ସମ୍ପତ୍ତି, ଯଶ, ମାନ, ବିଦ୍ୟାରେ ଝଟକୁଛନ୍ତି ଏ ଖଣ୍ଡମଣ୍ଡଳ; ଅଥଚ ସେସବୁ ଭୋଗିବାକୁ ସେମାନଙ୍କର ବେଳ ନାହିଁ । ଲୋକେ ସେଥିପାଇଁ ସେ ପରିବାରଟାକୁ ଯେତିକି ଖାତିର କରନ୍ତି, ତା' ଅପେକ୍ଷା ଅଧିକ ସନ୍ତ୍ରସ୍ତ ହୋଇ ଅନେଇ ରହନ୍ତି ଦୂରରୁ—ଗ୍ଳଣି ବର୍ଣ୍ଣ ଘାଟୀ ଉପରେ କେମିତି ବଜ୍ର ପରି ଛିଡ଼ିପଡ଼ୁଛି କାଳଚକ୍ର ସେମାନଙ୍କ ମୁଣ୍ଡରେ । ସେଥିରୁ କେହି ହେଲେ ନିସ୍ତାର ପାଉନାହାନ୍ତି । ବହୁବିଧ ତନ୍ତ୍ର, ମନ୍ତ୍ର, ପ୍ରୟୋଗ, ଯାଗଯଜ୍ଞ, ଅନୁଷ୍ଠାନ, ଜଳାଶୟ, ମନ୍ଦିର ପ୍ରତିଷ୍ଠା, ଅପରାଜିତା, ରୁଦ୍ର-ଅଭିଷେକ, ଲକ୍ଷ ଲକ୍ଷ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପରେ ସୁଦ୍ଧା କୌଣସି ଫଳ ଲାଭ ହେଲାନାହିଁ । ନିଷ୍କମ୍ପ ଦେବୀ-ଖର୍ପର ପରି ଦାଢ଼ ଟେକିହୋଇ ରହିଛି ଗ୍ଳଣ ବର୍ଣ୍ଣ ପାଖରେ । ତାକୁ ଡେଇଁଯିବ ଏପରି ସାଧ କାହାର ?—ଓଃ, କି ଅଭିଶାପ ଗ୍ରାସି ରହିଛି ଏ ପ୍ରତିଭାବନ୍ତ ପରିବାରଟାକୁ !

ଏବେ ତିନିପୁରୁଷ ହେବ ସେମାନେ ଏ ଭାଗ୍ୟଲିପିକୁ ମାନିନେଇଛନ୍ତି । ସ୍ଥିର କରିଛନ୍ତି ଯେ କେବଳ ସବୁଠାରୁ ବଡ଼ପୁଅ ହିଁ ବିଭାହେବ; ବାକି ସମସ୍ତେ ବାଡ଼ୁଅ ରହିବେ । କ'ଣ ପ୍ରୟୋଜନ ଅଛି ଗୁଡ଼ାଏ ଅଳ୍ପାୟୁଷଙ୍କ ସଂଖ୍ୟା ବଢ଼ାଇବାରେ ? କିନ୍ତୁ ବଂଶରକ୍ଷା ହେଉଥାଉ ! ଯଦି କେବେ ଏ ଦୁର୍ଲଙ୍ଘ୍ୟ ଗାର ଘୁଞ୍ଚିଯାଇପାରେ ! ସେ ପରିବାରରେ ତ ସୁବିଜ୍ଞ ପଣ୍ଡିତଙ୍କର ଅଭାବ ନାହିଁ । ଅନେକ ଲୋକ ଦୂରଦୂରାନ୍ତରୁ ତାଙ୍କ ପାଖକୁ ଆସନ୍ତି କୌତୂହଳ ଏବଂ ଅବିଶ୍ୱାସ ନେଇ । ଆଲୋଚନା କରନ୍ତି । ଅଭିଶାପ ଖଣ୍ଡନ ପାଇଁ ରୁଦ୍ରଯାମଳ ସ୍ତୋତ୍ର ପାଠ କରିବାକୁ କହନ୍ତି; କିନ୍ତୁ ରାୟଗୁରୁ କିଛି ନକହି ହସି ଦିଅନ୍ତି; ବରଂ ବେଳେବେଳେ ପରିହାସ କରି କହନ୍ତି, "ରାୟଗୁରୁ ପରିବାର ଏକପ୍ରକାର ଦେବତା ପରିବାର, କାରଣ ଏଠି କେହି ଜରାଗ୍ରସ୍ତ ହୁଅନ୍ତି ନାହିଁ । ଆଉ ସମସ୍ତଙ୍କ ପାଇଁ ଯିନା ମୃତ୍ୟୁ ଏକ ଅଜ୍ଞାତ ଭୟ, କେଉଁଠି ଲୁଚିରହିଛି ଜଣା ପଡ଼ୁନାହିଁ—କିନ୍ତୁ ଆମ ପାଇଁ ତ ସେ ଅତି ସ୍ଥିର ପ୍ରାଞ୍ଜଳ—ଅଗ୍ନିରେଖାଟିଏ ! ସେଥିପାଇଁ ଆମର ସଂକ୍ଷିପ୍ତ ଜୀବନକୁ ଆମେ ସଂଯତ, ନିୟନ୍ତ୍ରିତ କରି-ପାରୁଛୁ । ପ୍ରସ୍ତୁତ ହୋଇ ପାରୁଛୁ ବିନା ଦ୍ୱିଧା ସଙ୍କୋଚରେ ପାରିହୋଇଯିବା ପାଇଁ ।"—

ଆସିଥିବା ଲୋକେ ଏ ପରିହାସକୁ ଆଉ ପ୍ରକାରେ ବୁଝନ୍ତି । ଏତେ ଅସହାୟତା ଦେଖି ସେମାନେ ତଳକୁ ମୁହଁପୋତି ଚାଲିଯା'ନ୍ତି । ତାଙ୍କୁ ବିକଳ ଲାଗେ । ଆଖି ଛଳ ଛଳ ହୋଇଯାଏ ।

ଏବେ କିନ୍ତୁ ଦୁଇ-ତିନି ବର୍ଷ ତଳେ ଗୋଟିଏ ଅଦ୍ଭୁତ ଘଟଣା ଘଟିଛି । ବିଶ୍ୱନାଥ ରାୟଗୁରୁ ସପ୍ତମ ପୁରୁଷର ବଡ଼ପୁଅ । ତାଙ୍କର ଛ'ଭାଇ ସମସ୍ତେ ଅବିବାହିତ । କିଏ କେଉଁଠି ସବୁ ଭାରତସାରା ବିଭିନ୍ନ ମୂଳକରେ ବୁଲୁଛନ୍ତି । ସେମାନେ କିନ୍ତୁ ସମସ୍ତେ ଯଥାସମୟରେ ଘରବାହୁଡ଼ା ଫେରିଆସିବେ । ଯେମିତି ଦୁଇ ଦୁଇ ବର୍ଷ ଅନ୍ତରରେ ସେମାନେ ସଂସାରକୁ ଆସିଥିଲେ, ସେଇ କ୍ରମରେ ପ୍ରାୟ ସେମାନେ ବିଦାୟ ନେଇଯିବେ । ବିଶ୍ୱନାଥ ରାୟଗୁରୁଙ୍କୁ ଅଣଚାଳିଶ ପୂରିଆସିଲାଣି । ଆଉ ବର୍ଷକ ପରେ ଆରମ୍ଭ ହୋଇଯିବ ସପ୍ତମ ପୁରୁଷର ମହା-ପ୍ରସ୍ଥାଣ ପର୍ବ । ସେଥିପାଇଁ ସମସ୍ତେ ପ୍ରସ୍ତୁତ । ସେ କିନ୍ତୁ କ'ଣ ଗୋଟାଏ ଆଶା ରଖି ତାଙ୍କ ସବା ସାନପୁଅର ନାଁ ରଖିଛନ୍ତି ମୃତ୍ୟୁଞ୍ଜୟ । ପିଲାଟିକୁ ଏଇଲାଗେ ନଅ ବର୍ଷ; କିନ୍ତୁ ତିନି ବର୍ଷ ତଳେ ହଠାତ୍ ଦେଖାଗଲା ଯେ ତା'ର ମୁଣ୍ଡବାଳ ପାଚିଯାଉଚି । ସେ ଦୁର୍ବଳ ହୋଇ ଯାଉଛି । ଅନେକ ଡାକ୍ତର, କବିରାଜ, ହାକିମ ଆସି ପରୀକ୍ଷା ନିରୀକ୍ଷା କଲେ । ନାନାପ୍ରକାର ଚିକିତ୍ସା ସତ୍ତ୍ୱେ ପିଲାଟି ଶୀର୍ଣ୍ଣ ହୋଇଗଲା । ତା'ର ଯୋଡ଼ ଉପରେ ରୂଢ଼ ଉଠି ପାଚିଗଲା । କାନମୁଣ୍ଡା ଉପରୁ ମାଉଁସ ଝୁଣିହୋଇ ଖପୁରିହାଡ଼ ବାରିହେଲା । ସାରା ଦେହ ଶିରାଳ ହାଡ଼ୁଆ ଦିଶିଲା । ରାୟଗୁରୁ ପରିବାରର ସେ ଅଦ୍ଭୁତ ଆଖି ଯୋଡ଼ିକ ପଶିଗଲେ କୋଟରରେ । ଧୁଡୁଧୁଡୁ ହୋଇ ହାଡ଼ରୁ ଚମ ଓହଳି ପଡ଼ିଲା । ସମସ୍ତେ ବିମୂଢ଼ ହୋଇ କେବଳ ଚାହିଁ ରହିଲେ, କେମିତି ବର୍ଷ ଚାରିଟାରେ ତାଙ୍କ ଆଗରେ ସାଢ଼େ ତିନିଫୁଟ ଉଚ୍ଚ ପାକଳ ବୁଢ଼ାଟିଏ ତାଙ୍କୁ ମିଟିମିଟି ଅନେଇଛି । ଆଶ୍ଚର୍ଯ୍ୟ ! ଯେଉଁ ପରିବାରରେ ବୁଢ଼ା ହେବାର ଅନୁଭୂତି ନାହିଁ, ତା' ପାଇଁ ସୁଯୋଗ ମଧ୍ୟ ନାହିଁ, ସେଇଠି ପୁଣି ଏମିତି ଅକାଳ-ବୃଦ୍ଧଟିଏ ଜନ୍ମିବ—ଏହା ସମସ୍ତଙ୍କୁ ବିସ୍ମିତ କଲା । ସାତପୁରୁଷର ସଞ୍ଚିତ ଜରା ବୋଧହୁଏ ରୂପ-ପରିଗ୍ରହ କଲା । ଅକାଳମୃତ୍ୟୁ ଯାକୁ ଏ ପରିବାରରେ ପଶିବାକୁ ଦେଉନଥିଲା—ଏବେ ସେ ମୃତ୍ୟୁକୁ ଲାଙ୍ଘି ଆସିଲା । ବିଶ୍ୱନାଥ ରାୟଗୁରୁ ଜାଣି ନଥିଲେ ଯେ ତାଙ୍କ ସାନପୁଅ ମାଧ୍ୟମରେ ତାଙ୍କୁ ଏମିତି ପରିହାସ ସହିବାକୁ ହେବ ।

ବଡ଼ ବଡ଼ ଡାକ୍ତର ମତ ଦେଲେ ଯେ ତାହା ଏକ ଅତି ଅସାଧାରଣ ଉତ୍କଟ ରୋଗ । ରୋଗର ନାଁ ବାର୍ଦ୍ଧକ୍ୟ । ସେ ଥରେ ଗ୍ରାସ କଲେ ପ୍ରଖର ବେଗରେ ଜରା ମଡ଼େଇ ହୋଇ ପଡ଼େ । ବର୍ଷକରେ ସେ ଦଶବର୍ଷ ଗ୍ରାସ କରିଯାଏ । ଏଣୁ ମୃତ୍ୟୁଞ୍ଜୟର ପରମାୟୁ ଆଉ ବର୍ଷକରୁ ଅଧିକ ନୁହେଁ ।...କିନ୍ତୁ ଏସବୁ ସତ୍ତ୍ୱେ, ବଡ଼ ଆଶ୍ଚର୍ଯ୍ୟର କଥା ଯେ ଶରୀର ଜୀର୍ଣ୍ଣ ବିବର୍ଣ୍ଣ ହୋଇଯାଉଥିଲେ ମଧ୍ୟ ମନରେ ସେ ସେଇ ନଅ ବର୍ଷର ବାଳକଟିଏ । ସେମିତି ଖୁକୁବୁଜିଆ, ଖେଳପ୍ରିୟ, ଅଝଟ ସାନପୁଅ । ସେ ତା' ଚାରିଆଡ଼େ ସବୁଦିନେ ଏତେ ଜନ-ଗହଳି ଦେଖି ଟିକିଏ ଦବିଯାଇଛି । ବୁଝିପାରୁନାହିଁ ତା'ର କାରଣ । କେମିତି ଗୋଟାଏ

ଆତଙ୍କରେ ସେ ମା' ପାଖକୁ ଲେସି ହୋଇ ବସିରହୁଛି । .. ମା' ସବୁବେଳେ କାନ୍ଦୁଥିବା ସେ ଦେଖୁଛି, ବୁଝିପାରୁନାହିଁ । ଖେଳିବାକୁ ହଠାତ୍ ଉଠିପଡ଼ିଲାବେଳେ ଆଣ୍ଠୁ ଲଖିଯାଉଛି । ସେ ବିକଳ ହୋଇ କାନ୍ଦିପକାଉଛି । ସମସ୍ତେ ଚାଲିଗଲା ପରେ କେବଳ ମଳିନବସନା ମା'ଟିଏ ତାକୁ କୋଡ଼ରେ ପୂରେଇ ବସିରହନ୍ତି । ତା'ର ଧଳା ଝାଆଁସା ବାଳକୁ ଆଉଁସି ଦେଇ, ବିହ୍ୱଳ ହୋଇ ଗୁଡ଼ାଏ ବାହୁନି ବାହୁନି କାନ୍ଦନ୍ତି । ପୁଅ ତାଙ୍କ ଆଖିରୁ ଲୁହ ପୋଛି ଦିନେ କାନ୍ଦି କାନ୍ଦି ଅଳି କରେ, "କାନ୍ଦ୍ନା ମା', କାନ୍ଦନା ।" ଆଖିବୁଜି ସେ ଅନୁଭବ କରନ୍ତି ଯେ ପିଲାଦିନେ ତାଙ୍କ ଜେଜେବାପା ପିଣ୍ଡା ଉପରୁ ତାଙ୍କୁ ପ୍ରବୋଧ କରୁଛନ୍ତି— ଅବିକଳ ସେମିତି ସ୍ୱର !! ସେ ମଝମଝି ଚାହିଁଦିଅନ୍ତି । ଭୟଙ୍କର ଦୁଃସ୍ୱପ୍ନ ପରି ସେ ଅନ୍ୟ ସତ୍ୟଟାକୁ ସହଜରେ ମାନି ନେଇପାରନ୍ତି ନାହିଁ । କେତେବେଳେ ଉପରୁ ଖେଳନା, ଚିତ୍ରବହି, ରଙ୍ଗ ତୂଳି ନେଇ ପୁଅକୁ ଖେଳାନ୍ତି । ସେ ହାତରେ ତୂଳିଟାକୁ ସ୍ଥିର କରି ଧରିପାରେ ନାହିଁ । ତା' ହାତ ଥରେ । ତା' ମୁହଁ ଥରେ । ମା' ବିକଳରେ କାନ୍ଦିପକାନ୍ତି । ତା' ହାତ ଧରି ଚିତ୍ର କରିଦିଅନ୍ତି । ସେ କାଶିଲା ପରି ହସିଦିଏ । ତା'ର ସେ ରେଖାବହୁଳ ବୁଢ଼ା ମୁହଁରେ ସ୍ଳେଟ ପାଳୁଆ ପାଟିଟିକୁ ଦେଖି ତାଙ୍କ ଅନ୍ତରାତ୍ମା ଦୋହଲିଯାଏ । ସେ ଶିହରି ଉଠନ୍ତି ।

ବିଶ୍ୱନାଥ ରାୟଗୁରୁଙ୍କ ପୂର୍ବରୁ କେହି ପୁତ୍ରକଷ୍ଟ ଭୋଗି ନଥିଲେ । ତାଙ୍କୁ ସେଥିପାଇଁ ଆଉରି ଗୋଟାଏ ଚୋଟ ଖାଇବାକୁ ପଡ଼ୁଛି । ତାଙ୍କ ତଳ ଭାଇ ଗୁଜରାଟରୁ ଫେରି-ଆସିଲେଣି । ଏଇ ନୂଆ ବିପତ୍ତି କଥା ଶୁଣି ସେ ଚାଲି ଆସିଛନ୍ତି । ମୃତ୍ୟୁଞ୍ଜୟଙ୍କୁ ପ୍ରଥମେ ଦେଖିଦେଇ ସେ ସ୍ତମ୍ଭିତ ହୋଇଗଲେ । ତାଙ୍କ ପାଟିରୁ କଥା ବାହାରିଲାନାହିଁ । ଭାଇନାଙ୍କ ପାଖରେ ମୂକ ହୋଇ ବସିରହିଲେ କିଛି ସମୟ । ବିଶ୍ୱନାଥ ରାୟଗୁରୁ ଭାଇକୁ ଦେଖି ବୁଝିଗଲେ । ବୀରେନ୍ଦ୍ର ସତକୁ ସତ ଇନ୍ଦ୍ରପରି ଦେଖିବାକୁ । ତାଙ୍କଠାରୁ ଆଉରି ଟିକେ ଉଞ୍ଚ । ଓସାର ଛାତି । ଲମ୍ବା ଲମ୍ବା ଗୋଟାଳ ବାହୁ । ସେ ଖରା ମୁହଁଟା ତା' ହାତକୁ କେମିତି ମାଲୁଚ ସତେ ! ଆଖି ଝଟକୁଚ ଖରାପରି । ଚାହିଁଥିଲେ ଚାହିଁରହିବାକୁ ମନ ହେବ । ସେ ଆସିଛି, ତା' ପାଳି ବେଳକୁ ମୁଣ୍ଡ ପତେଇଦେବା ପାଇଁ ।...ତାଙ୍କ ଭିତର ଗୁରାଣ୍ଡି ହୋଇଗଲା । ବିଦ୍ରୋହ କରିଉଠିଲା ଅନ୍ତରାତ୍ମା । ସେ ଦିନେ ବରଂ ପାଞ୍ଚଥର ଜନ୍ମି ଏମିତି ମରିଯାନ୍ତେ—ବୀରେନ୍ଦ୍ର ଏ ରୂପ, ଏଇ ବିକ୍ରମ ନେଇ ବଞ୍ଚିଯାଆନ୍ତା ଭଲା !

ମାମୁଁ ଆସି ପହଞ୍ଚିଲେ । ତାଙ୍କ ବୟସ ଷାଠିଏ ଉପରକୁ । ବିଶ୍ୱନାଥ ରାୟଗୁରୁଙ୍କ ମା' ବହୁଦିନୁ ତଳ ଖୁଆଡ଼ରେ ଦିଅଁ ଘର ପାଖେ ରହୁଛନ୍ତି । କାନ୍ଦି କାନ୍ଦି ଆଖିକୁ ଭଲ ଦିଶୁ ନାହିଁ । ସେ ବିଧବା ହୋଇ କୋଡ଼ିଏ ବର୍ଷ ଧୈର୍ଯ୍ୟ ଧରି ରହିଛନ୍ତି । ଏଡ଼େ ବଡ଼ ଘରର ଯାବତୀୟ ଦାୟିତ୍ୱ ତୁଲାଉଛନ୍ତି । ବିଶ୍ୱନାଥ ତାଙ୍କୁ ନପଚାରି କିଛି କରନ୍ତିନାହିଁ ।

ମାମୁଙ୍କୁ ନେଇ ସେ ତଳ ଖୁଆଡ଼କୁ ଗଲେ । ସେଇଠି ମା', ଗୋସେଇଁମା'ଙ୍କ ପାଖେ, ଦିଅଁଙ୍କ ପିଣ୍ଡାରେ ବସିଲେ । ସାଙ୍ଗରେ ବୀରେନ୍ଦ୍ର ମଧ୍ୟ ଥାଆନ୍ତି । ଦୁଇ ପୁଅଙ୍କ ଆଡ଼କୁ

ଥରଟିଏ ଗ୍ରହିଁଦେଇ ଭାଇନାଙ୍କୁ ଓଲଗି ହେଲେ । କହିଲେ ବସିବାକୁ । ମନରେ ହରଷ ନାହିଁ । ଖୁବ୍ ଉଦାସ ସ୍ୱର ।

ବିଶ୍ୱନାଥ ତାଙ୍କ ଗୁରୁଜନମାନଙ୍କୁ ଦେଖି କେମିତି ଟିକିଏ ଦମ୍ଭ ଧାଇଲା ପରି ଅନୁଭବ କଲେ । ଏ ପ୍ରାଚୀନ ମଣିଷମାନେ କୋଡ଼ି କୋଡ଼ି ବର୍ଷ ଗ୍ରସ୍ଥଗୁରୁ ପରିବାରକୁ ତା'ର ସମ୍ପତ୍ତି, ବିପତ୍ତି, ଉଦୟ-ଅସ୍ତ ଭିତରେ ଧାରଣ କରି ଆସିଛନ୍ତି । ବିପତ୍ତିର ମେଘ ପୁଣି ଘୋଟିଆସୁ-ଥିବାର ସେମାନେ ଅନୁଭବ କଲେଣି । ସେମାନଙ୍କର ପୁରୁଣା ଅଣ୍ଟା ନଇଁଗଲାଣି । ଆଉ ବୋଧହୁଏ ମାଡ଼ ସହିବାକୁ ସେମାନେ ସମର୍ଥ ନୁହନ୍ତି ।—ତଥାପି ଏମାନେ ତ ସେଇ ପିତୃକୁଳ, ମାତୃକୁଳ, ଯେଉଁମାନେ ଅନ୍ୟ ସମସ୍ତଙ୍କ ଅପେକ୍ଷା ବେଶି ଉଦ୍‌ବିଗ୍ନ । ବିଶ୍ୱନାଥ ଗ୍ରସ୍ଥଗୁରୁ କେମିତି ଗୋଟାଏ ଭରସାରେ ଗ୍ରହିଁଲେ ସେ ତିନିଜଣଙ୍କୁ । ବେଶି ଦରୁଣ, ଏକ-ପ୍ରକାର ଅକୁଳାନ ସଙ୍କୋଚ ପରି ଦେଖାଗଲେ ଗୋସେଇଁମା' । ସେ ତିନିପୁରୁଷର ଅବସାନ ଦେଖିଛନ୍ତି । ଶ୍ୱଶୁର, ସ୍ୱାମୀ ଏବଂ ପୁଅ । ବିଧବା ହେଲାପରେ କପରି ସେ ପାଞ୍ଚପୁଅର ମରଣ ଦେଖି ସମ୍ଭାଳିଲେ, କେମିତି ତାଙ୍କ ଆତ୍ମାପୁରୁଷ ବୁକୁ ବିଦାରି ବାହାରିଗଲା ନାହିଁ, ଏହା ହିଁ ଆଶ୍ଚର୍ଯ୍ୟ । ସେ କାନ୍ଦିବାପାଇଁ କେବେ ହୁଏତ ଇଚ୍ଛା କରିନାହାନ୍ତି । ଶୋକାଚ୍ଛନ୍ନ ଅବସ୍ଥାରେ କେବଳ ରକ୍ତ ପାଣି ହୋଇ ଝରିଯାଇଛି । ମହାଭାରତ ଯୁଦ୍ଧର ରକ୍ତସ୍ନାନ ପରେ ଦ୍ୱାପର ଯୁଗର ଏ ଅବଶିଷ୍ଟ ଜନନୀଟି କାରୁଣ୍ୟକୁ ଶିଶୁଟିଏ ପରି ଲାଳନ କରୁଛି କେବଳ । ହଳେ ଦିଶୁଛି ଧୂସର ଧରିତ୍ରୀ ପରି ।

ମାମୁ ତଳକୁ ଗ୍ରହିଁ ବସିଥିଲେ । ଦୀର୍ଘ ନିଃଶ୍ୱାସଟିଏ ତା' ମନକୁ ବାହାରିଗଲା ତାଙ୍କ ବୁକୁ ଭିତରୁ । କହିଲେ, "ବୁଝିଲ ବାପା ବିଶ୍ୱନାଥ ! ତୁମେ ତ ଆମ କୁଳଗୌରବ । ସବୁ ବିଦ୍ୟାରେ ପାରଙ୍ଗମ । ଅଳ୍ପ ବୟସରେ ଅଗାଧ ସାଗର ଲଙ୍ଘିଛ । ସବୁ ଆଗତ, ଅନାଗତ କଥା ବୁଝିସାରିଛ । ମୁଁ ଖାଲି ଗୋଟିଏ କଥା କହିବାକୁ ଆସିଲି । ସାନପୁଅ ମୃତ୍ୟୁଗ୍ରସ୍ତ ବିଷୟ ଏ ଖଣ୍ଡମଣ୍ଡଳରେ ସମସ୍ତଙ୍କ ପ୍ରାଣ ଗୁରାଣ୍ଡି ଦଉଚି । ସେ ଦାବାଗ୍ନି ମୋ ଆଖିରେ ନାଚୁଥିଲା ତ । କାଲି ରାତିରେ ମୁଁ ତାକୁ ସ୍ୱପ୍ନ ଦେଖିଲି । ସେଇ ସ୍ୱପ୍ନ କଥା ବଡ଼ ଅଲୌକିକ । ମନେପଡ଼ିଲେ ମୋ ଦେହ ଶୀତକଣ୍ଟା ମାରିଯାଉଛି । ସେଇ କଥା ତୁମକୁ କହିଦେବି ବୋଲି ଆସିଚି । ତୁମେସବୁ ଜାଣିବା ଶୁଣିବା ପିଲା । ତୁମେ ତେଣିକି ସେଥିରୁ କ'ଣ ବୁଝିବା କଥା ବୁଝିବ ।"

ମାମୁଙ୍କ କଥାରେ ସମସ୍ତଙ୍କର ମନ ଠୁଳ ହୋଇଗଲା । କ'ଣ ସେ ସ୍ୱପ୍ନ ହୋଇପାରେ ? ତାଙ୍କ ପରିବାରରେ ତ ଜୀବନ-ମରଣ ଅଲୌକିକ ବ୍ୟାପାର । ସେଥିରେ ସ୍ୱପ୍ନ କ'ଣ, ସତ୍ୟ କ'ଣ ? ସବୁ ସେମାନେ ଏକାପରି ଦେଖି ଶିଖିଲେଣି । ସମସ୍ତେ ମାମୁଙ୍କ ଆଡ଼େ ଗ୍ରହିଁ ଅପେକ୍ଷା କଲେ । ମାମୁଙ୍କ ମୁଣ୍ଡରେ ଏବେ ସୁଦ୍ଧା କେତୋଟି କଳାବାଳ ଗାର କାଟିଲା ପରି ପଡ଼ିଛି । ମାମୁ କସ୍ତୁରୀ ଟୋପା ଉପରେ ଦେବୀସିନ୍ଦୂର ଲଗାନ୍ତି । ସବୁଦିନ ବଗଲା ଗୁଣନ୍ତି । ତାଙ୍କ ଆଖିପତା ଓହଳିଲା ପରି । ଘୁମେଇଲା ପରି ଚେହେରା ।

ସେ ଆଖି ଟେକ ସମସ୍ତଙ୍କୁ ଚାହିଁଲେ । କହିଲେ, "ସେତେବେଳକୁ ପହିଲ କୁକୁଡ଼ା ଡାକ ନଥାଏ । ମୋ ନିଦ କାହିଁକ କେଜାଣି ଭାଙ୍ଗି ଗଲା । ଥରେ ଭାଙ୍ଗି ଲେ ତ ଆଉ ନିଦ ହଉ ନାହିଁ । ମୋ ଆଖି ମେଲା ଥାଏ । ମୁଁ ଜାଣ ଚାହିଁ ରହିଥାଏ । ଏତକବେଳେ ମୋତେ ଦିଶିଲା ଯେ ମୁତ୍ୟୁଞ୍ଜୟ ବାଡ଼ିଟିଏ ଧର ଘର ଭିତରକୁ ପଶିଆସିଲା । ମୋ ଆଗରେ ଠିଆହେଇ ମୋ ଆଖିକୁ ଚାହିଁଲା । କେମିତ ଗୋଟାଏ ଠାଇ ଠାଇ ଗଳାରେ କହିଲା, 'ଏଇଥର ରାସ୍ତଗୁରୁବଂଶ ମୁକ୍ତିଲଭିବ । ମୁଁ ଆସିଛି ମୁକୁଳେଇବାକୁ । ମୁଁ ହିଁ ସେମାନଙ୍କ ଆୟୁପାନ କରିଥିଲି । ସେମାନେ ଅଳ୍ପାୟୁଷ ହୋଇଗଲେ ସାତପୁରୁଷ । ମୁଁ ନଜେ ଜନ୍ମିଛି ସବୁଠାରୁ ଅଳ୍ପାୟୁ ହୋଇ । ରୋଗ, ଜରା, ମରଣ ମୁଁ ଭୋଗିବ ସମସ୍ତଙ୍କ ପାଇଁ । ତା'ପରେ ସେମାନେ ମୁକ୍ତ ହୋଇଯିବେ । ମୋତେ ସେମାନେ ଚହ୍ନିପାରୁ ନାହାନ୍ତି । ମୁଁ ସେମାନଙ୍କ ପୂର୍ବପୁରୁଷ । ମୁଁ ପ୍ରଥମ ରାସ୍ତଗୁରୁ । ମୋ ନାଁ ପର୍ଶୁରାମ ନନ୍ଦ !'

ସମସ୍ତେ ଚମକପଡ଼ିଲେ ସେ ନାଁ ଶୁଣି । ରାସ୍ତଗୁରୁ ପରିବାର ସେ ପ୍ରଚଣ୍ଡ ପିତୃପୁରୁଷଙ୍କୁ ଚହ୍ନନ୍ତି । ସେ ଥିଲେ ତନ୍ତ୍ର-ସିଦ୍ଧ ।

ମାମୁ କହିଲେ, "ମୁଁ ସେଇ ସ୍ୱପ୍ନରେ ତାଙ୍କୁ ନମସ୍କାର କଲି । ସେ ମୋତେ କେବଳ ଚାହିଁଲେ କିଛି ସମୟ । ତା' ପରେ କହିଲେ, 'ମୋ କଥା ସେମାନଙ୍କୁ ଜଣାଇଦେବୁ ।' —ଆସ୍ତେ ମଉଳିଗଲା ରୂପ । ସେ ଉଭେଇଗଲେ । ସେଇଠୁ ମୋତେ ଦେଖାଗଲା ନାନା ବର୍ଣ୍ଣର ଆଲୁଅ । କେତେ ପ୍ରକାର ମଣ୍ଡଳ, ଯନ୍ତ୍ର, ଫୁଲ, ହୋମଧୂଆଁ । ନାନାପ୍ରକାର ଶବ୍ଦ ଶୁଭିଲା । ମୋତେ ଡର ମାଡ଼ିବାରୁ ଆଖି ଫିଟିଗଲା । ମୁଁ ଆଖି ବୁଜିଥିଲି ବୋଲି ଜାଣି ନଥିଲି । ମୋ ବୁକୁ ଦାଉଁ ଦାଉଁ ହେଉଥାଏ । ରାତ ତଥାପି ଥାଏ । ପହିଲି କୁକୁଡ଼ା ଡାକ-ଦେବାରୁ ମୁଁ ଶେଯ ଛାଡ଼ି ଉଠିପଡ଼ିଲି । ହାତ ଗୋଡ଼ ଧୋଇ ମାଳେ ଗାୟତ୍ରୀ ଜପିଲି ପିଣ୍ଡ ଅସ୍ତ୍ର କରିବାକୁ । ମୋର ମନେହେଉଛି ପୁଅ, ଏଇ କଥା ହିଁ ସତ । ସେଇ ପର୍ଶୁରାମ ରାସ୍ତଗୁରୁ ଆସି ତୁମମାନଙ୍କୁ ମହାକାଳଦଣ୍ଡରୁ ମୁକୁଳାଉଛନ୍ତି । ସେ ଚାଲିଗଲେ ତୁମେ ମୁକ୍ତ ହୋଇଯିବ ।"

ବାରମ୍ବାର ବିଡ଼ମ୍ବିତ ହେଲା ପରେ ରାସ୍ତଗୁରୁମାନେ ଆଉ ସହଜରେ କୌଣସି ନୂତନ ଆଶାକୁ ନେଇ ହୋରି ଖେଳନ୍ତିନାହିଁ । ଏସବୁ ସତ ହୋଇପାରେ; କିନ୍ତୁ ଚାଳିଶ ବର୍ଷର କାଳଦଣ୍ଡ ଏହାଠାରୁ ଆହୁରି ସତ୍ୟ । ଦୁଇଭାଇ ସେଥିପାଇଁ ବିଶେଷ ବିଚଳିତ ଜଣାଗଲେ ନାହିଁ । ମା' କିନ୍ତୁ ସମ୍ଭାଳି ପାରିଲେ ନାହିଁ । ଭାଇନାକୁ କହିଲେ, 'ଏତେ଼କ କଥା କି'ଣ କେବେ ସତ ହବ ? ଏ ଅଭିଶାପ କି'ଣ କେବେ ଖଣ୍ଡନ ହବ ? କେଜାଣି ! ତୁମକୁ ସିନା ପ୍ରତେ ହେଉଛି ଭାଇନା ! ହେଲେ, ମୁଁ ଏ ଚର୍ମ ଆଖିରେ ନ ଦେଖିଲାଯାଏଁ ବିଶ୍ୱାସ କରିପାରିବି ନାହିଁ ।'

"ଶୁଣ, ସୁଲକ୍ଷଣୀ ! ମୁଁ ଯାହା କହୁଛି ଅକ୍ଷରେ ଅକ୍ଷରେ ସତ ! କାଲିର ସ୍ୱପ୍ନ ସ୍ୱପ୍ନ ନୁହେଁ । ମୁଁ ଆଜି ମନେପକାଉଚି ପର୍ଶୁରାମ ରାସ୍ତଗୁରୁଙ୍କ ବିଷୟ, ଯାହା ପିଲାଦିନେ

ଶୁଣିଥିଲି । ସେ କଥା ସାଙ୍ଗରେ ଏ କଥା ଯୋଡ଼ିଲେ ଜଣାପଡ଼ୁଛି ସତ ବୋଲି ! ତୁ ଜାଣିଚୁ, କେମିତି ପର୍ଶୁରାମ ରାସ୍ତଗୁରୁ ପ୍ରଥମେ ଏ ରାଜ୍ୟକୁ ଆସିଥିଲେ ? ସେ ଆସିଥିଲେ ଚକୁଳିଆ ପଣ୍ଡା ରୂପରେ, ଅତି ହୀନ ଭିକ୍ଷାଶୀ ବ୍ରାହ୍ମଣ ହୋଇ । ସାଙ୍ଗରେ ପାଞ୍ଚପୁଅ ଆଉ ସ୍ତ୍ରୀ—ଖାଇବାକୁ କିଛି ନଥିଲା । ଏମିତି ଗାଁରୁ ଗାଁକୁ ବୁଲି ଭିକ୍ଷାକରି ଚଳୁଥାନ୍ତି । ଏଇଠି ଏଇ ନଈର ପର୍ଶୁରାମଘାଟ ସ୍ୱାଙ୍କର ସମସ୍ତିରୁ ନାଁ ହେଲା । ପ୍ରଥମ ଦିନ ଗଛମୂଳେ ରାତି ପାହିଗଲା । ସେଇଠି ମାଟି-ଝାଟିର କୁଡ଼ିଆ କରି କୁଟୁମ୍ବ ସମ୍ଭାଳିବା ପାଇଁ ପର୍ଶୁରାମ ଅକ୍ଳାନ୍ତ ଶ୍ରମ କରୁଥାନ୍ତି । ସେଦିନ ଅମାବାସ୍ୟା, ମଙ୍ଗଳବାର । ସକାଳୁ କାହା ପେଟରେ ଦାନା ପଡ଼ିନଥାଏ । ପିଲାମାନେ ଅନାବନା ଶାଗ ତୋଳି ଆଣିଥାନ୍ତି । ଶୁଖିଲା କାଠ ଗୋଟେଇ ଆଣିଥାନ୍ତି । ଖୁଦ ଗଣ୍ଡେ ହେଲେ ସିଝେଇବାକୁ ଅପେକ୍ଷା ଥାଏ । ପର୍ଶୁରାମ ନଦେ ସଞ୍ଜ-ବେଳକୁ ସେଦିନ ରୋଜଗାର ଭିତରୁ ରକ୍ତଚନ୍ଦନ, ସିନ୍ଦୂର, ଗୁଗ୍‌ଗୁଳ, ଜଡ଼ାତେଲ, ମାଟିଦୀପ, ମନ୍ଦାର ଫୁଲ ଆଦି ପୂଜାସାମଗ୍ରୀ ଗାମୁଛାରେ ବାନ୍ଧି ଆସି ପହଞ୍ଚିଲେ । ଖାଇବାକୁ ଚାଉଳ ନପାଇ ସ୍ତ୍ରୀଙ୍କର କ୍ରୋଧ ବ୍ରହ୍ମରେ ଚଢ଼ିଗଲା । ସେ ଶୋଧିଦେଇଗଲେ ଯାହା ତୁଣ୍ଡରେ ଆସିଲା—'କୋଉ ମା' ଆସି ତୁମକୁ ପେଜ ମୁନ୍ଦାଏ ଭଲା ଦେଲାଣି ? ପିଠିକୁ କନା ଅଣ୍ଟୁନାହିଁ । ବାରକାଠିଆ ଶାଗ ଗଣ୍ଡେ ଖାଇବାକୁ ଖୁଦ ଅଣ୍ଟୁନାହିଁ । ଧିକ୍ ତୁମ ଅଲାଜୁକ ସାଧକପଣିଆ ! ଧିକ୍ ତୁମ ଲଙ୍ଗୁଳୀ ମଶାଣିଚଣ୍ଡୀକୁ ! ଏଥିରୁ ଗୁଡ଼େ ମନ୍ତ୍ର ଜପି ଜପି ଦିହକ ବଢଗଲ । କଡ଼ାକର କାମ ନାହିଁ ! ଫୋପାଡ଼ ସେ ଚୁଲି ପୋଥିକୁ ନଈରେ । ଶାଗପଟାଳିଟିଏ କଲେ ଆଉର ମୋ ପିଲେ ପୋଷି ହୁଅନ୍ତେ । ଫିଙ୍ଗ ସେ ପୂଜା ପତ୍ରଆଗ; ନହେଲେ ମୁଁ ସେଥିରେ ନିଆଁ ଲଗେଇଦେବି ।'—ପର୍ଶୁରାମ ନଦେ ପୂଜା ଚାଉଳରୁ ଅଧେ ଜାଉ ରାନ୍ଧିବାକୁ ଦେଇଦେଲେ । କ୍ରୋଧରେ ଆଖି ଫାଟିପଡ଼ୁଥାଏ । ବସିଲେ ପୂଜାକରି । ସେ ଖାଲି ଏତେ ପାଟିରେ ଗର୍ଜୁଥାନ୍ତି । ବଜ୍ରବାଟୁଳି ପରି ମନ୍ତ୍ରମାନ ଛୁଟିକି ପଡ଼ୁଥାନ୍ତି ଶୁଖିଲା ନଈବାଲି ଉପରେ । ସେ ଖଣ୍ଡମଣ୍ଡଳ ଥରଥର ହୋଇ କମ୍ପୁଥାଏ । ଗାଁ ସାରା ସେଦିନ ସେ ଗର୍ଜନ ଶୁଣିଛନ୍ତି । କୁଡ଼ିଆ ଭିତରେ ପାଞ୍ଚପୁଅ, ସ୍ତ୍ରୀ ମେଞ୍ଚା ହୋଇ ଘାଲେଇ ଶୋଇଥାନ୍ତି । ପର୍ଶୁରାମ ବୋଲୁଥାନ୍ତି ଦେବୀ-ସ୍ତୋତ୍ର । ସେ ଆଭିଚାରିକ ମନ୍ତ୍ରପାଠ ଶୁଣିଲେ ଯାହାର ଦେହରେ ନାଭିକମଳ ଠକ୍ ଠକ୍ ଡେଇଁବ । ଝାଳ ବୋହିଯିବ ମଝିଁରୁ ହାଡ଼ଉପରୁ । ମୁଁ ଜାଣେ ସେ କେନସ୍ତ କ'ଣ ।—ମନ୍ତ୍ରବଳରେ ସେ ଦେବୀଙ୍କୁ ଘନ ଘନ ଆବାହନ କରୁଥାନ୍ତି । ଏମିତି ଅଦ୍ଭୁତ ମନ୍ତ୍ରପାଠ ତାଙ୍କ ସ୍ତ୍ରୀ ପୁନା କେବେ ଶୁଣିନଥିଲେ । ସେ ଭୟରେ ଜଡ଼ସଡ଼ ହୋଇ ଘରର ଅନ୍ଧାର ପିଣ୍ଡା ଉପରୁ ଚାହିଁଲେ ନଈକୂଳ ମଶାଣିକୁ । ଝୁଣାଗୁଣ୍ଡରେ ନିଆଁ ଲାଗିଲାପରି ଫାଉଁକିନା ଜଳିଉଠିଲା ଅଗ୍ନିକୁଣ୍ଡ । ପୁଣି ମୁଠାଏ କ'ଣ ତା' ଉପରକୁ ପର୍ଶୁରାମ ଛାଟିଦେଲେ । ଆଗ ଅପେକ୍ଷା ଆହୁରି ତେଜରେ ଲୋହିତବର୍ଣ୍ଣ ନିଆଁ ଜଳିଉଠିଲା ।···'ହେ ଉଗ୍ର ଚଣ୍ଡିକେ !—ହେ, ତ୍ର୍ୟମ୍ବକେ ! ହେ, ଧୂମ୍ରାକ୍ଷି ! ହେ କାଳଭୁଜଙ୍ଗମାଳିନୀ, ଜ୍ୱାଳାମୁଖୀ, ଯୋଗିନୀ, ଯୋଗମାୟା ! ଆବିର୍ଭୂତା ହୁଅ ! ଦାରିଦ୍ର୍ୟ-

ଦୁଃଖ ଦହନ କରିବାକୁ ହେ ଭ୍ରମରମାଳିନୀ, ତ୍ରିପୁରବିଜୟିନୀ, ପରମେଶ୍ୱରୀ, ସନ୍ତୁଷ୍ଟ ହୁଅ ! ବିମୋଚନ କର ଏ ଦୁଃସହ ଭାଗ୍ୟ-ସଙ୍କଟ !'

"ତାଙ୍କ ସ୍ତ୍ରୀ ପିଲାମାନେ ଲୁଚି ଲୁଚି ଶୁଣୁଥାନ୍ତି । ବାରମ୍ବାର ଚମକିଉଠୁଥିବା ଅଗ୍ନିଶିଖା ସ୍ଥିରହୋଇ ଜଳିଲା । ଲପଲପ ଶିଖାରୁ ସ୍ଫୁଲିଙ୍ଗ ଆକାଶକୁ ଚହଟି ତାରାମାନଙ୍କ ସହିତ ବିଲୀନ ହୋଇଗଲା । ସେ ଆତୁର ଗଦ୍‌ଗଦ୍ ନାଦରେ ଦେବୀଙ୍କୁ ଆବାହନ କରୁଥାନ୍ତି । ଅଣ୍ଟୁ ଉପରେ ଭରଦେଇ ସେ ବସିଥାନ୍ତି । ଆଙ୍ଗୁଳାରେ କ'ଣ ପାନକଳା ପରି ଦେଖା-ଯାଉଥାନ୍ତି । କିଛି ସମୟ ପରେ ସେ ସେଇଠୁ ଉଠିଲେ । ଗୋଟାଏ ହାତରେ ଶ୍ରୁବ । ସେଥିରେ ସେ ଆହୁତି ଟେକି ଧରିଥାନ୍ତି । ଅନ୍ୟ ହାତରେ ଜଡ଼ାତେଲର ଦୀପ । ପିଣ୍ଡାକୁ ଆସି ସେ ଠିଆହେଲେ । ତାଙ୍କ ଆଖି ତହକୁଥାଏ ନିଆଁରଡ଼ ପରି । ଦେହରୁ ଫୁଟି ବାହାରୁଥାଏ ଗୋଟାଏ ତାତଲା ତହତହ ହିଙ୍ଗୁଳ ବର୍ଣ୍ଣ । ତାଙ୍କ ସ୍ତ୍ରୀପିଲାମାନେ ଶଙ୍କିଗଲେ ।

"ସେ ଡାକପକେଇଲେ, "ଆସ ଦରିଦ୍ର, ଅକିଞ୍ଚନ, ଅପଦାର୍ଥ—ଏ କୁଡ଼ିଆରେ କିଏ ଅଛ ! ଆଜି ମା'ର କରୁଣା ବର୍ଷା ହେଉଛି । ପିଇଯାଅ ! ଧନଧାନ୍ୟ, ଗୋପ-ଲକ୍ଷ୍ମୀ, ବିଦ୍ୟା, ବୁଦ୍ଧି, କ୍ଷମତା ଯାହା ସବୁ ଆଖିପିଛୁଡ଼ାକେ ମା' ଦାନ କରିବେ ।"

"ନିଦରୁ ଉଠିଆସି ଫୁଙ୍ଗୁଳା ଦେହରେ ଜାକିଜୁକି ହୋଇ ସେମାନେ ଧାଡ଼ିବାନ୍ଧି ବସିଗଲେ । ପର୍ଶୁରାମ ତାଙ୍କୁ ହବିର୍ଭାଗ ଖାଇବାକୁ ଦେଲେ । 'ଯାଅ, ଆଜିଠାରୁ ଏ ପରିବାରକୁ ଦାରିଦ୍ର୍ୟ ସ୍ପର୍ଶ କରିପାରିବ ନାହିଁ ।'

"ପର୍ଶୁରାମ ପୁଣି ଫେରିଗଲେ ଶ୍ମଶାନକୁ । ପାହାନ୍ତା ପହରକୁ ଆସି ଗାଧୁଆଧାଧୁଆ ସାରି ସକାଳ ଖରାରେ ନିଆଁ ପରି ଝଟକୁଥାନ୍ତି । ରଜାଘର ପିଆଦା ଆସି ଡାକିନେଇଗଲା । ସେଇଦିନ ସେ ହେଲେ ପର୍ଶୁରାମ ରାଜଗୁରୁ । ଅଯାଚିତ ଅଜାଡ଼ ହେଲା ଧନ-ଦୌଲତ, ସମ୍ମାନ, ମର୍ଯ୍ୟାଦା, ଭୋଗବିଳାସର ସବୁ ପ୍ରକାର ଉପାଦାନ ।

"ପଚାଶଟା ବର୍ଷ ଉତ୍ତାରୁ ବଡ଼ପୁଅ ଠୋ-କିନା ମରିଗଲା । ତା' ପଛକୁ ତା ଛଅ ପାଞ୍ଚଟିଯାକ ପୁଅ ମରିଗଲେ । ବୁଢ଼ା ରାଜଗୁରୁ ବ୍ୟଥିତ ହେଲେ । ଅନେକ ପୂଜା ପ୍ରତିକାର କଲେ; କିନ୍ତୁ ଯାହା ସେ ନିଜେ ଯାଚନା କରି ଦେବୀ-ପ୍ରସାଦ ରୂପେ ଲାଭ କରିଥିଲେ, ତାକୁ ଅନ୍ୟଥା କରିବାପାଇଁ ତାଙ୍କର ସାମର୍ଥ୍ୟ ଅଣ୍ଟିଲା ନାହିଁ । ଦେବୀ-ଖର୍ପରକୁ ନିବାରଣ କରିବାକୁ ସାଧ କାହାର ? ସେ ସ୍ୱୟଂ ସପ୍ତପୁରୁଷଙ୍କ ଆହ୍ୱାନ କରି ଦେବୀଙ୍କୁ ପାରଣା ବାଢ଼ିଥିଲେ । ତାକୁ ପ୍ରତିଗ୍ରହ କରିବାକୁ ବଳ କାହିଁ ? ପଦମର୍ଯ୍ୟାଦା, ରାଜସମ୍ମାନ, ଭୋଗ-ଐଶ୍ୱର୍ଯ୍ୟରେ ଥାଇ ବୁଢ଼ା ପର୍ଶୁରାମ ରାଜଗୁରୁ ମନଦୁଃଖରେ ଦିନ କାଟିଛନ୍ତି । ତାଙ୍କ ଦେହାନ୍ତ ବେଳକୁ ବଡ଼ ନାତିକୁ ବୃଦ୍ଧି ପାଖେଇ ଆସୁଥାଏ । ଗୁରୁଅଡ଼େ ତା'ର ଯଶ କୀର୍ତ୍ତି ବ୍ୟାପିଯାଇଥାଏ । ତା' ପୁଅସବୁ ରାଜପୁତ୍ର ପରି ବଢ଼ିଆସୁଥାନ୍ତି । ବୁଢ଼ାଙ୍କର ସାହସ

ହେଲାନାହିଁ, ନିଜ ଆଖିରେ ନାତିମାନଙ୍କର ବଳପ୍ର ଦେଖିବାକୁ । ସେ ଜାଣିଶୁଣି ଦେହ ଛାଡ଼ିଦେଲେ । ନାତିକୁ ପାଖକୁ ଡାକି କହିଲେ, 'ଗ୍ରସ୍ତଗୁରୁ ପରିବାର ଉପରେ ଦେବୀ-କୃପା ବୃଷ୍ଟି ହେଉଛି । ମାତ୍ର ଭୋଗିବାକୁ ବେଳ ଅଣ୍ଟୁନାହିଁ । ସବୁ ମୋର ଦୋଷ । ମୁଁ ତା'ର ପ୍ରାୟଶ୍ଚିତ୍ତ କରିବି । ନିଜେ ଆସି ଆୟୁ ପାଳିଟ କରିଦେଇଯିବି । ତୁମେ, ବାପା ଇଷ୍ଟଦେବୀଙ୍କୁ ସନ୍ତୁଷ୍ଟ ରଖିଥିବ । ପୂଜା ଆରାଧନାରେ ତ୍ରୁଟି କରିବ ନାହିଁ । ମୁଁ ଆସିବି, ଅବଶ୍ୟ ଆସିବି ।' ଏମିତି ଡାକହାକ, ହୁକୁମ ଦେଇ ପରି ପର୍ଶୁରାମ ଗ୍ରସ୍ତଗୁରୁ ଯାଇଛନ୍ତି । ସାତପୁରୁଷ ପୂରିଗଲା ଉତ୍ତାରୁ ସେ ଏଇ ରୂପରେ ଜନ୍ମିବା କଥା •ଆମେ କାହିଁକି ଅବିଶ୍ବାସ କରିବା ? ଏଇ ମୃତ୍ୟୁଞ୍ଜୟ ତୁମର ସେଇ ବଡ଼ବଡ଼ିଆ ପୂର୍ବପୁରୁଷ । ବୁଢ଼ା ନିଜେ ଆସିଛି ଆୟୁପାଳିଟ କରିବାପାଇଁ । ତୁମର ଶଷ୍ଟ ଖଣ୍ଡନ ହେଲା ବୋଲି ଜାଣ ।"

ଏତିକବେଳେ କବାଟ ଫିଟେଇ ଅଗଣାକୁ ପଶିଆସିଲେ ବିଶ୍ୱନାଥଙ୍କ ସ୍ତ୍ରୀ । ସ୍ତ୍ରୀ' ଭିତରେ ସେ କଣ୍ଟା ହୋଇଗଲେଣି । କେଉଁ ଉଜ୍ଜ୍ୱଳ ମଣିଷ, କଳା ପଡ଼ିଗଲେଣି : ମୁଣ୍ଡ ନୁଖୁରା । ପିନ୍ଧା ଲୁଗାଖଣ୍ଡ କୋତରା ହୋଇଯାଇଛି । ସେ ମୃତ୍ୟୁଞ୍ଜୟର ହାତ ଧରି ଚଲେଇ ଆଣୁଛନ୍ତି । ସେ ଖଣ୍ଡେ ଧୋତି ବାହୁନିଆ ଢଙ୍ଗରେ ପିନ୍ଧିଛି । ଖଣ୍ଡେ ଗାମୁଛା ବେକରେ ପକେଇଛି । ରକ୍ତଚନ୍ଦନ କପାଳରେ ଲଗେଇଚି । ଖଣ୍ଡେ ବଙ୍କା ବାଡ଼ି ଧରି ଦେଖାଯାଉଚି ଅଶୀଏ ବର୍ଷର ପାରୁ ବୁଢ଼ାଟିଏ ପରି ।

ମା' ସମସ୍ତଙ୍କୁ ଏକାଠି ଦେଖି କହିଲେ, "ଏକା ଜିଦ୍‌ଧରା ଲଗେଇଲା ପରା ସେ ଗୋସେଇଁବାପା ହେଇ ଖେଳିବ । ଏମିତି ବେଶ ହେବାକୁ ଜିଦ୍ ଲଗେଇଲା ।"

ଅଭିନୟ କରିବା ପାଇଁରେ ମୃତ୍ୟୁଞ୍ଜୟ ଗମ୍ଭୀର ହୋଇ ସମସ୍ତଙ୍କୁ କହିଲା—"ମୁଁ ବଡ଼ ଜେଜେ !" ବାଡ଼ିଟିକୁ ତଳେ ଠୁକେଇଦେଇ ଚାହିଁଲା ସମସ୍ତଙ୍କୁ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାକୁ ଅବାକାବା ଅନେଇଥିବାର ଦେଖି ସେ ତରବର ହୋଇ ମା' କାନରେ ମୁହଁ ପୋତିଦେଇ ପକେଇଲା । ଲାଜେଇଗଲା ପିଲାଟା ।"

କିନ୍ତୁ ସନ୍ଦଭଳା ମାମୁ, ବିଶ୍ୱନାଥ, ବୀରେନ୍ଦ୍ର, ସୁଲକ୍ଷଣା ଆସି ତା' ଚାରିପଟେ ଆଣ୍ଠେଇ-ପଡ଼ିଲେ । ତା'ର ସେ ହାଡ଼ ଗୁଜୁଗୁଜୁ ଚଢ଼େଇ ବୁକୁ, ଚୁଡ଼ିଆ ଗୋଡ଼, ଧୋବ-ଫରଫର ମୁଣ୍ଡବାଳ ଦେଖି ତାଙ୍କର ପ୍ରତ୍ୟୟ ହୋଇଗଲା ସେ ସେ ହିଁ ପର୍ଶୁରାମ ଗ୍ରସ୍ତଗୁରୁ ।

ମାମୁ ହାତ ଯୋଡ଼ି କହିଲେ, "କିଏ ନାହିଁକଲା ତମେ ବଡ଼ଜେଜେ ବୋଲି ? ତୁମେ ସିନା ଛଦ୍ମ କରିଚ—ଆମେ ଏବେ ଜାଣିଗଲୁଣି ତୁମେ ଆମପାଇଁ ଏତ୍ତେବଡ଼ ଖବର ବୋହିଛ ! ତୁମେ ଜାଣିଶୁଣି ତୁମ ବଂଶକୁ ବଞ୍ଚେଇବାକୁ ଆସିଛ ।"

କାନ ଭିତରୁ ମୁହଁ କାଢ଼ି ମୃତ୍ୟୁଞ୍ଜୟ ଅନେଇଲା ଏମାନଙ୍କୁ । ଜର୍‌ଜର୍ ହେଇ ହସିଲା । କାଶ ଉଠିବାରୁ କାଶ ହସ ଏକାକାର ହୋଇଗଲା ।

ମା' ପିଠି ଆଉଁଷି ଦେଇ କହୁଲେ, "ହଉ ବାପା, ଖେଳ ସେତକ ଥାଉ । ହାଲିଆ ହେଇଯିବୁ । ଚାଲ୍ ଆମେ ଫେରିଯିବା । କଳାଘୋଡ଼ା ଉପରେ ରଙ୍ଗମୁହାଁ କଣେଇ ଝୁଲୁଥିବ । ତୁ ବସିଲେ ସିନା ଘୋଡ଼ା ଚାଲିବ ।"

ଏମିତି କ'ଣ ସେ କଥା କହୁଛନ୍ତି ? —କାହାକୁ ସେମିତି କହୁଛନ୍ତି ? ଏଠି ତ ଖେଳିବା ପିଲା କେହି ନାହିଁ ! !

"ଶୁଣ୍ ଝିଅ !" କହିଲେ ମାମୁ; "ତୁ ଯାହାକୁ ପୁଅ ବୋଲି ଭାବୁଛୁ, ସେ ପ୍ରକୃତରେ ରାଘୁଗୁରୁବଂଶର ଆଦପୁରୁଷ । ସେ ନିଜେ ପର୍ଶୁରାମ ରାଘୁଗୁରୁ । ସେ ଆସିଛନ୍ତି ସମସ୍ତଙ୍କ ଉପରୁ କାଳଦଣ୍ଡ ଘୁଞ୍ଚେଇଦେବାକୁ । ସେଥିପାଇଁ ସେ ନିଜେ ଏମିତି ବୁଢ଼ା ହେଇ ରୋଗ-ଦୁଃଖ ଭୋଗୁଛନ୍ତି । ସେ ଚଞ୍ଚଳ ଚାଲିଯିବେ ।"

ପୁଅକୁ କୋଳ ଭିତରକୁ ସାଉଁଟି ନେଇ ସେ କାନ୍ଦ ଭିତରେ ଝିଙ୍କାସିଲେ, "ଆପଣ କାହିଁକି ଏଡ଼ିକି ଅଲକ୍ଷଣିଆ କଥା ତୁଣ୍ଡରେ ଧରୁଚନ୍ତି ! ମୋ ପିଲା ଆଉ କାହାକୁ ଭାର ହେଇଚ ? ତାକୁ ଡାଙ୍କିଣୀ ପିଶାଚୁଣୀ କିଏ ଗୋଟାଏ ପଶି ରକ୍ତ ଶୋଷିଦେବାରୁ ସିନା ସେ ଶୁଖି ଶୁଖି ହାଡ଼ଖଣ୍ଡେ ରହିଲାଣି । ବଇଦ, ଗୁଣିଆ କଲେ ସେ କ'ଣ ଭଲ ହେଇଯିବ ନାଇଁ ? ତମେ ସବୁ କାହିଁକି ଅଶୁଭ ମନାସୁଚ ? ରଖିଲାବାଲା ତାକୁ ରଖିବାକୁ ଚାହିଁଲେ ତୁମେ ଲକ୍ଷେ କହିଲେ ତା'ର କ'ଣ ହେଇଯିବ ?"

ସେ ପାଟିକରି କହୁଥାନ୍ତି । କାନ୍ଦି କାନ୍ଦି ଭାଙ୍ଗିପଡ଼ୁଥାନ୍ତି—'ମୁଁ ସମସ୍ତଙ୍କୁ ଜାଣେ । ସମସ୍ତେ ଆଡ଼ ହୋଇ ରହିଛ । କାହା ପ୍ରାଣକୁ ବାଧୁନାହିଁ । ମୋର ଦଶ ବର୍ଷର ଅଲିଅଳ ପୁଅ କାହିଁକି ଏମିତି ବିରୂପ ହେଇଯାଉଚ ? ତୁମ ସୁଖ ତୁମର । ତୁମେ ତ କେବେ ଭାବନାହଁ କାହିଁକି ଫୁଟିବା ଆଗରୁ କଢ଼ଟିଏ ଏମିତି ମଉଳିଯାଉଚ । ମୁଁ ଗର୍ଭରେ ଧରି ଜନ୍ମ ଦେଇଛୁ । ମୋ ଦୁଃଖ ମୋର । ମୁଁ ମୁଣ୍ଡେଇଚ ପାଷାଣ ବୋଝ । ସେଥିରେ ତୁମର କ'ଣ ଗଲା ? ତୁମେ କାହିଁକି ମନାସିବ ମୋ ପୁଅର ଅମଙ୍ଗଳ ? ଏ କୁଳରେ ଅକାଳମରଣ ଦେଖି ଦେଖି କ'ଣ ଆଉରି ମନ ପୂରିନାହିଁ ଯେ କୋଡ଼ପିଲାଟାକୁ ବଳି ଦେଇଦେବାକୁ ମସୁଧା କରୁଚ ?'

ଏ ଉଜାଣିରେ ସମସ୍ତେ ଉବେଇ-ଟୁବେଇ ହେଲେ । ମା'ର ପେଟ ଭିତରୁ ଗୁରାଣ୍ଡି ହୋଇ ଉଠୁଥିବା ସେ ନିଆଁ ଧୂଆଁ ପାଣିରେ ସମସ୍ତଙ୍କୁ ରୁନ୍ଧହେଲାପରି ଲାଗିଲା । ସୁଲକ୍ଷଣା କିଛି ନକହି ଠିଆହେଲେ । ତଳକୁ ମୁହଁପୋତି ଫେରିଗଲା ବେଳେ କହିଲେ, "ସେଇଆ ! ! —କୋଉ ସପନ କେବେ ସତ ହେଲାଣି ଭଲା ! ଏ କାହିଁକି ପର୍ଶୁରାମ ରାଘୁଗୁରୁ ହେବେ ? ସେ ବା କାହିଁକି ଆମକୁ ବିପତ୍ତିରୁ ଉଦ୍ଧାର କରିବେ ? କେହି ତ ଆମ ଗୁହାରି ଶୁଣିନାହାନ୍ତି । —'ବଶୁ'କୁ ଚାରିମାସ ହେବ ଅଣଚାଳିଶ ପୂରିଗଲା ! କିଏ ସେ ଦେବୀ, ମତେ ଭଲା ଖାଇଯାନ୍ତା—ତା' ପେଟ ପୂରିଯାନ୍ତା, ମୋ ଦହକ ସରିଯାନ୍ତା—ମୁଁ ଆଉ କଲବଲ ସହନ୍ତ ନାହିଁ ।"

ସେ ସେମିତ କ'ଣ ବାହୁନି ବାହୁନି ପିଣ୍ଡାକୁ ଉଠିଗଲେ । ଏ ଦୁଇଭାଇ ଉଠିଲେ । ବିଶ୍ୱନାଥ ମୃତ୍ୟୁଞ୍ଜୟର ମୁଣ୍ଡ ଆଉଁଷି ଦେଇ ହାତ ଧରି ଦୁଆରଆଡ଼େ ବଳେଇନେଲେ । ବୀରେନ୍ଦ୍ର ପଛେ ପଛେ ଚାଲିଲେ ମୁଣ୍ଡ ପୋତିଦେଇ । ବାପ ପୁଅଙ୍କୁ ଚାହିଁ ରହିଲେ ବିଶ୍ୱନାଥଙ୍କ ସ୍ତ୍ରୀ । ଚାହିଁ ରହିଲେ ମାମୁ । ବିଶ୍ୱନାଥ କହୁଥାନ୍ତି—'ସତ କଥା ! ବାପଟାଏ ବଞ୍ଚି କ'ଣ କରିବ ? ପୁଅ ଯିବା ବଞ୍ଚିବ ତା'ର ସବୁ ଆୟୁଷ ନେଇ ।' ବିଶ୍ୱନାଥ ସେ ଶ୍ରେଷ୍ଠ ଧଳାମୁଣ୍ଡଟି ଉପରେ ହାତମାରି ସବୁ ଆୟୁଷ ଦାନ କରିଦେଲା ପରି ଦିଶୁଥାନ୍ତି । ଦେଖୁଥିବା ଆଖି ସବୁ ଛଳଛଳ ହୋଇଗଲେ । ସେ କଥା କାନରେ ଶୁଣିଦେଇ ଥରିଉଠିଲେ ଆତ୍ମୀୟ-ପରିଜନ ।

ସେଦିନ ବିଶ୍ୱନାଥ ଅନେକ ସମୟ ପୁଅ ପାଖରେ ରହିଲେ । ଗୋଡ଼ରେ ବସେଇ ମା' ତାକୁ ଭାତ ଖୁଆଇ ଦେଲାବେଳେ ସେ ନିଜ ଆଖିକୁ ବିଶ୍ୱାସ କରିପାରୁ ନଥାନ୍ତି । ତାଙ୍କୁ ବାରମ୍ବାର ସେ ଅପରିଚିତ ବୁଢ଼ାଟିକୁ ନିଜର ପୁଅ ବୋଲି ଯୁକ୍ତି କରିବାକୁ ପଡ଼ୁଥାଏ । ମନକୁ ବୁଝାଇବାକୁ ପଡ଼ୁଥାଏ ଯେ ବାର୍ଦ୍ଧକ୍ୟ ଗୋଟାଏ ରୋଗ—ଅତି ସାଂଘାତିକ ରୋଗ—ଯେ ଆଉ ବେଶି କାଳ ବଞ୍ଚେଇବ ନାହିଁ ।

ତା' ମା' ଆଖିରୁ ଲୁହ ନିଗିଡ଼ିଯାଉଥାଏ ଧାର ଧାର । ସେ ମୁହଁ ଟେକି ସ୍ୱାମୀକୁ ଚାହିଁପାରୁ ନଥାନ୍ତି । ଦେବପୁରୁଷ ପରି ଦିଶୁଥାନ୍ତି ବିଶ୍ୱନାଥ ସାମ୍ନାରୁ । ଚାରିମାସ ହେବ ତାଙ୍କୁ ପୂରିଗଲାଣି ଅଣଚାଳିଶ ବର୍ଷ । ଯେ କ'ଣ ନିଜେ ଅହ୍ୟସ୍ଥଳକ୍ଷଣ ନେଇ ପୁଅ ଘଇତା ବସେଇ ମରିଯାଆନ୍ତେ ନାହିଁ ? କିଏ ସେ ଭାଗ୍ୟବିଧାତା କେଉଁଠି ବସିଛି—ଏଡ଼ିକି ନିଷ୍ଠୁର ସେ । ଏକାଥରକେ ତାଙ୍କ କୋଳ ଶୂନ୍ୟ କରିଦେବ ! ମଥାରୁ ସିନ୍ଦୂର ପୋଛିଦେବ ! ! କ'ଣ ପାଇବ ଭଲା ତାଙ୍କୁ ସେମିତି ସନ୍ତାପିବାରେ ? ସେ ତାଙ୍କ ବାପଘର କଥା ତା'ରି ଭିତରେ ସୁମରୁଥାନ୍ତି । ମନେପଡ଼ିଯାଉଥାଏ ତାଙ୍କ କୁମାରୀ ଜୀବନ—ରଜାରାଣୀ ଖେଳ !!

ମୃତ୍ୟୁଞ୍ଜୟ ଖାଇ ଖାଇ ଶୋଇଗଲା—ବୁଢ଼ାମାନେ ଯେମିତି ଶୁଅନ୍ତି । ବିଶ୍ୱନାଥ ପତ୍ନୀଙ୍କୁ ହାତ ଧରି ଆଣି ପାଖରେ ବସେଇଲେ । ଏଇ କେତେବର୍ଷ ହେଲା ସ୍ୱାମୀସୋହାଗ କ'ଣ ସେ ଭୁଲିଯାଇଥିଲେ । ଦୁଃଖରେ, ଅଭିମାନରେ, ବିଚିତ୍ର ସୁଖଦୁଃଖର ବ୍ୟଥାରେ ସେ କେବଳ ଭୁହାକୁ ଭୁହା କାନ୍ଦିଲେ । ଆସ୍ତେ ତାଙ୍କୁ ଉଷୁମ ନୀଡ଼ଟିଏ ପରି ଆବୋରି ରଖିଲେ ବିଶ୍ୱନାଥ । ସେଇ ତ ତାଙ୍କର ବାପ, ମା,' ଭାଇ, ବନ୍ଧୁ, ସଖା ସବୁ ! ସେଇ ତାଙ୍କର ଇହକାଳ ପରକାଳର ସମ୍ପଦ ।

ହଠାତ୍ ତାଙ୍କ ଘୁମ ଭାଙ୍ଗିଗଲା । ତାଙ୍କ ବୁକୁ ଧଡ଼ଧଡ଼ ହୋଇ କମ୍ପିଲା । ବିଶ୍ୱନାଥ କାହିଁକି ନୀରବ ରହି ତାଙ୍କୁ ଆଜି ଏତେ ଆଦର-ଗୌରବରେ ମଣ୍ଡି ଦେଉଛନ୍ତି ? ସେ କ'ଣ ତାଙ୍କଠାରୁ ବିଦାୟ ନେଉଛନ୍ତି କି ? ସେ କ'ଣ ପ୍ରସ୍ତୁତ ହେଉଛନ୍ତି ସେଇ ଶେଷ କଥା ପାଇଁ ? ସେ ମୁହଁ ଟେକି ଡବଡବ ଆଖିରେ ତାଙ୍କୁ ଚାହିଁଲେ । ବିଶ୍ୱନାଥଙ୍କ ଆଖିରେ

ଲୁହ । ସେ ବୁଝିଗଲେ ଏବଂ ତାଙ୍କୁ ଜାବୁଡ଼ି ଧରି ପିଲାଙ୍କ ପରି କନ୍ଦିକନ୍ଦି କାନ୍ଦିଉଠିଲେ —
“ନା ! ନା ! ତା’ କଦାପି ହୋଇପାରେନା !”

ଅନେକ କନ୍ଦାକଟା ଭିତରେ ବିଶ୍ୱନାଥ ଶୂନ୍ୟକୁ ଚାହିଁରହିଥାନ୍ତି । ତାଙ୍କ ଗାଲରେ ଲୁହ ଶୁଖିଯାଇଥାଏ । ପୁଅ ଶୋଇଥାଏ ଅଠାଅଶୀ ବର୍ଷର ବୁଢ଼ାଟିଏ ପରି । ସେ ଆସ୍ତେ ଉଠିଲେ । ପତ୍ନୀଙ୍କ ଚିବୁକକୁ ଟେକିଦେଇ ତାଙ୍କ ଗଣ୍ଡରେ ଅଳ୍ପ ଛୁଇଁଦେଲେ । କହିଲେ, “ମୁଁ ତା’ହେଲେ ଯାଉଛି ।” ସେ ଚାଲିଗଲେ । ପଛରୁ ସେ ଦେଖାଯାଉଥିଲେ ଦେବଦୂତଟିଏ ପରି—ସଜଫୁଟା ପଦ୍ମଟିଏ ପରି ।

ସେତେବେଳକୁ ଅନେକ ରାତି । ଅସରା ଅସରା ଲୁହରେ ଆକାଶ ଆଉ ପୃଥ୍ୱୀ ଜୁଡ଼ୁବୁଡ଼ୁ । ଘରେ ଆଉ କେହି ନାହାନ୍ତି । ଖଟରେ ସେ ଯେଉଁ ବୁଢ଼ାଟି ବାଁକେଇ ମାଡ଼ି ଶୋଇଛି, ସେ କିଏ ସତେ ! ତା’ ବେକ ଦୁର୍ବଳ ହୋଇଯାଇଛି । ପିଠିର ପଞ୍ଜରାହାଡ଼ ଟେକିହୋଇ ରହିଛି । ମଣିଷିଆ ହାଡ଼ର ପରି ଗଣିହେଉଛି ମାଳା ପଗଡ଼ ପରି । ଏଇ କି ମୋର ଦଶବର୍ଷର ପୁଅ ? ମୋ ପୁଅ କାହିଁ—ଯେ ଚମ୍ପାଫୁଲ ପରି ଗୋରା ତକତକ ଦିଶୁଥିଲା ? ଆଖି ଦିଶୁଥିଲା ଦାଉଦାଉ ତାରା ପରି ! ନେକା ପେଣ୍ଟ ପିନ୍ଧି ତେଇଁ ତେଇଁ, ହସି ହସି ଲେଟିଯାଉଥିଲା !—ସେ କାହିଁ ? ମୋ ସଦା ସାନପୁଅ, ମୋ ଗଣ୍ଠି ଧନ, ମୋର ସବୁଠୁ ସୁନ୍ଦର ଅଲଅଲ ପୁଅ କାହିଁ ?

—ସେ ବାଉଳା ପରି ହାତରେ ବଡଟିଏ ଧରି ଦରଜାରେ ବୁଲୁଥାନ୍ତି । ବାରମ୍ବାର ଫେରିଆସୁଥାନ୍ତି ଖଟପାଖକୁ !—‘ନା, ଏ ତ ମୋ ପୁଅ ନୁହେଁ !—ମୋ ପୁଅ ନାହିଁ !! ମୋ ପୁଅ ମରିଯାଇଛି । ସେଇ ଇଷ୍ଟଦେବୀ ତାକୁ ଖାଇଗଲା । ମୋ ସାନପୁଅକୁ ସେଇ ଖାଇଗଲା ! ବୁଢ଼ା ରାଧୁଗୁରୁ ତାକୁ ବଳି ଦେଇଦେଲା । ସେ ଭୂଇଁରେ ଲେଟିପଡ଼ିଲେ କେତେବେଳେ, ଜାଣିପାରିଲେ ନାହିଁ ।

ତା’ ପରଦିନ ଡାକ୍ତର ଆସି କହିଲେ ଯେ ଅତିରିକ୍ତ ବାର୍ଦ୍ଧକ୍ୟ ହେତୁରୁ ମୃତ୍ୟୁଞ୍ଜୟ ସମସ୍ତ କ୍ରିୟା ଲୋପ ପାଇଗଲା । ତା’ର ମୃତ୍ୟୁ ଅତି ସ୍ୱାଭାବିକ ଏବଂ ପରିଣତ ବୁଢ଼ାଟିଏର ସାଧାରଣ ମୃତ୍ୟୁ ।

× × ×

ବିଶ୍ୱନାଥଙ୍କୁ ଏବେ ପଇଁଚାଳିଶି ବର୍ଷ ଚାଲିଛି । ମାମୁ କହୁଥିଲେ ଯେ ପର୍ଶୁରାମ ରାଧୁଗୁରୁ ନିଜେ ଆସି ନିବାରଣ କରିନଥିଲେ, ମହାକାଳ ଦଣ୍ଡ ଘୁଞ୍ଚେଇବାକୁ କାହାରି ସାଧ ନଥିଲା ।

ମୃତ୍ୟୁଞ୍ଜୟର ଶ୍ରାଦ୍ଧ ପ୍ରତିବର୍ଷ ଆଶ୍ୱିନ ମାସରେ ଦେବୀପୂଜାବେଳକୁ ପଡ଼େ । ରାଧୁଗୁରୁ ପରିବାରରେ ତାକୁ ପିତୃପୁରୁଷ ରୂପେ ସେମାନେ ଗ୍ରହଣ କରିସାରିଲେଣି । ସେଇଥିଲା ବିଶ୍ୱନାଥ ତାକୁ ପିଣ୍ଡଦାନ କରନ୍ତି । ଏ ଅଞ୍ଚଳରେ ସମସ୍ତଙ୍କ ଘରେ ଏ କଥା କୁହାକୁହି ହୁଅନ୍ତି । ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗେ !!

---

